# କୁମାରସମ୍ଭବମ୍

## ବାଉରିବନ୍ଧୁ ଲେଙ୍କା



କୁମାରସମ୍ଭବମ୍
ବାଉରିବନ୍ଧୁ ଲେଙ୍କା
ମୋ : ୯୮୫୩୫୩୫୮୪୪

ପ୍ରକାଶକ : ବନଫୁଲ ପବ୍ଲିକେସନ୍ସ,
କଟକ, ଓଡ଼ିଶା
ମୋ : ୯୪୩୭୬୧୩୪୩୮

ପ୍ରଚ୍ଛଦ : ପବିତ୍ର ବ୍ରହ୍ମପୁତ୍ର ନାୟକ

ପ୍ରଥମ ପ୍ରକାଶ : ଗୁରୁ ଦିବସ, ୨୦୨୧
ମୂଲ୍ୟ : ୩୫୦ ଟଙ୍କା ମାତ୍ର

**KUMARSAMBHAMAM**
By **Bauribandhu Lenka**

Published By : **Banaphula Publications**
Cuttack, Odisha
Mo : 9437613438

Cover : **Pabitra Brahmaputra Nayak**

Price : **350 /-**

# କୁମାରସମ୍ଭବମ୍ ସମ୍ବନ୍ଧରେ ପଦେ...

କୁମାରସମ୍ଭବମ୍ ମହାକବି କାଳିଦାସଙ୍କ ଦ୍ୱାରା ସଂସ୍କୃତ ଭାଷାରେ ରଚିତ ଏକ ମହାକାବ୍ୟ। କାବ୍ୟ ମୁଖ୍ୟତଃ ଦୁଇ ପ୍ରକାର ଯଥା: ଦୃଶ୍ୟ କାବ୍ୟ ଓ ଶ୍ରବ୍ୟ କାବ୍ୟ। ଏହି ଦୁଇ ପ୍ରକାର କାବ୍ୟକୁ ପୁନଃ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଇଅଛି। 'କୁମାରସମ୍ଭବମ୍' ଶ୍ରବ୍ୟକାବ୍ୟ ଅନ୍ତର୍ଗତ ପଦ୍ୟକାବ୍ୟ ଶ୍ରେଣୀର ଅଟେ। ପଦ୍ୟକାବ୍ୟକୁ ପୁନଶ୍ଚ ମହାକାବ୍ୟ ଓ ଖଣ୍ଡକାବ୍ୟ ନାମରେ ଦୁଇ ଭାଗରେ ବିଭକ୍ତ କରାଯାଇଛି। 'କୁମାରସମ୍ଭବମ୍' ମହାକାବ୍ୟର ସମସ୍ତ ଗୁଣାବଳୀକୁ ବହନ କରୁଥିବା ଦୃଷ୍ଟିରୁ ଏହା ମହାକାବ୍ୟର ସ୍ଥାନ ପାଇଅଛି। ଏହି କାବ୍ୟଟି ସତରଟି ସର୍ଗରେ ରଚିତ ହୋଇଅଛି। ଏଥିରେ ଭଗବାନ ଶିବ ଓ ମାତା ପାର୍ବତୀଙ୍କର ବିବାହ, କାର୍ତ୍ତିକେୟଙ୍କ ଜନ୍ମ ବୃତ୍ତାନ୍ତ, ତାଙ୍କର ସେନାପତିତ୍ୱରେ ଦେବତା ଓ ତାରକାସୁରର ଯୁଦ୍ଧ ଏବଂ ତା'ର ବଧ ସମ୍ବନ୍ଧରେ ବର୍ଣ୍ଣନା କରାଯାଇଅଛି। କାର୍ତ୍ତିକେୟ, ଯାହାଙ୍କୁ ଆମେ କୁମାର ଭାବେ ଜାଣିଛୁ, ତାଙ୍କର ଜନ୍ମ ବୃତ୍ତାନ୍ତ ଏଥିରେ ବର୍ଣ୍ଣିତ ହୋଇଥିବାରୁ ଏହି କାବ୍ୟକୁ 'କୁମାରସମ୍ଭବମ୍' ନାମରେ ନାମିତ କରାଯାଇଅଛି। ଭାଷା, କଳ୍ପନା ଓ ଅର୍ଥ ସୌନ୍ଦର୍ଯ୍ୟର ସୂକ୍ଷ୍ମ ଅଧ୍ୟୟନ କରି ବିଦ୍ୱାନମାନେ ମତ ଦିଅନ୍ତି କି କୁମାରସମ୍ଭବମ୍‌ର ପ୍ରଥମ ଆଠଟି ସର୍ଗଃ ମହାକବି କାଳିଦାସଙ୍କ ଦ୍ୱାରା ରଚିତ ଏବଂ ଅନ୍ୟ ନଅଟି ସର୍ଗଃକୁ ଅନ୍ୟ କେହି କବି କାଳିଦାସଙ୍କ ନାମରେ ଲେଖି ଏହି କାବ୍ୟରେ ଯୋଡି କାବ୍ୟକୁ ସମ୍ପୂର୍ଣ୍ଣ କରିଛନ୍ତି।

ଏହି ମହାକାବ୍ୟର ନାୟକ ହେଉଛନ୍ତି ଭଗବାନ ଶିବ ଓ ନାୟିକା ହେଉଛନ୍ତି ମାତା ପାର୍ବତୀ। ଏହାର ବିଭିନ୍ନ ସର୍ଗରେ କେଉଁ କଥାବସ୍ତୁ ରହଛି ତାହା ନିମ୍ନରେ ପ୍ରଦାନ କରାଗଲା।

**ପ୍ରଥମ ସର୍ଗଃ–** ଏହି ସର୍ଗରେ ହିମାଳୟ ବିଷୟରେ ବର୍ଣ୍ଣନା କରିବା ପରେ କବି ପାର୍ବତୀଙ୍କ ଜନ୍ମକଥା, ତାଙ୍କର ବାଲ୍ୟାବସ୍ଥା ଓ ଯୌବନାବସ୍ଥା ବିଷୟରେ ବର୍ଣ୍ଣନା କରିଛନ୍ତି। ଏହାପରେ ଶିବଙ୍କ ତପସ୍ୟା ଓ ପାର୍ବତୀଙ୍କ ତହିଁରେ ଯୋଗଦାନ କଥା ବର୍ଣ୍ଣିତ ହୋଇଛି।

**ଦ୍ୱିତୀୟ ସର୍ଗଃ-** ଏହି ସର୍ଗରେ ବ୍ରହ୍ମାଙ୍କ ବରରେ ବଳୀୟାନ୍ ତାରକାସୁରର ଦେବ ଉତ୍ପୀଡନ, ତାରକାସୁର ବଧ ନିମିତ୍ତ ଦେବତାମାନଙ୍କର ବ୍ରହ୍ମାଙ୍କ ନିକଟରେ ପ୍ରାର୍ଥନା, ଶିବଙ୍କ ତନୁଜ ପୁତ୍ର ଦ୍ୱାରା ତାରକାସୁର ବଧ ହୋଇପାରିବ ଓ ସେଥିପାଇଁ ଦେବତାମାନେ ଶିବଙ୍କ ସହିତ ପାର୍ବତୀଙ୍କର ବିବାହ ପାଇଁ ଉପାୟ କରିବା ବିଷୟମାନ ବର୍ଣ୍ଣିତ ହୋଇଅଛି।

**ତୃତୀୟ ସର୍ଗଃ-** ବ୍ରହ୍ମାଙ୍କ ଠାରୁ ତାରକାସୁରର ମୃତ୍ୟୁର ମାର୍ଗ ଜାଣିବା ପରେ ଇନ୍ଦ୍ରଙ୍କ ପରାମର୍ଶକ୍ରମେ କନ୍ଦର୍ପ, ପତ୍ନୀ ରତି ଓ ସଖା ବସନ୍ତ ସହିତ ଶିବଙ୍କ ତପସ୍ୟା ସ୍ଥାନକୁ ଯାଇ ଶିବଙ୍କର ତପସ୍ୟା ଭଙ୍ଗ କରିବା ଓ କ୍ରୋଧାନ୍ୱିତ ଶିବଙ୍କ ତୃତୀୟ ନୟନରୁ ଅଗ୍ନି ସ୍ଫୁରଣ ହୋଇ କନ୍ଦର୍ପଙ୍କୁ ଭସ୍ମ କରିବା ବିଷୟମାନ ବର୍ଣ୍ଣିତ ହୋଇଅଛି।

**ଚତୁର୍ଥ ସର୍ଗଃ-** ଏହି ସର୍ଗଃରେ କନ୍ଦର୍ପଙ୍କ ପତ୍ନୀ ରତିଙ୍କର ବିଳାପ ଅତ୍ୟନ୍ତ ମାର୍ମିକ ଭାବେ ବର୍ଣ୍ଣିତ ହୋଇଛି।

**ପଞ୍ଚମ ସର୍ଗଃ-** ମଦନ ଦହନ ପରେ ପାର୍ବତୀ ଶିବଙ୍କୁ ପାଇବା ପାଇଁ କରିଥିବା କଠୋର ତପସ୍ୟା ଓ ଅବଶେଷରେ ଶିବ ତାଙ୍କୁ ଦର୍ଶନ ଦେବା ବିଷୟ ଏହି ସର୍ଗଃରେ ବର୍ଣ୍ଣିତ ହୋଇଅଛି।

**ଷଷ୍ଠ ସର୍ଗଃ-** ଶିବ ଉମାଙ୍କୁ ପାଇବା ପାଇଁ ସପ୍ତର୍ଷିଙ୍କୁ ଡାକି ଉମାଙ୍କ ସହ ତାଙ୍କର ବିବାହ ପ୍ରସ୍ତାବରେ ମଧ୍ୟସ୍ଥତା କରିବା ପାଇଁ ଉମାଙ୍କର ପିତା ହିମାଳୟଙ୍କ ନିକଟକୁ ପଠାଇଛନ୍ତି। ଋଷିମାନଙ୍କ କଥା ଶୁଣିବାପରେ ହିମାଳୟ କନ୍ୟାଦାନ କରିବା ପାଇଁ ସମ୍ମତି ପ୍ରଦାନ କରିଛନ୍ତି। ଋଷିମାନେ ବିବାହ ତିଥି ସ୍ଥିର କରିବା ପରେ ଉମା ଆସି ଋଷିମାନଙ୍କୁ ପ୍ରଣାମ କରି ଆଶୀର୍ବାଦ ଗ୍ରହଣ କରିଛନ୍ତି। ତା' ପରେ ଋଷିମାନେ ଫେରିଯାଇ ସବୁକଥା ଶିବଙ୍କୁ ଜଣାଇଛନ୍ତି। ଏହି ସବୁ ବିଷୟମାନ ଏହି ସର୍ଗରେ ବର୍ଣ୍ଣିତ ହୋଇଛି।

**ସପ୍ତମ ସର୍ଗଃ-** ହିମାଳୟର ଓଷଧିପ୍ରସ୍ଥ ନଗର, ଶିବଙ୍କର କୈଳାସପୁରୀରେ ବିବାହ ପାଇଁ ସାଜସଜ୍ଜା, ବରଯାତ୍ରୀମାନଙ୍କ ସହ ଶିବଙ୍କର ଓଷଧିପ୍ରସ୍ଥ ନଗରକୁ ଯାତ୍ରାର ଦୃଶ୍ୟ, ପାର୍ବତୀ ଓ ଶିବଙ୍କର ପରିଣୟ ସମୟର ଦୃଶ୍ୟ, ବିବାହ ପରେ ବରଯାତ୍ରୀ ମାନଙ୍କର ଫେରିଯିବା ଓ ଶିବ ପାର୍ବତୀଙ୍କୁ ଧରି ଶୟନକକ୍ଷକୁ ପ୍ରବେଶ କରିବାର ଦୃଶ୍ୟ ଏହି ସର୍ଗଃର ଅତ୍ୟନ୍ତ ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି।

**ଅଷ୍ଟମ ସର୍ଗଃ-** ଏଥିରେ ହର ପାର୍ବତୀଙ୍କର ସୁରତ ସମ୍ଭୋଗ ଅତି ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି।

**ନବମ ସର୍ଗଃ–** ଦେବତାମାନଙ୍କ ଦ୍ୱାରା ପ୍ରେରିତ ହୋଇ ଅଗ୍ନିଦେବ କପୋତ ରୂପରେ ଶିବଙ୍କର ସମ୍ଭୋଗ ସମୟରେ ପହଞ୍ଚିବା, ଶିବ ଏହାଦେଖି କ୍ରୋଧିତ ହେବା, ଅଗ୍ନିଦେବ ଶିବଙ୍କୁ ଇନ୍ଦ୍ରଙ୍କ ସନ୍ଦେଶ ଶୁଣେଇବା ଓ ଶିବ ନିଜର ସୁରତାନ୍ତବୀର୍ଯ୍ୟକୁ ଅଗ୍ନିଦେବଙ୍କ ଉପରେ ଢାଳିବା ଆଦି ବିଷୟମାନ ଏହି ସର୍ଗଃରେ ବର୍ଣ୍ଣିତ ହୋଇଅଛି।

**ଦଶମ ସର୍ଗଃ–** ଶିବ ନିଜର ସୁରତାନ୍ତବୀର୍ଯ୍ୟକୁ ଅଗ୍ନିଙ୍କ ଉପରେ ଢାଳିବା ପରେ ଅଗ୍ନି ଯାଇ ଗଙ୍ଗାରେ ସ୍ନାନ କରିବା, କୃତ୍ତିକାମାନେ ଗଙ୍ଗାସ୍ନାନ କରିବା ସମୟରେ ଶିବଙ୍କର ସେହି ବୀର୍ଯ୍ୟ ସେମାନଙ୍କ ସଂସ୍ପର୍ଶରେ ଆସି ସେମାନଙ୍କର ଗର୍ଭ ସଂଘରହେବା ଓ ଲଜ୍ୟାରେ ସେମାନେ ସେହି ଗର୍ଭକୁ ସେଠାରେ ଥିବା ସରବନରେ ଛାଡି ପଳେଇଯିବା ବିଷୟ ଏହି ସର୍ଗଃରେ ବର୍ଣ୍ଣିତ ହୋଇଛି।

**ଏକାଦଶ ସର୍ଗଃ–** ଶିବ କାର୍ତ୍ତିକେୟଙ୍କୁ ପୁତ୍ର ରୂପରେ ପାଇବା ବିଷୟ ଏହି ସର୍ଗଃରେ ବର୍ଣ୍ଣିତ ହୋଇଛି।

**ଦ୍ୱାଦଶ ସର୍ଗଃ–** ଏହି ସର୍ଗଃରେ ଦେବତାମାନେ କାର୍ତ୍ତିକେୟଙ୍କ ସହିତ ଶିବଙ୍କ ନିକଟକୁ ଯିବା ଓ କାର୍ତ୍ତିକେୟଙ୍କୁ ଦେବସେନାପତି ହେବାପାଇଁ ଅନୁମତି ଦେବାକୁ ପ୍ରାର୍ଥନା କରିବା ବିଷୟ ବର୍ଣ୍ଣିତ ହୋଇଛି।

**ତ୍ରୟୋଦଶ ସର୍ଗଃ–** ଏହି ସର୍ଗଃରେ କାର୍ତ୍ତିକେୟ ଶିବ ପାର୍ବତୀଙ୍କ ଆଦେଶକ୍ରମେ ପ୍ରସ୍ଥାନ କରିବା ବିଷୟ ବର୍ଣ୍ଣିତ ହୋଇଛି।

**ଚତୁର୍ଦ୍ଦଶ ସର୍ଗଃ–** ଏଥିରେ ଯୁଦ୍ଧ ପାଇଁ ବିଭିନ୍ନ ସାଜସଜ୍ଜାର ବର୍ଣ୍ଣନା କରାଯାଇଛି।

**ପଞ୍ଚଦଶ ସର୍ଗଃ–** ଏଥିରେ ଯୁଦ୍ଧ ପାଇଁ ଦେବ ଓ ଦାନବ ସୈନ୍ୟମାନେ ମୁହାଁମୁହିଁ ହେବାର ଦୃଶ୍ୟ ବର୍ଣ୍ଣିତ ହୋଇଛି।

**ଷୋଡଶ ସର୍ଗଃ–** ଏଥିରେ ଦେବ ଦାନବ ଯୁଦ୍ଧର ବର୍ଣ୍ଣନା କରାଯାଇଛି।

**ସପ୍ତଦଶ ସର୍ଗଃ–** ଏହି ସର୍ଗଃରେ ତାରକାସୁର ବଧ ହେବା ବିଷୟର ବର୍ଣ୍ଣନା କରାଯାଇଛି।

ସମ୍ପୂର୍ଣ୍ଣ କାବ୍ୟରେ ମହାକବିଙ୍କ ବର୍ଣ୍ଣନା ଚତୁରୀ ଅତ୍ୟନ୍ତ ଚିତାକର୍ଷକ ହୋଇଛି।

***

# ମହାକବି କାଳିଦାସଙ୍କ ସମ୍ବନ୍ଧରେ ପଦେ...

ମହାକବି କାଳିଦାସ ସଂସ୍କୃତ ସାହିତ୍ୟର ଏକ ଅମର କଳାକାର। କେବଳ ଭାରତୀୟ ସାହିତ୍ୟ ନୁହେଁ, ସମଗ୍ର ବିଶ୍ୱ ସାହିତ୍ୟରେ ଏକ ଅଦ୍ୱିତୀୟ ସ୍ଥାନର ଅଧିକାରୀ। ନିଜର ଅତ୍ୟନ୍ତ ରମଣୀୟ କଳାକୃତି ପାଇଁ ସେ ବିଶ୍ୱର କାବ୍ୟପ୍ରେମୀମାନଙ୍କର ଆଦରଣୀୟ। ଏହା ଅତ୍ୟନ୍ତ ଦୁଃଖର ବିଷୟ ଯେ, ଏହି ମହାନ୍ କବିଙ୍କର ଜୀବନ ବୃତ୍ତାନ୍ତ ଅତ୍ୟନ୍ତ ବିବାଦଗ୍ରସ୍ତ। ତାଙ୍କର ଜନ୍ମସ୍ଥାନ, ଜୀବନକାଳ ଆଦି ବିଷୟରେ ବିଦ୍ୱାନମାନେ ଏକମତ ନୁହନ୍ତି। ପୂର୍ବରୁ ସଂସ୍କୃତ ସାହିତ୍ୟର ଅନେକ କବି ଓ ଲେଖକ ଆତ୍ମପ୍ରଚାର ଠାରୁ ଦୂରରେ ରହି ନିଜର ଗ୍ରନ୍ଥମାନଙ୍କରେ ନିଜର ପରିଚୟ ବିଷୟରେ ବହୁତ କମ୍ ତଥ୍ୟ ପ୍ରଦାନ କରୁଥିଲେ। କାଳିଦାସ ମଧ୍ୟ ନିଜ ଗ୍ରନ୍ଥମାନଙ୍କରେ ନିଜର ପରିଚୟ ବିଷୟରେ ବିଶେଷ କିଛି ଉଲ୍ଲେଖ କରିନାହାଁନ୍ତି। ଏଣୁ କିମ୍ବଦନ୍ତୀ ତଥା ଅନୁସନ୍ଧାନ ଦ୍ୱାରା ଆମ୍ଭେ କାଳିଦାସଙ୍କ ଜୀବନ ବୃତ୍ତାନ୍ତ ସମ୍ବନ୍ଧରେ ଜାଣିବାକୁ ପାଇଥାଉ। ଏହି କିମ୍ବଦନ୍ତୀକୁ ଆଧାର କରି କୁହାଯାଏ ଯେ, କାଳିଦାସ ଆଗରୁ ମହାମୂର୍ଖ ଥିଲେ। ତାଙ୍କର ବିବାହ ବିଦ୍ୟୋତ୍ତମା ନାମକ ଏକ ରାଜକନ୍ୟାଙ୍କ ସହିତ ହୋଇଥିଲା। ତାଙ୍କର ମୂର୍ଖତାରେ କ୍ରୋଧାନ୍ୱିତ ହୋଇ ସେ ତାଙ୍କୁ ଘରୁ ବାହାର କରି ଦେଇଥିଲେ। ତତ୍ପରେ ସେ ମାତା ସରସ୍ୱତୀଙ୍କୁ ଆରାଧନା କରି କବିତ୍ୱ ଶକ୍ତି ପ୍ରାପ୍ତ ହୋଇ ମହାକବି ଭାବେ ପ୍ରତିଷ୍ଠିତ ହୋଇପାରିଥିଲେ।

କାଳିଦାସ ରାଜା ବିକ୍ରମାଦିତ୍ୟଙ୍କ ସମକାଳୀନ ଥିଲେ ବୋଲି ଜଣାଯାଏ। ବିକ୍ରମାଦିତ୍ୟଙ୍କ ନବରତ୍ନ ପଣ୍ଡିତମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ। ତାଙ୍କର ଜନ୍ମସ୍ଥାନ ସମ୍ବନ୍ଧର ମଧ୍ୟ ଅନେକ ମତଭେଦ ଦେଖାଯାଏ। ତାଙ୍କର ଗ୍ରନ୍ଥମାନଙ୍କରେ, ବିଶେଷ କରି ମେଘଦୂତମ୍ କାବ୍ୟରେ ଉଜ୍ଜୟିନୀର ବର୍ଣ୍ଣନାକୁ ଅତ୍ୟଧିକ ମହତ୍ୱ ଦେଇଥିବାରୁ ଉଜ୍ଜୟିନୀକୁ ତାଙ୍କର ଜନ୍ମସ୍ଥାନ ବୋଲି ଅନେକ ମାନିଥାନ୍ତି।

କାଳିଦାସଙ୍କର ଅନେକ ଗୁଡ଼ିଏ ରଚନା ଅଛି ବୋଲି କୁହାଯାଏ ହେଲେ ପ୍ରାମାଣିକତା ଦୃଷ୍ଟିରୁ ଯେଉଁ ୭ଟି ଗ୍ରନ୍ଥ ଆମେ ଦେଖିବାକୁ ପାଉ ସେଗୁଡ଼ିକ ହେଲା- (୧) ଋତୁସଂହାରମ୍, (୨) ମେଘଦୂତମ୍, (୩) ମାଳବିକାଗ୍ନିମିତ୍ରମ୍, (୪) ବିକ୍ରମୋର୍ବଶୀୟମ୍, (୫) ଅଭିଜ୍ଞାନସାକୁନ୍ତଳମ୍, (୬) କୁମାରସମ୍ଭବମ୍, (୭) ରଘୁବଂଶମ୍। ପ୍ରଥମ ଦୁଇଟି ଖଣ୍ଡକାବ୍ୟ, ଅନ୍ତିମ ଦୁଇଟି ମହାକାବ୍ୟ ଓ ଅନ୍ୟ ତିନିଟି ନାଟକ ଅଟେ।

***

# ମହାକାବ୍ୟ କୁମାରସମ୍ଭବମ୍‌ର ଓଡିଆ ପଦ୍ୟାନୁବାଦ ସମ୍ବନ୍ଧରେ ପଦେ...

ସଂସ୍କୃତ ଭାଷାରେ ମହାକବି କାଳିଦାସଙ୍କ ଦ୍ୱାରା ରଚିତ ମହାକାବ୍ୟ କୁମାରସମ୍ଭବମ୍‌ର ଅନୁବାଦ ଓଡିଆ ତଥା ଅନ୍ୟ ଭାଷାରେ ଆଗରୁ ହୋଇ ସାରିଛି। ମାତ୍ର ଏହାର ପଦ୍ୟାନୁବାଦ ଓଡିଆ କିମ୍ବା ଅନ୍ୟ କୌଣସି ଭାଷାରେ ହୋଇଛି କି ନାହିଁ ତାହା ମୋର ଜ୍ଞାତସାରରେ ନାହିଁ। ସଂସ୍କୃତ ଏକ କ୍ଲିଷ୍ଟ ଭାଷା ହୋଇଥିବା ଦୃଷ୍ଟିରୁ ଏହି ଭାଷାରେ ରଚିତ ବହୁ କାବ୍ୟ ଓ ମହାକାବ୍ୟ ଗୁଡିକୁ ପଢିବା ପାଇଁ ପାଠକମାନେ ଆଗ୍ରହ ପ୍ରକାଶ କରି ନଥାନ୍ତି। ଫଳରେ ଏହି ସବୁ କାବ୍ୟରେ ବିଖ୍ୟାତ କବି ମାନଙ୍କର ଲିଖନର ସୌନ୍ଦର୍ଯ୍ୟବୋଧ, ବର୍ଣ୍ଣନା ଶୈଳୀ ଓ ସୂକ୍ଷ୍ମ ଚିନ୍ତନ ସମ୍ବନ୍ଧରେ ପାଠକମାନେ ଅବଗତ ହୋଇପାରନ୍ତି ନାହଁ। ମହାକାବ୍ୟ କୁମାରସମ୍ଭବମ୍‌ରେ କାଳିଦାସଙ୍କର କାବ୍ୟିକ ସୌନ୍ଦର୍ଯ୍ୟବୋଧକୁ ଓଡିଆ ପାଠକମାନଙ୍କ ନିକଟରେ ପହଞ୍ଚାଇବା ପାଇଁ ଏହା ମୋର ଏକ ପ୍ରୟାସ ମାତ୍ର। ଅନୁବାଦ କାବ୍ୟଟି କେତେଦୂର ପାଠକମାନଙ୍କ ଦ୍ୱାରା ଆଦୃତ ହେବ ତାହା ସମୟ ହିଁ କହିବ। ସତର ସର୍ଗଃ ସମ୍ବଳିତ ଏହି ମହାକାବ୍ୟର ପ୍ରଥମ ସର୍ଗଃ ଠାରୁ ଅଷ୍ଟମ ସର୍ଗଃ ପର୍ଯ୍ୟନ୍ତ କଥାବସ୍ତୁକୁ ମୁଁ ପ୍ରଥମ ଭାଗ ରୂପେ ପ୍ରକାଶ କରିବାକୁ ଯାଉଛି। ଅବଶିଷ୍ଟ ସର୍ଗଃ ଗୁଡିକ ଅନୁବାଦ ସମ୍ପୂର୍ଣ୍ଣ ହେଲା ପରେ ଦ୍ୱିତୀୟ ଭାଗ ରୂପେ ପ୍ରକାଶ ପାଇବ ବୋଲି ଆଶା କରିବି।

ସଂସ୍କୃତ ଭାଷାରେ ମୌର ଜ୍ଞାନ ବହୁତ ସୀମିତ ହୋଇଥିବା ଦୃଷ୍ଟିରୁ ଏହି ଅନୁବାଦ ନିମିତ୍ତ ମୁଁ ବ୍ୟାଖ୍ୟାକାର ପଣ୍ଡିତ ପ୍ରଦ୍ୟୁମ୍ନ ପାଣ୍ଡେଙ୍କ ଦ୍ୱାରା ହିନ୍ଦୀ ଭାଷାରେ ରଚନା କରାଯାଇଥିବା ଗଦ୍ୟ ଅନୁବାଦ ପୁସ୍ତକର ସାହାଯ୍ୟ ନେଇଛି। ଏହି ଅନୁସୃଜନରେ ବର୍ଣ୍ଣିତ ଶ୍ଳୋକଗୁଡିକର ଭାବାତ୍ମକ ପଦ୍ୟାନୁବାଦ କରିବା ସମୟରେ ମୂଳ ରଚନାର ଅର୍ଥ ଯେପରି ଅକ୍ଷୁଣ୍ଣ ରହିବ ସେଥିପ୍ରତି ଦୃଷ୍ଟି ଦେବା ସହିତ ନିଜ ଭାବନାରୁ କୌଣସି କଥାବସ୍ତୁକୁ ଏହାର ଅଂଶବିଶେଷ କରିବା ପାଇଁ ଅପପ୍ରୟାସ କରିନାହିଁ। ସହୃଦୟ ପାଠକମାନେ ଏହି ଅନୁସୃଜନ କାବ୍ୟକୁ ପଢି ମହାକବି କାଳିଦାସଙ୍କର ଅଦ୍ଭୁତ ଚିନ୍ତନ ଓ ବରିଷ୍ଠ କାବ୍ୟଶୈଳୀ ବିଷୟରେ କିଛି ଜାଣିଲେ ମୋର ଶ୍ରମ ସାର୍ଥକ ହେବ ବୋଲି ଆଶା ଓ ବିଶ୍ୱାସ। ନମସ୍କାର।

(ବାଉରିବନ୍ଧୁ ଲେଙ୍କା)

# ସୂଚୀପତ୍ର



***

# ପ୍ରଥମ ସର୍ଗଃ

**ଶ୍ଲୋକ-୧**

ଅସ୍ତ୍ୟୁତ୍ତରସ୍ୟାଂ ଦିଶି ଦେବତାତ୍ମା,
ହିମାଲୟୋ ନାମ ନଗାଧିରାଜଃ।
ପୂର୍ବାପରୌ ତୋୟନିଧୀ ବଗାହ୍ୟ,
ସ୍ଥିତଃ ପୃଥିବ୍ୟା ଇବ ମାନଦଣ୍ଡଃ ॥ ୧ ॥

ଅନ୍ୱୟ- ଉତ୍ତରସ୍ୟାଂ ଦିଶି ହିମାଲୟୋ ନାମ ନଗାଧିରାଜଃ
ପୂର୍ବାପରୌ ତୋୟନିଧୀ ବଗାହ୍ୟ ପୃଥିବ୍ୟାଃ ମାନଦଣ୍ଡଃ ଇବ ସ୍ଥିତୋଽସ୍ତି।

ପଦ୍ୟାନୁବାଦ -

ଭାରତ ଭୂଭାଗେ ଉତ୍ତର ଦିଗ୍-ଭାଗେ
ହିମଗିରି ସେ ମହାନ
ପ୍ରାଚୀ ଓ ପ୍ରତୀଚୀ ସାଗରେ ପ୍ରବେଶି
ହୋଇଛି ବିରାଜମାନ।
ପୃଥିବୀର ମାନ ଦଣ୍ଡର ସମାନ
ପର୍ବତରାଜ ସେ ଉଭା
ଦେବଙ୍କ ଆଳୟ ନାମ ହିମାଳୟ
ଆହା କି ସୁନ୍ଦର ଶୋଭା ॥ ୧ ॥

### ଶ୍ଲୋକ-୨

ଯଂ ସର୍ବଶୈଳାଃ ପରିକଳ୍ପ୍ୟ ବତ୍ସଂ,
ମେରୌ ସ୍ଥିତେ ଦୋଗ୍ଧରି ଦୋହଦକ୍ଷେ ।
ଭାସ୍ୱନ୍ତି ରତ୍ନାନି ମହୌଷଧୀଶ୍ଚ,
ପୃଥୂପଦିଷ୍ଟାଂ ଦୁଦୁହୁର୍ଧରିତ୍ରୀମ୍ ॥ ୨ ॥

ଅନ୍ୱୟ- ସର୍ବଶୈଳାଃ ଯଂ ବତ୍ସଂ ପରିକଳ୍ପ୍ୟ ଦୋହଦକ୍ଷେ ମେରୌ ଦୋଗ୍ଧରି ସ୍ଥିତେ(ସତି) ଭାସ୍ୱନ୍ତି ରତ୍ନାନି ମହୌଷଧୀଶ୍ଚ ପୃଥୂପଦିଷ୍ଟାଂ ଧରିତ୍ରୀଂ ଦୁଦୁହୁଃ ।

ପଦ୍ୟାନୁବାଦ -

ସକଳ ପର୍ବତ ହୋଇ ଏକତ୍ରିତ
ବତ୍ସା କରି ହିମଗିରି
ପୃଥୂ ପ୍ରଦର୍ଶିତ ପୃଥିବୀ ମାତାଙ୍କୁ
ଗାଭୀରୂପେ ମନେ କରି ।
ଦୋହନେ ନିପୁଣ ମେରୁ ପର୍ବତକୁ
ଦୋହକ ରୂପରେ ନେଇ
ଭାସ୍ୱର ରତନ ଔଷଧୀୟମାନ
ଥିଲେ ତାହାଠାରୁ ଦୁହିଁ ॥ ୨ ॥

### ଶ୍ଲୋକ-୩

ଅନନ୍ତରତ୍ନପ୍ରଭବସ୍ୟ ଯସ୍ୟ,
ହିମଂ ନ ସୌଭାଗ୍ୟବିଲୋପି ଜାତମ୍ ।
ଏକୋ ହି ଦୋଷୋ ଗୁଣସନ୍ନିପାତେ,
ନିମଜ୍ଜତୀନ୍ଦୋଃ କିରଣେଷ୍ୱିବାଙ୍କଃ ॥ ୩ ॥

ଅନ୍ୱୟ- ଅନନ୍ତରତ୍ନପ୍ରଭବସ୍ୟ ଯସ୍ୟ ହିମଂ ସୌଭାଗ୍ୟବିଲୋପି ନ ଜାତମ୍, ହି ଏକୋ ଦୋଷୋ ଗୁଣସନ୍ନିପାତେ ଇନ୍ଦୋଃ କିରଣେଷୁ ଅଙ୍କଃ ଇବ ନିମଜ୍ଜତି ।

ପଦ୍ୟାନୁବାଦ -

ଅମାପ ରତନ ଉତ୍ପନେ ସକ୍ଷମ
ହିମାଳୟ ପରବତ
ଶୋଭାରାଶି ନଷ୍ଟ କରିବାକୁ ତାର
ହିମରାଶି ଅସମର୍ଥ ।
ଚନ୍ଦ୍ର କିରଣରେ ଯେପରି ଭାବରେ
ଲୁଚେ ଚନ୍ଦ୍ରର କଳଙ୍କ
ବହୁ ଗୁଣରାଶି ସହଜରେ ନାଶି
ଥାଏ ଥିଲେ ଦୋଷ ଏକ ॥ ୩ ॥

### ଶ୍ଳୋକ-୪

ଯଶ୍ଚାପ୍ସରୋବିଭ୍ରମମଣ୍ଡନାନାଂ,
ସମ୍ପାଦୟିତ୍ରୀଂ ଶିଖରୈର୍ବିଭର୍ତି ।
ବଳାହକଚ୍ଛେଦବିଭକ୍ତରାଗାମ୍
ଅକାଳସନ୍ଧ୍ୟାମିବ ଧାତୁମତ୍ତାମ୍ ॥ ୪ ॥

ଅନ୍ୱୟ- ଯଃ ଚ ଅପ୍ସରୋବିଭ୍ରମମଣ୍ଡନାନାଂ ସମ୍ପାଦୟିତ୍ରୀଂ ବଳାହକଚ୍ଛେଦବିଭକ୍ତରାଗାଂ ଧାତୁମତ୍ତାମ୍ ଅକାଳସନ୍ଧ୍ୟାମିବ ଶିଖରୈର୍ବିଭର୍ତିଂ ।

ପଦ୍ୟାନୁବାଦ -

ଅରୁଣିମା ବର୍ଣ୍ଣ ଭଗ୍ନଶିଳା ମାନ
ବିକ୍ଷିପ୍ତ ସେ ଗିରି ଅଗ୍ରେ
ତହିଁ ପରିଗଣ କରନ୍ତି ମଣ୍ଡନ
ସେ ଶିଳାକୁ ନିଜ ଅଙ୍ଗେ ।
ବିଖଣ୍ଡିତ ମେଘେ ଅରୁଣିମା ରଙ୍ଗେ
ବିମ୍ବିତ ଶିଳାର ରଙ୍ଗ
ଭାବି ସନ୍ଧ୍ୟାକାଳ ଅପ୍ସରୀ ସକଳ
ଶୃଙ୍ଗାରେ ସଜାନ୍ତି ଅଙ୍ଗ ॥ ୪ ॥

## ଶ୍ଲୋକ-୫

ଆମେଖଳଂ ସଞ୍ଚରତା, ଘନାନା,
ଛାୟାମଧଃସାନୁଗତାଂ ନିଷେବ୍ୟ।
ଉଦ୍ୱେଜିତା ବୃଷ୍ଟିଭିରାଶ୍ରୟନ୍ତେ,
ଶୃଙ୍ଗାଣି ଯସ୍ତାତପବନ୍ତି ସିଦ୍ଧାଃ ॥ ୫ ॥

ଅନ୍ୱୟ- ସିଦ୍ଧାଃ ଆମେଖଳଂ ସଞ୍ଚରତାଂ ଘନାନାମଧଃ ସାନୁଗତାଂ ଛାୟାଂ ନିଷେବ୍ୟ ବୃଷ୍ଟିଭିଃ ଉଦ୍ୱେଜିତାଃ (ସନ୍ତଃ) ଯସ୍ୟ ଆତପବନ୍ତି ଶୃଙ୍ଗାଣି ଆଶ୍ରୟନ୍ତେ।

ପଦ୍ୟାନୁବାଦ

ପର୍ବତରେ ସ୍ଥିତ ସିଦ୍ଧ ସାଧୁ ସନ୍ଥ
ଛାୟା ସେବନର ଆଶେ
ଆସନ୍ତି ଓହ୍ଲାଇ ଜଳଦର ଛାଇ
ଦେଖି ଗିରି ମଧ୍ୟଦେଶେ।
ପୁନଃ ବୃଷ୍ଟିପାତ ହୁଅନ୍ତେ ବ୍ୟଥିତ
ହୋଇ ସିଦ୍ଧ ସନ୍ଥଗଣ
ଫେରନ୍ତି ଉତପ୍ତ ଗିରି ଶିଖରକୁ
ଦୁଃଖେ ହୋଇ ମ୍ରିୟମାଣ ॥ ୫ ॥

## ଶ୍ଲୋକ-୬

ପଦଂ ତୁଷାରସ୍ରୁତିଧୌତରକ୍ତଂ,
ଯସ୍ମିନ୍ନଦୃଷ୍ଟ୍ୱାଽପି ହତଦ୍ୱିପାନାମ୍।
ବିଦନ୍ତି ମାର୍ଗଂ ନଖରନ୍ଧ୍ରମୁକ୍ତୈଃ
ମୁକ୍ତାଫଳୈଃ କେସରିଣାଂ କିରାତାଃ ॥ ୬ ॥

ଅନ୍ୱୟ- ଯସ୍ମିନ୍-କିରାତାଃ ତୁଷାରସ୍ରୁତିଧୌତରକ୍ତଂ ହତଦ୍ୱିପାନାମ୍ କେସରିଣାଂ ପଦଂ ନଦୃଷ୍ଟ୍ୱାଽପି ନଖରନ୍ଧ୍ରମୁକ୍ତୈର୍ମୁକ୍ତାଫଳୈଃ ମାର୍ଗଂ ବିଦନ୍ତି।

ପଦ୍ୟାନୁବାଦ -

ଶରାଘାତେ କ୍ଷତ କରନ୍ତି କିରାତ
ସିଂହମାନଙ୍କୁ ପର୍ବତେ
କ୍ଷତରୁ ରୁଧିର ବହି ଧାର ଧାର
ରକ୍ତଚିହ୍ନ ରହେ ପଥେ ।
ତୁଷାରେ ସେ ଚିହ୍ନ ହୁଅଇ ନିଶ୍ଚିହ୍ନ
ପଥ ନପାଇ କିରାତ
ପଞ୍ଝାରୁ ପତିତ ଗଜମୁକ୍ତା ଦେଖି
ଅନୁସରିଥାନ୍ତି ପଥ ॥ ୬ ॥

### ଶ୍ଳୋକ-୭

ନ୍ୟସ୍ତାକ୍ଷରା ଧାତୁରସେନ ଯତ୍ର,
ଭୂର୍ଜତ୍ୱଚଃ କୁଞ୍ଜରବିନ୍ଦୁଶୋଣାଃ ।
ବ୍ରଜନ୍ତି ବିଦ୍ୟାଧରସୁନ୍ଦରୀଣାମ୍
ଅନଙ୍ଗଲେଖକ୍ରିୟୟୋପଯୋଗମ୍ ॥ ୭ ॥

ଅନ୍ୱୟ- ଯତ୍ର ଧାତୁରସେନ ନ୍ୟସ୍ତାକ୍ଷରାଃ କୁଞ୍ଜରବିନ୍ଦୁଶୋଣାଃ ଭୂର୍ଜତ୍ୱଚଃ ବିଦ୍ୟାଧରସୁନ୍ଦରୀଣାମ୍ ଅନଙ୍ଗଲେଖକ୍ରିୟୟା ଉପଯୋଗମ୍ ବ୍ରଜନ୍ତି ।

ପଦ୍ୟାନୁବାଦ

ଏ ସେହି ପର୍ବତ ଯେଉଁଠାରେ ପ୍ରାପ୍ତ
ହୋଇଥାଏ ଭୁର୍ଜ ପତ୍ର
ବିଦ୍ୟାଧର ନାରୀ ସେ ପତ୍ରକୁ ଧରି
ଲେଖିଥାନ୍ତି ପ୍ରେମପତ୍ର ।
ଲାଲ ବର୍ଣ୍ଣ ଧାତୁ ରସେ ଏହି ପତ୍ର
ଲେଖିଥାନ୍ତି ନାରୀଗଣ
ହସ୍ତୀ ଶୁଣ୍ଡ ପରେ ଲାଲ ବିନ୍ଦୁ ସମ
ହୁଏ ତା ପ୍ରତୀୟମାନ ॥ ୭ ॥

## ଶ୍ଲୋକ-୮

ଯଃ ପୁରୟନ୍ କୀଚକରନ୍ଧ୍ରଭାଗାନ୍
ଦରୀମୁଖୋତ୍ଥେନ ସମୀରଣେନ ।
ଉଦ୍ଗାସ୍ୟତାମିଚ୍ଛତି କିନ୍ନରାଣାଂ
ତାନପ୍ରଦାୟିତ୍ୱମିବୋପଗନ୍ତୁମ୍ ॥ ୮ ॥

ଅନ୍ୱୟ- ଯଃ ଦରୀମୁଖୋତ୍ଥେନ ସମୀରଣେନଂ କୀଚକରନ୍ଧ୍ରଭାଗାନ୍ ପୁରୟନ୍ ଉଦ୍ଗାସ୍ୟତାମ୍ କିନ୍ନରାଣାଂ ତାନପ୍ରଦାୟିତ୍ୱମ ଉପଗନ୍ତୁମ୍ ଇଚ୍ଛତି ଇବ ।

ପଦ୍ୟାନୁବାଦ -

ହିମାଳୟ ଗିରି- ମୁଖ ସମ ଦରୀ-
ମୁଖରୁ ନିସୃତ ବାତ
ପଶି ବାଂଶ ରନ୍ଧ୍ର ଜାତ କରେ ମନ୍ଦ୍ର
ଶ୍ରୁତିମଧୁର ସଂଗୀତ ।
ସତେକି କିନ୍ନର ମାନଙ୍କର ସୁର
ସଙ୍ଗେ ଦେବା ପାଇଁ ତାନ
ହିମାଳୟ ଗିରି ମଧୁ ସୁର ତୋଳି
କରୁଛି ବଂଶୀ ବାଦନ ॥ ୮ ॥

## ଶ୍ଲୋକ-୯

କପୋଲକଣ୍ଡୁଃ କରିଭିର୍ବିନେତୁଂ,
ବିଘଟ୍ଟିତାନାଂ ସରଳଦ୍ରୁମାଣାମ୍ ।
ଯତ୍ର ସ୍ରୁତକ୍ଷୀରତୟା ପ୍ରସୂତଃ,
ସାନୂନି ଗନ୍ଧଃ ସୁରଭୀକରୋତି ॥ ୯ ॥

ଅନ୍ୱୟ- ଯତ୍ର କରିଭିଃ କପୋଲକଣ୍ଡୁଃ ବିନେତୁଂ ବିଘଟ୍ଟିତାନାଂ ସରଳଦ୍ରୁମାଣାମ୍ ସ୍ରୁତକ୍ଷୀରତୟା ପ୍ରସୂତଃ ଗନ୍ଧଃ ସାନୂନି ସୁରଭୀକରୋତି ।

ପଦ୍ୟାନୁବାଦ –

ହିମାଳୟେ ସ୍ଥିତ କୁଞ୍ଜରଙ୍କ ଯୂଥ
କଣ୍ଡୁ ନିବାରଣ ପାଇଁ
କପୋଳ ଓ ଗଣ୍ଡ କରନ୍ତି ଘର୍ଷଣ
ଦେବଦାରୁ ବୃକ୍ଷେ ଯାଇ ।
ଘର୍ଷଣୁ ଉତ୍ପନ୍ନ ସୁଗନ୍ଧି ସମ୍ପନ୍ନ
ଦେବଦାରୁ ବୃକ୍ଷ କ୍ଷୀର
ସୁଗନ୍ଧିତ କରେ ହିମାଳୟ ପରେ
କ୍ରମନିମ୍ନ ଶିଳାସ୍ତର ॥ ୯ ॥

## ଶ୍ଳୋକ-୧୦

ବନେଚରାଣାଂ ବନିତାସଖାନାଂ,
ଦରୀଗୃହୋତ୍ସଙ୍ଗନିଷକ୍ତଭାସଃ ।
ଭବନ୍ତି ଯତ୍ରୌଷଧୟୋ ରଜନ୍ୟାମ୍
ଅତୈଳପୂରାଃ ସୁରତପ୍ରଦୀପାଃ ॥ ୧୦ ॥

ଅନ୍ୱୟ- ଯତ୍ର ରଜନ୍ୟାଂ ଦରୀଗୃହୋତ୍ସଙ୍ଗନିଷକ୍ତଭାସଃ ଓଷଧୟୋଃ ବନିତାସଖାନାଂ ବନେଚରାଣାଂ ଅତୈଳପୂରାଃ ସୁରତପ୍ରଦୀପାଃ ଭବନ୍ତି ।

ପଦ୍ୟାନୁବାଦ –

ହିମାଳୟ ଗିରି- ଗୃହ ରୂପୀ ଦରୀ
ମଧ୍ୟେ ବନ-ପ୍ରେମୀ ଯୋଡା
ହୁଅନ୍ତେ ଯାମିନୀ କରିଥାନ୍ତି ବେନି
ପ୍ରେମୀ ତହିଁ ରତିକ୍ରୀଡା ।
ସେ ସ୍ଥାନରେ ଲବ୍ଧ ଔଷଧୀୟ ଗୁଳ୍ମ
ତୈଳହୀନ ଦୀପ ସମ
ଆଲୋକ ପ୍ରଦାନ କରି ସମ୍ପାଦନ
କରାଏ ସୂରତକର୍ମ ॥ ୧୦ ॥

## ଶ୍ଲୋକ-୧୧

ଉଦ୍ବେଜୟତ୍ୟଙ୍ଗୁଳିପାର୍ଷ୍ଣିଭାଗାନ୍,
ମାର୍ଗେ ଶିଳୀଭୂତହିମେଽପି ଯତ୍ର ।
ନ ଦୁର୍ବହଶ୍ରୋଣିପୟୋଧରାର୍ତ୍ତା
ଭିନ୍ଦନ୍ତି ମନ୍ଦାଂ ଗତିମଶ୍ୱମୁଖ୍ୟଃ ॥ ୧୧ ॥

ଅନ୍ୱୟ- ଯତ୍ର ଶିଳୀଭୂତହିମେ ଅଙ୍ଗୁଳିପାର୍ଷ୍ଣିଭାଗାନ୍ ଉଦ୍ବେଜୟତି ଅପି ମାର୍ଗେ ଶ୍ରୋଣିପୟୋଧରାର୍ତ୍ତା ଅଶ୍ୱମୁଖ୍ୟଃ ମନ୍ଦାଂ ଗତିଂ ନ ଭିନ୍ଦନ୍ତି ।

ପଦ୍ୟାନୁବାଦ -

ହିମଗିରି ପଥ ହିମେ ଆଚ୍ଛାଦିତ
ଶିଳାର ଚଟାଣ ପରି
କିନ୍ନର ରମଣୀ ମନ୍ଦ ଗତି କରି
ଚଳିଥାନ୍ତି ତଦୁପରି ।
ପୃଥୁଳ ନିତମ୍ବ ପୀନ ସ୍ତନ ଯୁଗ
କାରଣରୁ ଭାରି ଅଙ୍ଗେ
ଏଡି ଓ ଅଙ୍ଗୁଷ୍ଠି ପାଇଥାଏ କଷ୍ଟ
ଚଳିପାରନ୍ତିନି ବେଗେ ॥ ୧୧ ॥

## ଶ୍ଲୋକ-୧୨

ଦିବାକରାଦ୍ରକ୍ଷତି ଯୋ ଗୁହାସୁ
ଲୀନଂ ଦିବାଭୀତମିବାଽନ୍ଧକାରମ୍ ।
କ୍ଷୁଦ୍ରେଽପି ନୂନଂ ଶରଣଂ ପ୍ରପନ୍ନେ
ମମତ୍ୱମୁଚ୍ଚୈଃ ଶିରସାଂ ସତୀବ ॥ ୧୨ ॥

ଅନ୍ୱୟ- ଯଃ ଦିବାଭୀତମିବ ଗୁହାସୁ ଲୀନମ୍ ଅନ୍ଧକାରାତ୍ ରକ୍ଷତି, ଉଚ୍ଚୈଃ ଶିରସାଂ ଶରଣଂ ପ୍ରପନ୍ନେ କ୍ଷୁଦ୍ରେଽପି ସତି ଇବ ନୂନଂ ମମତ୍ୱମ୍ ।

ପଦ୍ୟାନୁବାଦ -

ଉଲ୍ଲୁକ ଯେମନ୍ତ ଦିବସଠୁ ଭୀତ
ହୋଇ ନିଜକୁ ଲୁଚ୍ଚଏ
ଅନ୍ଧାର ସେପରି ଦିନକରେ ଡରି
ଗୁମ୍ଫା ମଧ୍ୟେ ଲୁଚିରହେ ।
ମହତ ଯେ ଜନ ମହତ ତା ମନ
ନୀଚକୁ ଦିଏ ଶରଣ
ଉଚ୍ଚ ହିମାଳୟ ଦିଅଇ ଆଶ୍ରୟ
ଅନ୍ଧାରକୁ ସେ ରୂପେଣ ॥ ୧ ୨ ॥

### ଶ୍ଳୋକ -୧୩

ଲାଙ୍ଗୁଳବିକ୍ଷେପବିସର୍ପିଶୋଭୈଃ
ଇତସ୍ତତଶ୍ଚନ୍ଦ୍ରମରୀଚିଗୌରୈଃ ।
ଯସ୍ୟାଽର୍ଥଯୁକ୍ତଂ ଗିରିରାଜଶବ୍ଦଂ
କୁର୍ବନ୍ତି ବାଲବ୍ୟଜନୈଶ୍ଚମର୍ଯ୍ୟଃ ॥୧୩ ॥

ଅନ୍ୱୟ- ଚମର୍ଯ୍ୟଃ ଇତସ୍ତତଃ ଲାଙ୍ଗୁଳବିକ୍ଷେପବିସର୍ପିଶୋଭୈଃ ଚନ୍ଦ୍ରମରୀଚିଗୌରୈଃ ବାଲବ୍ୟଜନୈଃ ଯସ୍ୟ ଗିରିରାଜଶବ୍ଦମର୍ଥଯୁକ୍ତଂ କୁର୍ବନ୍ତି ।

ପଦ୍ୟାନୁବାଦ -

ଚମରୀ ହରିଣ ଚନ୍ଦ୍ରଙ୍କ କିରଣ
ସମ ଗୌର ତାଙ୍କ ପୁଚ୍ଛ
ହିମଗିରି କୋଳେ ଭ୍ରମନ୍ତି ସକଳେ
ସଂଚାଳନ କରି ପୁଚ୍ଛ ।
ଧବଳ ସେ ପୁଚ୍ଛ ଚାମର ସଦୃଶ
ହୁଅଇ ପ୍ରତୀୟମାନ
ଗିରିରାଜ ନାମ ସାର୍ଥକ କରନ୍ତି
ଦେଇ ରାଜାର ସମ୍ମାନ ॥ ୧୩ ॥

## ଶ୍ଲୋକ-୧୪

ଯତ୍ରାଂଶୁକାକ୍ଷେପବିଲଜ୍ଜିତାନାଂ
ଯଦୃଚ୍ଛୟା କିଂପୁରୁଷାଙ୍ଗନାନାମ୍ ।
ଦରୀଗୃହଦ୍ୱାରବିଲମ୍ବିବିମ୍ବାଃ
ତିରସ୍କାରିଣ୍ୟୋ ଜଳଦା ଭବନ୍ତି ॥ ୧୪ ॥

ଅନ୍ୱୟ- ଯତ୍ର ଅଂଶୁକାକ୍ଷେପବିଲଜ୍ଜିତାନାଂ କିଂପୁରୁଷାଙ୍ଗନାନାମ୍ ଯଦୃଚ୍ଛୟା ଦରୀଗୃହଦ୍ୱାରବିଲମ୍ବିବିମ୍ବାଃ ଜଳଦାଃ ତିରସ୍କାରିଣ୍ୟୋ ଭବନ୍ତି ।

ପଦ୍ୟାନୁବାଦ -

ଗିରି ହିମାଳୟ ଦରୀକୁ ଆଳୟ
ରୂପେ କିନ୍ନରେ ବିଚରି
କିନ୍ନରୀଙ୍କ ସହ ସମ୍ଭୋଗରେ ରତ
ପୂର୍ଣ୍ଣ ବିବସନା କରି ।
ଗୁମ୍ଫା ଦ୍ୱାରଦେଶ ସମ୍ପୂର୍ଣ୍ଣ ଉନ୍ମୁକ୍ତ
ଲଜ୍ଜିତା କିନ୍ନରୀଗଣ
ପରଦା ସମାନ ମେଘଖଣ୍ଡମାନ
ଦ୍ୱାରଦେଶେ ବିଦ୍ୟମାନ ॥ ୧୪ ॥

## ଶ୍ଲୋକ-୧୫

ଭାଗୀରଥୀନିର୍ଝରସୀକରାଣାଂ
ବୋଢା ମୁହୁଃ କମ୍ପିତଦେବଦାରୁଃ ।
ଯଦ୍ୱାୟୁରନ୍ୱିଷ୍ଟମୃଗୈଃ କିରାତୈଃ
ଆସେବ୍ୟତେ ଭିନ୍ନଶିଖଣ୍ଡିବର୍ହଃ ॥ ୧୫ ॥

ଅନ୍ୱୟ- ଭାଗୀରଥୀନିର୍ଝରସୀକରାଣାଂ ବୋଢା ମୁହୁଃ କମ୍ପିତଦେବଦାରୁଃ ଭିନ୍ନଶିଖଣ୍ଡିବର୍ହଃ ଯଦ୍ୱାୟୁଃ ଅନ୍ୱିଷ୍ଟମୃଗୈଃ କିରାତୈଃ ଆସେବ୍ୟତେ ।

ପଦ୍ୟାନୁବାଦ -

ହିମାଳୟ ଗିରି ଶିଖରୁ ବାହାରି
ବହେ ଜାହ୍ନବୀର ନୀର
ସେ ନୀରୁ ସୀକର ନେଇଣ ଶୀତଳ
ହୁଅଇ ମନ୍ଦ ସମୀର ।
ସେହି ମନ୍ଦ ବାତ କରେ ପ୍ରକମ୍ପିତ
ଦେବଦାରୁ ବୃକ୍ଷରାଜି
ଶିଖି ପଂଖମାନ ହୁଅଇ ବିଚ୍ଛିନ୍ନ
ପୁଚ୍ଛରେ ପବନ ବାଜି ।
ଶୀତ ମନ୍ଦ ବାତ ସେବନ୍ତି କିରାତ
ମୃଗ ଅନ୍ୱେଷଣ କାଳେ
ଏମନ୍ତ ଏ ବାତ କରେ ପ୍ରଶମିତ
କ୍ଳାନ୍ତି କିରାତଙ୍କ ହେଳେ ॥ ୧୫ ॥

## ଶ୍ଲୋକ- ୧୬

ସପ୍ତର୍ଷିହସ୍ତାବଚିତାବଶେଷାଣି-
ଅଧୋ ବିବସ୍ୱାନ୍ପରିବର୍ତ୍ତମାନଃ ।
ପଦ୍ମାନି ଯସ୍ୟାଂଗ୍ରସରୋରୁସହାଣି
ପ୍ରବୋଧୟତ୍ୟୂର୍ଦ୍ଧ୍ୱମୁଖୈର୍ମୟୂଖୈଃ ॥ ୧୬ ॥

ଅନ୍ୱୟ- ସପ୍ତର୍ଷିହସ୍ତାବଚିତାବଶେଷାଣି ପଦ୍ମାନି ଯସ୍ୟାଂଗ୍ରସରୋରୁସହାଣି ଅଧଃ ପରିବର୍ତ୍ତମାନଃ ବିବସ୍ୱାନ୍ ଅର୍ଦ୍ଧ୍ୱମୁଖୈଃ ମୟୂଖୈଃ ପ୍ରବୋଧୟତି ।

ପଦ୍ୟାନୁବାଦ

ହିମାଦ୍ରି ଶିଖରେ ସରୋବର ନୀରେ
ଉଭବ କମଳବନ
କିଛି ଛାଡି ସବୁ ତୋଳି ନେଇଛନ୍ତି
ସପତ ଋଷି ମହାନ ।

ସେ ଗିରି ମଥାନ ନିମ୍ନେ ଚଳମାନ
ସୂର୍ଯ୍ୟଦେବଙ୍କ କିରଣ
ଉର୍ଦ୍ଧ୍ୱଗାମୀ ହୋଇ କମଳଙ୍କୁ ଛୁଇଁ
କରିଥାଏ ପ୍ରସ୍ଫୁଟନ ॥ ୧୬ ॥

## ଶ୍ଳୋକ- ୧୭

ଯଜ୍ଞାଙ୍ଗଯୋନିତ୍ୱମବେକ୍ଷ୍ୟ ଯସ୍ୟ
ସାରଂ ଧରିତ୍ରୀଧରଣକ୍ଷମଂ ଚ ।
ପ୍ରଜାପତି କଳ୍ପିତଯଜ୍ଞଭାଗଂ
ଶୈଳାଧିପତ୍ୟଂ ସ୍ୱୟମନ୍ୱତିଷ୍ଠତ୍ ॥ ୧୭ ॥

ଅନ୍ୱୟ- ଯସ୍ୟ ଯଜ୍ଞାଙ୍ଗଯୋନିତ୍ୱଂ ଧରିତ୍ରୀଧରଣକ୍ଷମଂ ସାରଂ ଚ ଅବେକ୍ଷ୍ୟ ପ୍ରଜାପତିଃ ସ୍ୱୟଂ କଳ୍ପିତଯଜ୍ଞଭାଗଂ ଶୈଳାଧିପତ୍ୟମ୍ ଅନ୍ୱତିଷ୍ଠତ୍ ।

ପଦ୍ୟାନୁବାଦ -

ଯଜ୍ଞର ସାଧନ କରେ ଯେ ଉତ୍ପନ୍ନ
ଧରିତ୍ରୀ ଭାର ବହନ
କରିବାରେ କ୍ଷମ ହେତୁ ଅଟେ ବ୍ରହ୍ମ-
ଦେବଙ୍କ ପ୍ରିୟଭାଜନ ।
ଯଜ୍ଞଭାଗ ଗିରି- ରାଜ ରୂପେ ତାରେ
କରିଅଛନ୍ତି ନାମିତ
ତେଣୁ ହିମାଳୟ ସେହି ନାମେ ଆଜି
ଜଗତରେ ଅଭିହିତ ॥ ୧୭ ॥

## ଶ୍ଳୋକ-୧୮

ସ ମାନସୀଂ ମେରୁସଖଃ ପିତୃଣାଂ
କନ୍ୟାଂ କୁଳସ୍ୟ ସ୍ଥିତୟେ ସ୍ଥିତିଜ୍ଞଃ ।

ମେନାଂ ମୁନୀନାମପି ମାନନୀୟାମ୍
ଆତ୍ମାଽନୁରୂପାଂ ବିଧିନୋପୟେମେ ॥ ୧୮ ॥

ଅନ୍ୱୟ- ମେରୁସଖଃ ସ୍ଥିତିଜ୍ଞଃ ସଃ ପିତୃଣାଂ ମାନସୀଂ ମୁନୀନାମ୍ ଅପି ମାନନୀୟାମ୍ ଆତ୍ମାନୁରୂପାଂ କନ୍ୟାଂ କୁଳସ୍ୟ ସ୍ଥିତୟେ ବିଧିନା ଉପୟେମେ ।

ପଦ୍ୟାନୁବାଦ -

ସୁମେରୁ ପର୍ବତ ଯାହାଙ୍କର ମିତ୍ର
ନାମ ତାଙ୍କ ହିମାଳୟ
ବଂଶ ବୃଦ୍ଧି ପାଇଁ ବିଧି ଅନୁଯାୟୀ
ମେନାଙ୍କୁ କଲେ ବିବାହ ।
ପିତାଙ୍କ କଳ୍ପିତ ନିଜ ଉପଯୁକ୍ତ
ମୁନି ମାନନୀୟା ମେନା
ପତ୍ନୀ ରୂପେ ପାଇ ଚିରଦିନ ପାଇଁ
ହେଲେ ସେ ଆନନ୍ଦମନା ॥ ୧୮ ॥

**ଶ୍ଳୋକ-୧୯**

କାଳକ୍ରମେଣାଽଥ ତୟୋଃ ପ୍ରବୃତ୍ତେ
ସ୍ୱରୂପଯୋଗ୍ୟେ ସୁରତପ୍ରସଙ୍ଗେ ।
ମନରୋମଂ ଯୌବନମୁଦ୍ୱହନ୍ତ୍ୟା
ଗର୍ଭୋଽଭବଦ୍ ଭୂଧରରାଜପତ୍ନ୍ୟାଃ ॥ ୧୯ ॥

ଅନ୍ୱୟ- ଅଥ କାଳକ୍ରମେଣ ତୟୋଃ ସ୍ୱରୂପଯୋଗ୍ୟେ ସୁରତପ୍ରସଙ୍ଗେ ପ୍ରବୃତ୍ତେ ମନୋରମଂ ଯୌବନମ୍ ଉଦ୍ୱହନ୍ତ୍ୟାଃ ଭୂଧରରାଜପତ୍ନ୍ୟାଃ ଗର୍ଭଃ ଅଭବତ୍ ।

ପଦ୍ୟାନୁବାଦ -

ବିବାହର ପରେ ସମୟ କ୍ରମରେ
ଅପୂର୍ବ ସୁନ୍ଦରୀ ମେନା

ହିମଗିରି ସଙ୍ଗେ ପ୍ରବୃତ ସମ୍ଭୋଗେ
ମିଳେ ଗର୍ଭର ସୂଚନା ॥ ୧୯ ॥

### ଶ୍ଳୋକ-୨୦

ଅସୁତ ସା ନାଗବଧୂପଭୋଗ୍ୟଂ
ମୈନାକମମ୍ଭୋନିଧିବଦ୍ଧସଖ୍ୟମ୍ ।
କୃଦ୍ଧେଽପି ପକ୍ଷଚ୍ଛିଦି ବୃତ୍ରଶତ୍ରୌ
ଅବେଦନାଜ୍ଞଂ କୁଳିଶକ୍ଷତାନାମ୍ ॥ ୨୦ ॥

ଅନ୍ୱୟ- ନାଗବଧୂପଭୋଗ୍ୟଂ ଅମ୍ଭୋନିଧିବଦ୍ଧସଖ୍ୟମ୍, ପକ୍ଷଚ୍ଛିଦି ବୃତ୍ରଶତ୍ରୌ କୃଦ୍ଧେ ଅପି କୁଳିଶକ୍ଷତାନାମ୍ ଅବେଦନାଜ୍ଞଂ ମୈନାକମ୍ ଅସୁତ ।

ପଦ୍ୟାନୁବାଦ -

ଗର୍ଭକାଳ ପୂର୍ଣ୍ଣ ହୁଅନ୍ତେ ଜନମ
ଦେଲେ ମେନା ଏକ ପୁତ୍ର
ନାଗକନ୍ୟାଭୋଗ୍ୟ ନିମିତ୍ତ ସେ ଯୋଗ୍ୟ
ହେଲେ ସାଗରଙ୍କ ମିତ୍ର ।
ନାମ ମଇନାକ କ୍ରୋଧିତ ଇନ୍ଦ୍ରଙ୍କ
ବଜ୍ରାୟୁଧର ଯନ୍ତ୍ରଣା
ପର୍ବତମାନଙ୍କ ପକ୍ଷଚ୍ଛେଦ କଥା
ନଥିଲା ତାହାଙ୍କୁ ଜଣା ॥ ୨୦ ॥

### ଶ୍ଳୋକ- ୨୧

ଅଥାଽବମାନେନ ପିତୁଃ ପ୍ରଯୁକ୍ତା
ଦକ୍ଷସ୍ୟ କନ୍ୟା ଭବପୂର୍ବପତ୍ନୀ ।
ସତୀ ସତୀ ଯୋଗବିସୃଷ୍ଟଦେହା
ତାଂ ଜନ୍ମନେ ଶୈଳବଧୂଂ ପ୍ରପେଦେ ॥ ୨୧ ॥

ଅନ୍ୱୟ- ଅଥ ଦକ୍ଷସ୍ୟ କନ୍ୟା ଭବପୂର୍ବପତ୍ନୀ ସତୀ ପିତୁଃ ଅବମାନେନ ପ୍ରଯୁକ୍ତା ଯୋଗବିସୃଷ୍ଟଦେହା ସତୀ ଜନ୍ମନେ ତାଂ ଶୈଳବଧୂଂ ପ୍ରପେଦେ।

ପଦ୍ୟାନୁବାଦ -

ଦକ୍ଷଙ୍କ ଦୁହିତା ସତୀ ପତିବ୍ରତା
ଶିବଙ୍କର ପୂର୍ବ ପତ୍ନୀ
ପିତୃ ଅପମାନ ସହି ନପାରିଣ
ମନେ ତାଙ୍କ କ୍ରୋଧ ଅଗ୍ନି।
ଯୋଗ ବଳେ ପ୍ରାଣ କଲେ ବିସର୍ଜନ
ପୁନର୍ଜନ୍ମ ନେବା ପାଇଁ
ହିମାଳୟ ପତ୍ନୀ ମେନାଙ୍କ ଗର୍ଭରେ
ପ୍ରବେଶ କରିଲେ ଯାଇ ॥ ୨୧ ॥

**ଶ୍ଳୋକ-୨୨**

ସା ଭୂଧରାଣାମଧିପେନ ତସ୍ୟାଂ
ସମାଧିମତ୍ୟାମୁଦପାଦି ଭବ୍ୟା।
ସମ୍ୟକ୍-ପ୍ରୟୋଗାଦପରିକ୍ଷତାୟାଂ
ନୀତାବିବୋତ୍ସାହଗୁଣେନ ସମ୍ପତ୍ ॥ ୨୨ ॥

ଅନ୍ୱୟ- ଭବ୍ୟା ସା ଭୂଧରାଣାମ୍ ଅଧିପେନ ସମାଧିମତ୍ୟାଂ ତସ୍ୟାଂ ସମ୍ୟକ୍-ପ୍ରୟୋଗାତ୍ ଅପରିକ୍ଷତାୟାଂ ନୀତୌ ଉତ୍ସାହଗୁଣେନ ସମ୍ପତ୍ ଇବ ଉପପାଦି।

ପଦ୍ୟାନୁବାଦ -

ଦକ୍ଷରାଜ କନ୍ୟା ସତୀ ଅଗ୍ରଗଣ୍ୟା
ପୁନର୍ଜନ୍ମ ନେବା ପାଇଁ
ଗିରିରାଜ ଦ୍ୱାରା ସଂଚରିତ ହେଲେ
ମେନାଙ୍କର ଗର୍ଭେ ଯାଇ।

ତ୍ରୁଟିଶୂନ୍ୟ ନୀତି କରଇ ଉତ୍ପତ୍ତି
ସମୃଦ୍ଧି ସମ ସମ୍ପତ୍ତି
କରି ତପ ବ୍ରତ ମେନା ହେଲେ ପ୍ରାପ୍ତ
କନ୍ୟା ରୂପରେ ପାର୍ବତୀ ॥ ୨୨ ॥

### ଶ୍ଳୋକ-୨୩

ପ୍ରସନ୍ନଦିକ୍‌ପାଂସୁବିବିକ୍ତବାତଂ
ଶଙ୍ଖସ୍ୱନାଽନନ୍ତରପୁଷ୍ପବୃଷ୍ଟି ।
ଶରୀରିଣାଂ ସ୍ଥାବରଜଙ୍ଗମାନାଂ
ସୁଖାୟ ତଜ୍ଜନ୍ମଦିନଂ ବଭୂବ ॥ ୨୩ ॥

ଅନ୍ୱୟ- ପ୍ରସନ୍ନଦିକ୍ ପାଂସୁବିବିକ୍ତବାତଂ ଶଙ୍ଖସ୍ୱନାନନ୍ତରପୁଷ୍ପବୃଷ୍ଟି ତଜ୍ଜନ୍ମଦିନଂ ସ୍ଥାବରଜଙ୍ଗମାନାଂ ଶରୀରିଣାଂ ସୁଖାୟ ବଭୂବ ।

ପଦ୍ୟାନୁବାଦ -

ଦିଗ ସୁନିର୍ମଳ ପାଂଶୁମୁକ୍ତାନିଳ
ଶୁଭୁଥିଲା ଶଙ୍ଖସ୍ୱନ
ସୁଗନ୍ଧିତ ପୁଷ୍ପ ବୃଷ୍ଟି ଅପରୂପ
ହେଉଥିଲା ସେହିଦିନ ।
ଏମନ୍ତ ଏ ଶୁଭ ଦିନେ ଆବିର୍ଭାବ
ହୋଇଲେ ଦେବୀ ପାର୍ବତୀ
ସ୍ଥାବର ଜଙ୍ଗମ ସର୍ବେ ଅନୁପମ
ଲଭିଲେ ଅପୂର୍ବ ଶାନ୍ତି ॥ ୨୩ ॥

### ଶ୍ଳୋକ-୨୪

ତୟା ଦୁହିତ୍ରା ସୁତରାଂ ସବିତ୍ରୀ
ସ୍ଫୁରତ୍‌ପ୍ରଭାମଣ୍ଡଳୟା ଚକାସେ ।

ବିଦୂରଭୂମିର୍ନବମେଘଶବ୍ଦାତ୍
ଉଦ୍ଭିନ୍ନୟା ରତ୍ନଶଳାକୟେବ ॥ ୨୪ ॥

ଅନ୍ୱୟ- ସ୍ଫୁରତ୍‌ପ୍ରଭାମଣ୍ଡଳୟା ତୟା ଦୁହିତ୍ରା ସବିତ୍ରୀ ବିଦୂରଭୂମିଃ ନବମେଘଶବ୍ଦାତ୍ ଉଦ୍ଭିନ୍ନୟା ରତ୍ନଶଳାକୟା ଇବ ସୁତରାଂ ଚକାସେ।

ପଦ୍ୟାନୁବାଦ -

ମେଘ ଗରଜନ ଶୁଣିଣ ବିଦୀର୍ଣ୍ଣ
ବିଦୂର ପର୍ବତ ମାଟି
ହୁଅଇ ଉତ୍ପନ୍ନ ପ୍ରଭାମୟୀ ରତ୍ନ
ଝଟକଇ ତାର କାନ୍ତି।
ପାର୍ବତୀଙ୍କୁ କନ୍ୟା ରୂପେ ପାଇ ମେନା
ବିଦୂର ପର୍ବତ ସମ
କନ୍ୟା ତେଜ ଦୀପ୍ତି ବଳେ ଝଟକନ୍ତି
କି ସୁନ୍ଦର ଅନୁପମ ॥ ୨୪ ॥

**ଶ୍ଳୋକ-୨୫**

ଦିନେ ଦିନେ ସା ପରିବର୍ଦ୍ଧମାନା
ଲବ୍ଧୋଦୟା ଚାନ୍ଦ୍ରମସୀବ ଲେଖା।
ପୁପୋଷ ଲାବଣ୍ୟମୟାନ୍‌ବିଶେଷାନ୍
ଜ୍ୟୋସ୍ନାନ୍ତରାଣୀବ କଳାନ୍ତରାଣି ॥୨୫ ॥

ଅନ୍ୱୟ- ଲବ୍ଧୋଦୟା ଦିନେ ଦିନେ ପରିବର୍ଦ୍ଧମାନା ସା ଚାନ୍ଦ୍ରମସୀ ଲେଖା ଇବ ଲାବଣ୍ୟମୟାନ୍ ବିଶେଷାନ୍ ଜ୍ୟୋସ୍ନାନ୍ତରାଣି କଳାନ୍ତରାଣି ଇବ ପୁପୋଷ।

ପଦ୍ୟାନୁବାଦ -

ଆଲୋକ ପକ୍ଷରେ ବଢି ବଢି ଧୀରେ
ଦୃଶ୍ୟମାନ ହୁଏ ଚାନ୍ଦ

অপ্রকট ভাগ　　　　　ହୁଏ ଆବିର୍ଭାବ

ଅପରୂପ ସେ ଅନିନ୍ଦ୍ୟ ।

ସେପରି ପାର୍ବତୀ　　　　ଅପରୂପ କାନ୍ତି

ଅଙ୍ଗଶୋଭା ଦିନୁଦିନ

ଥିଲା ଅପ୍ରକଟ　　　　ହୋଇଲା ପ୍ରକଟ

ଯୌବନରେ ପରିପୂର୍ଣ୍ଣ ॥ ୨୫ ॥

**ଶ୍ଲୋକ-୨୬**

ତାଂ ପାର୍ବତୀତ୍ୟାଭିଜନେନ ନାମ୍ନା

ବନ୍ଧୁପ୍ରିୟାଂ ବନ୍ଧୁଜନୋ ଜୁହାବ ।

ଉମେତି ମାତ୍ରା ତପସୋ ନିଷିଦ୍ଧା

ପଶ୍ଚାଦୁମାଖ୍ୟାଂ ସୁମୁଖୀ ଯଗାମ ॥ ୨୬ ॥

ଅନ୍ୱୟ- ବନ୍ଧୁପ୍ରିୟାଂ ତାଂ ବନ୍ଧୁଜନଃ ଆଭିଜନେନ ନାମ୍ନା ପାର୍ବତୀ ଇତି ଜହାବ । ପଶ୍ଚାତ୍ ମାତ୍ରା ଉ ମା ଇତି ତପସଃ ନିଷିଦ୍ଧା (ସତୀ) ସୁମୁଖୀ ଉମାଖ୍ୟାଂ ଯଗାମ ।

ପଦ୍ୟାନୁବାଦ -

ପର୍ବତ ବଂଶଜ　　　　ହେତୁ ତାଙ୍କ ନାମ

ପରିବାର ବନ୍ଧୁଜନେ

ପାର୍ବତୀ ନାମରେ　　　　ଡାକିଲେ ତାହାରେ

ଅତି ଆନନ୍ଦିତ ମନେ ।

ଉମା ବୋଲି କହି　　　　ତପ କରନାହିଁ

କହିବାରୁ ତାଙ୍କ ମାତ

ଉମା ନାମେ ଖ୍ୟାତ　　　　ହୋଇଲେ ସର୍ବତ୍ର

ଜଗତେ ହେଲେ ବିଦିତ ॥ ୨୬ ॥

### ଶ୍ଳୋକ- ୨୭

ମହୀଭୃତଃ ପୁତ୍ରବତୋଽପି ଦୃଷ୍ଟିଃ
ତସ୍ମିନ୍ନପତ୍ୟେ ନ ଯଗାମ ତୃପ୍ତିମ୍।
ଅନନ୍ତପୁଷ୍ପସ୍ୟ ମଧୋର୍ହି ଚୂତେ
ଦ୍ୱିରେଫମାଳା ସବିଶେଷସଙ୍ଗା ॥ ୨୭ ॥

ଅନ୍ୱୟ- ପୁତ୍ରବତୋଽପି ମହୀଭୃତଃ ଦୃଷ୍ଟିଃ ତସ୍ମିନ୍ ଅପତ୍ୟେ ତୃପ୍ତିମ୍ ନ ଯଗାମ। ଅନନ୍ତପୁଷ୍ପସ୍ୟ ମଧୋଃ ଦ୍ୱିରେଫମାଳା ଚୂତେ ସବିଶେଷସଙ୍ଗା।

ପଦ୍ୟାନୁବାଦ -

ମଧୁରସେ ପୂର୍ଣ୍ଣ ବିବିଧ ପ୍ରସୂନ
ବସନ୍ତରେ ପ୍ରସ୍ଫୁଟିତ
ମଧୁପଙ୍କ ଦଳ ଛାଡି ସବୁ ଫୁଲ
ଚୂତ ମୁକୁଳେ ଆସକ୍ତ।
ସେହିପରି ଗିରି ରାଜ ସେ ହିମାଦ୍ରି
ହୋଇ ମଧ୍ଯ ପୁତ୍ରବାନ
ରଖିଥିଲେ ଦୃଷ୍ଟି ପାର୍ବତୀଙ୍କ ପ୍ରତି
ବିଶେଷ ସ୍ନେହ କାରଣ ॥ ୨୭ ॥

### ଶ୍ଳୋକ-୨୮

ପ୍ରଭାମହତ୍ୟା ଶିଖୟେବ ଦୀପଃ
ତ୍ରିମାର୍ଗୟେବ ତ୍ରିଦିବସ୍ୟ ମାର୍ଗଃ।
ସଂସ୍କାରବତ୍ୟେବ ଗିରା ମନୀଷୀ,
ତୟା ସ ପୂତଶ୍ଚ ବିଭୂଷିତଶ୍ଚ ॥ ୨୮ ॥

ଅନ୍ୱୟ- ପ୍ରଭାମହତ୍ୟା ଶିଖୟା ଦୀପଃ ଇବ, ତ୍ରିମାର୍ଗୟା ତ୍ରିଦିବସ୍ୟ ମାର୍ଗ ଇବ, ସଂସ୍କାରବତ୍ୟା ଗିରା ମନୀଷୀ ଇବ, ତୟା ସ ପୂତଶ୍ଚ ବିଭୂଷିତଶ୍ଚ।

ପଦ୍ୟାନୁବାଦ -

ଶିଖା ପ୍ରଭାମୟୀ ଦୀପକୁ କରଇ
ଯେ ପ୍ରକାରେ ବିଭୁଷିତ
ଯେହ୍ନେ ସ୍ୱର୍ଗପୁର ମନ୍ଦାକିନୀ ଧାରା
ପ୍ରବାହେ ବିଭା ମଣ୍ଡିତ ।
ଯେପରି ବିଦ୍ୱାନ ସଂସ୍କୃତ ସମ୍ପନ୍ନ
ବାଣୀ ଦ୍ୱାରା ବିଭୂଷିତ
ସେପରି ହିମାଦ୍ରି ପାର୍ବତୀଙ୍କ ଦ୍ୱାରା
ହୋଇଲେ ପୂତ ଭୂଷିତ ॥ ୨୮ ॥

**ଶ୍ଳୋକ- ୨୯**

ମନ୍ଦାକିନୀସୈକତବେଦିକାଭିଃ
ସା କନ୍ଦୁକୈଃ କୃତ୍ରିମପୁତ୍ରକୈଶ୍ଚ ।
ରେମେ ମୁହୁର୍ମଧ୍ୟଗତା ସଖୀନାଂ
କ୍ରୀଡାରସଂ ନିର୍ବିଶତୀବ ବାଲ୍ୟେ ॥ ୨୯ ॥

ଅନ୍ୱୟ- ସା ବାଲ୍ୟେ କ୍ରୀଡାରସଂ ନିର୍ବିଶତୀବ ଇବ ସଖୀନାଂ ମଧ୍ୟଗତା (ସତୀ) ମନ୍ଦାକିନୀସୈକତବେଦିକାଭିଃ କନ୍ଦୁକୈଃ କୃତ୍ରିମପୁତ୍ରକୈଶ୍ଚ ମୁହୁଃ ରେମେ ।

ପଦ୍ୟାନୁବାଦ -

ସାଙ୍ଗସାଥୀ ମେଳେ ବାଲ୍ୟକାଳେ ଖେଳେ
ନିମଗ୍ନା ଥିଲେ ପାର୍ବତୀ
ଗଙ୍ଗାନଦୀ ତୀରେ ବାଲୁକା ବେଦୀରେ
ଅବା କନ୍ଦୁକରେ ମାତି ।
ଖେଳଣା କୃତ୍ରିମ ଭାବି ପୁତ୍ର ସମ
ଖେଳୁଥିଲେ ହୋଇ ମେଳ
ଏମନ୍ତ ପ୍ରକାରେ କ୍ରୀଡା କୌତୁକରେ
କଟିଗଲା ବାଲ୍ୟକାଳ ॥ ୨୯ ॥

### ଶ୍ଲୋକ- ୩୦

ତାଂ ହଂସମାଳାଃ ଶରଦୀବ ଗଙ୍ଗାଂ
ମହୌଷଧିଂ ନକ୍ତମିବାତ୍ମଭାସଃ
ସ୍ଥିରୋପଦେଶାମୁପଦେଶକାଳେ
ପ୍ରପେଦିରେ ପ୍ରାକ୍ତନଜନ୍ମବିଦ୍ୟାଃ ॥ ୩୦ ॥

ଅନ୍ୱୟ- ସ୍ଥିରୋପଦେଶାଂ ତାମ୍ ଉପଦେଶକାଳେ ପ୍ରାକ୍ତନଜନ୍ମବିଦ୍ୟାଃ ଶରଦି ଗଙ୍ଗା ହଂସମାଳାଃ ଇବ, ନକ୍ତଂ ମହୌଷଧିମ୍ ଆତ୍ମଭାସଃ ଇବ ପ୍ରପେଦିରେ।

ପଦ୍ୟାନୁବାଦ -

ଯେପରି ଶରତ ହେଲେ ଉପଗତ
ହଂସମାନେ ସ୍ୱଇଚ୍ଛାରେ
ମାଳ ମାଳ ହୋଇ ଆସନ୍ତି ଓହ୍ଲାଇ
ବସନ୍ତି ଗଙ୍ଗା ବକ୍ଷରେ।
ରାତ୍ରି ଆଗମନେ ମହୌଷଧି ଯେହ୍ନେ
ହୁଅନ୍ତି ସ୍ୱଗୁଣେ ପୂର୍ଣ୍ଣ
ପାର୍ବତୀ ସେପରି ପାଇଥିଲେ ଫେରି
ବିଦ୍ୟାଦାନେ ପୂର୍ବଜ୍ଞାନ ॥ ୩୦ ॥

### ଶ୍ଲୋକ- ୩୧

ଅସମ୍ଭୃତଂ ମଣ୍ଡନମଙ୍ଗଯଷ୍ଟେଃ
ଅନାସବାଖ୍ୟଂ କରଣଂ ମଦସ୍ୟ।
କାମସ୍ୟ ପୁଷ୍ପବ୍ୟତିରିକ୍ତମସ୍ତ୍ରଂ
ବାଲ୍ୟାତ୍ପରଂ ସାଽଥ ବୟଃ ପ୍ରପେଦେ ॥ ୩୧ ॥

ଅନ୍ୱୟ- ଅଥ ସା ଅଙ୍ଗଯଷ୍ଟେଃ ଅସମ୍ଭୃତଂ ମଣ୍ଡନଂ, ଅନାସବାଖ୍ୟଂ ମଦସ୍ୟ କରଣଂ, କାମସ୍ୟ ପୁଷ୍ପବ୍ୟତିରିକ୍ତମ୍ ଅସ୍ତ୍ରଂ ବାଲ୍ୟାତ୍ ପରଂ ବୟଃ ପ୍ରପେଦେ।

ପଦ୍ୟାନୁବାଦ -

ବାଲ୍ୟକାଳ ପୂର୍ଣ୍ଣ ହୁଅନ୍ତେ ଯୌବନ
ପାର୍ବତୀ ହୋଇଲେ ପ୍ରାପ୍ତ
ଯୌବନ ରୂପକ ଆଭୂଷଣ ତାଙ୍କ
ଅଙ୍ଗେ ଅଙ୍ଗେ ବିମଣ୍ଡିତ ।
ସେ ଯୌବନ ଶୋଭା ମଦିରା କି ଅବା
ନ ପିଇ ବି ମତୁଆଲା
ସତେ କି ସେ ଶୋଭା ଫୁଲଶର ଅବା
ନ ବିନ୍ଧି କରେ ଘାଇଲା ॥ ୩୧ ॥

**ଶ୍ଳୋକ- ୩୨**

ଉନ୍ମୀଳିତଂ ତୂଳିକୟେବ ଚିତ୍ରଂ
ସୂର୍ଯ୍ୟାଂଶୁଭିର୍ଭିନ୍ନମିବାଽରବିନ୍ଦମ୍ ।
ବଭୁବ ତସ୍ୟାଶ୍ଚତୁରସ୍ରଶୋଭି
ବପୁର୍ବିଭକ୍ତଂ ନବଯୌବନେନ ॥ ୩୨ ॥

ଅନ୍ୱୟ- ନବଯୌବନେନ ବିଭକ୍ତଂ ତସ୍ୟାଃ ବପୁଃ ତୂଳିକୟା ଉନ୍ମୀଳିତଂ ଚିତ୍ରମ୍ ଇବ ସୂର୍ଯ୍ୟାଂଶୁଭିଃ ଭିନ୍ନମ୍ ଅରବିନ୍ଦମ୍ ଇବ, ଚତୁରସ୍ରଶୋଭି ବଭୂବ ।

ପଦ୍ୟାନୁବାଦ -

ଚିତ୍ରକର ଚିତ୍ର ହୁଏ ଉନ୍ମୀଳିତ
ଯେପରି ତା ତୂଳିକାରେ
ସୂର୍ଯ୍ୟରଶ୍ମି ପ୍ରାପ୍ତ ହୋଇ ପ୍ରସ୍ଫୁଟିତ
ହୁଏ ପଦ୍ମ ଯେ ପ୍ରକାରେ ।
ସେପରି ପାର୍ବତୀ ଅଙ୍ଗେ ଅଙ୍ଗେ ପୂର୍ତ୍ତି
ହେଲା ନବ ଯଉବନ
ଚତୁର୍ଦ୍ଦିଗ ଶୋଭୀ ଯୌବନର ଛବି
ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ॥ ୩୨ ॥

## ଶ୍ଳୋକ-୩୩

ଅଭ୍ୟୁନ୍ନତାଙ୍ଗୁଷ୍ଠନଖପ୍ରଭାଭିଃ
ନିକ୍ଷେପଣାଦ୍ରାଗମିବୋଦ୍ଗିରନ୍ତୌ ।
ଆଜହ୍ରତୁସ୍ତଚ୍ଚରଣୌ ପୃଥିବ୍ୟାଂ
ସ୍ଥଳାରବିନ୍ଦଶ୍ରିୟମବ୍ୟବସ୍ଥାମ୍ ॥ ୩୩ ॥

ଅନ୍ୱୟ- ଅଭ୍ୟୁନ୍ନତାଙ୍ଗୁଷ୍ଠନଖପ୍ରଭାଭିଃ ନିକ୍ଷେପଣାତ୍ ରାଗମ୍ ଉଦ୍ଗିରନ୍ତୌ ଇବ ତଚ୍ଚରଣୌ ପୃଥିବ୍ୟାଂ ଅବ୍ୟବସ୍ଥାଂ ସ୍ଥଳାରବିନ୍ଦଶ୍ରିୟମ୍ ଆଜହ୍ରତୁଃ ।

ପଦ୍ୟାନୁବାଦ -

ଭୂମିରେ ଚରଣ କରି ସଂଚଳନ
ଚଳନ୍ତି ଯେବେ ପାର୍ବତୀ
ବୃଦ୍ଧାଙ୍ଗୁଳି ନଖ ଲାକ୍ଷା ରଙ୍ଗେ ସିକ୍ତ
ବିଚ୍ଛୁରନ୍ତି ଲାଲ କାନ୍ତି ।
ଚରଣ ଯୁଗଳ ଲୋହିତ କମଳ
ସମାନ ପ୍ରତୀୟମାନ
ସତେକି ଭୂମିରେ କମଳ ବିଚରେ
କାନ୍ତି କରି ବିଚ୍ଛୁରଣ ॥ ୩୩ ॥

## ଶ୍ଳୋକ- ୩୪

ସା ରାଜହଂସୈରିବ ସନ୍ନତାଙ୍ଗୀ
ଗତେଷୁ ଲୀଳାଞ୍ଚିତବିକ୍ରମେଷୁ ।
ବ୍ୟନୀୟତ ପ୍ରତ୍ୟୁପଦେଶଲୁବ୍ଧୈଃ
ଆଦିତ୍ସୁଭିର୍ନୂପୁରସିଞ୍ଜିତାନି ॥ ୩୪ ॥

ଅନ୍ୱୟ- ପ୍ରତ୍ୟୁପଦେଶଲୁବ୍ଧୈଃ ନୂପୁରସିଞ୍ଜିତାନି ଆଦିତ୍ସୁଭିଃ ରାଜହଂସୈଃ ସନ୍ନତାଙ୍ଗୀ ସା ଲୀଳାଞ୍ଚିତବିକ୍ରମେଷୁ ଗତେଷୁ ବ୍ୟନୀୟତ ଇବ ।

ପଦ୍ୟାନୁବାଦ -

ବକ୍ଷୋଜର ଭାର	କାରଣୁ ଶରୀର
ଥିଲା ସ୍ୱଳ୍ପ ଅବନତ
ଗମନ କାଳରେ	ପଦ ସଂଚ୍ଚଳନ
ଥିଲା ଅତି ଲୀଳାୟିତ ।
ସତେ ରାଜହଂସୀ-	ମାନେ ହୋଇ ଖୁସି
ଶିଖାଇଛନ୍ତି କି ଚ୍ଚଲି
ପ୍ରତିଦାନେ ପଦ	ନୂପୁର ଶବଦ
ଶିଖିବେ ତାଙ୍କଠୁ ଭାଳି ॥ ୩୪ ॥

**ଶ୍ଳୋକ-୩୫**

ବୃତ୍ତାନୁପୂର୍ବେ ଚ ନ ଚ୍ଚାତିଦୀର୍ଘେ
ଜଙ୍ଘେ ଶୁଭେ ସୃଷ୍ଟବତସ୍ତଦୀୟେ ।
ଶେଷାଙ୍ଗନିର୍ମାଣବିଧୌ ବିଧାତୁଃ
ଲାବଣ୍ୟ ଉତ୍ପାଦ୍ୟ ଇବାସ ଯତ୍ନଃ ॥ ୩୫ ॥

ଅନ୍ୱୟ- ବୃତ୍ତାନୁପୂର୍ବେ ନ ଚ ଅତିଦୀର୍ଘେ ଶୁଭେ ତଦୀୟେ ଜଙ୍ଘେ ସୃଷ୍ଟବତଃ ବିଧାତୁଃ ଶେଷାଙ୍ଗନିର୍ମାଣବିଧୌ ଉତ୍ପାଦ୍ୟେ ଲାବଣ୍ୟେ ଯତ୍ନଃ ଆସ ଇବ ।

ପଦ୍ୟାନୁବାଦ -

ବର୍ତ୍ତୁଳ ଆକୃତି	ନୁହେଁ ଦୀର୍ଘ ଅତି
ପାର୍ବତୀଙ୍କ ଜଙ୍ଘ ଦୁଇ
ଅତି ଯତନରେ	ଗଢୁଥିଲେ ବିହି
ସମସ୍ତ ସୌନ୍ଦର୍ଯ୍ୟ ଦେଇ ।
ଗଢିବାରେ ଜଙ୍ଘ	ସୌନ୍ଦର୍ଯ୍ୟର ସର୍ବ
ଉପାଦାନ ହେଲା ଶେଷ
ଅନ୍ୟ ଅଙ୍ଗମାନ	କରିବାକୁ ପୂର୍ଣ୍ଣ
କଲେ ଉପାୟ ବିଶେଷ ॥ ୩୫ ॥

## ଶ୍ଲୋକ- ୩୬

ନାଗେନ୍ଦ୍ରହସ୍ତାସ୍ତ୍ୱଚିକର୍କଶତ୍ୱାତ୍
ଏକାନ୍ତଶୈତ୍ୟାତ୍କଦଳୀବିଶେଷାଃ ।
ଲବ୍ଧ୍ୱାଽପି ଲୋକେ ପରିଣାହି ରୂପଂ
ଜାତାସ୍ତଦୂର୍ବୋରୁପମାନବାହ୍ୟାଃ ॥ ୩୬ ॥

ଅନ୍ୱୟ - ନାଗେନ୍ଦ୍ରହସ୍ତାଃ ତ୍ୱଚିକର୍କଶତ୍ୱାତ୍ କଦଳୀବିଶେଷାଃ ଏକାନ୍ତଶୈତ୍ୟାତ୍ ଲୋକେ ପରିଣାହି ରୂପଂ ଲବ୍ଧ୍ୱାଽପି ତଦୂର୍ବୋଃ ଉପମାନବାହ୍ୟାଃ ଜାତାଃ ।

ପଦ୍ୟାନୁବାଦ -

ରାଜହସ୍ତୀ ଶୁଣ୍ଢ ରମ୍ଭାବୃକ୍ଷ କାଣ୍ଡ
ପାର୍ବତୀଙ୍କ ଜଙ୍ଘ ସହ
ତୁଳନା ନିମିତ୍ତ ହୋଇ ବି ବିଦିତ
ହୁଅନ୍ତିନି ତୁଳନୀୟ ।
ହସ୍ତୀ ଶୁଣ୍ଢ ସ୍ପର୍ଶ ଲାଗଇ କର୍କଶ
କଦଳୀ କାଣ୍ଡ ଶୀତଳ
ଉପମାରେ ସେଥି ପାଇଁ ସମକକ୍ଷ
ନ ହୋଇ ହେଲେ ବିଫଳ ॥ ୩୬ ॥

## ଶ୍ଲୋକ-୩୭

ଏତାବତା ନନ୍ୱନୁମେୟଶୋଭି
କାଞ୍ଚୀଗୁଣସ୍ଥାନମନିନ୍ଦିତାୟାଃ ।
ଆରୋପିତଂ ଯଦ୍ ଗିରିଶେନ
ପଶ୍ଚାଦନନ୍ୟନାରୀକମନୀୟମଙ୍କମ୍ ॥ ୩୭ ॥

ଅନ୍ୱୟ- ଯତ୍ ପଶ୍ଚାତ୍ ଗିରିଶେନ ଅନନ୍ୟନାରୀକମନୀୟମ୍ ଅଙ୍କମ୍ ଆରୋପିତମ୍ ଅନିନ୍ଦିତାୟାଃ କାଞ୍ଚୀଗୁଣସ୍ଥାନମ୍ ଏତାବତା ନନୁ ଅନୁମେୟଶୋଭି ।

ପଦ୍ୟାନୁବାଦ -

ଅନିନ୍ଦ୍ୟ ସୁନ୍ଦରୀ ଗିରିସୁତା ଗୌରୀ
ଅପୂର୍ବ ନିତମ୍ବ ଶୋଭା
ନିତମ୍ବେ ସୁବର୍ଣ୍ଣ କିଙ୍କିଣି ମଣ୍ଡନେ
ଦିଶୁଥିଲା ମନଲୋଭା ।
ବିବାହର ପରେ ଶିବଙ୍କ ଅଙ୍କରେ
ସେ ନିତମ୍ବ ବିରାଜିତା
ଅନ୍ୟ କେହି ନାରୀ ତା'ର ଅଧିକାରୀ
ହେବାକୁ ନାହିଁ ଯୋଗ୍ୟତା ॥ ୩୭ ॥

## ଶ୍ଳୋକ- ୩୮

ତସ୍ୟା ପ୍ରବିଷ୍ଟା ନତନାଭିରନ୍ଧ୍ରଂ
ରରାଜ ତନ୍ୱୀ ନବଲୋମରାଜିଃ ।
ନୀବୀମତିକ୍ରମ୍ୟ ସିତେତରସ୍ୟ
ତନ୍ମେଖଳାମଧ୍ୟମଣେରିବାର୍ଚ୍ଚିଃ ॥ ୩୮ ॥

ଅନ୍ୱୟ- ନୀବୀମ୍ ଅତିକ୍ରମ୍ୟ ନତନାଭିରନ୍ଧ୍ରଂ ପ୍ରବିଷ୍ଟା ତନ୍ୱୀ ତସ୍ୟାଃ ନବଲୋମରାଜିଃ ସିତେତରସ୍ୟ ତନ୍ମେଖଳାମଧ୍ୟମଣେଃ ଅର୍ଚ୍ଚିଃ ଇବ ରରାଜ ।

ପଦ୍ୟାନୁବାଦ -

ନବଯୌବନରେ ଉଦର ଉପରେ
ନବୋଦ୍ଭୂତ ରୋମରାଜି
ନୀବୀବନ୍ଧ ଡେଇଁ ପଶିଛନ୍ତି ଯାଇ
ନାଭିରନ୍ଧ୍ରେ ମୁଣ୍ଡ ଗୁଞ୍ଜି ।
ସତେକି କିଙ୍କିଣି ମଧ୍ୟେ ନୀଳମଣି
ଠାରୁ ଏକ ରଶ୍ମିରେଖା
ବିଚ୍ଛୁରିତ ହୋଇ ନାଭିକୁ ଛୁଇଁଲା
ପ୍ରାୟେ ଯାଉଅଛି ଦେଖା ॥ ୩୮ ॥

### ଶ୍ଲୋକ- ୩୯

ମଧ୍ୟେନ ସା ବେଦିବିଲଗ୍ନମଧ୍ୟା
ବଳିତ୍ରୟଂ ଚାରୁ ବଭାର ବାଳା ।
ଆରୋହଣାର୍ଥ ନବଯୌବନେନ
କାମସ୍ୟ ସୋପାନମିବ ପ୍ରଯୁକ୍ତମ୍ ॥ ୩୯ ॥

ଅନ୍ୱୟ- ବେଦିବିଲଗ୍ନମଧ୍ୟା ସା ବାଳା ମଧ୍ୟେନ ଚାରୁ ବଳିତ୍ରୟଂ କାମସ୍ୟ ଆରୋହଣାର୍ଥଂ ନବଯୌବନେନ ପ୍ରଯୁକ୍ତଂ ସୋପାନମ୍ ଇବ ବଭାର ।

ପଦ୍ୟାନୁବାଦ -

ବାଳା କୃଶୋଦରୀ ଗିରିସୁତା ଗୌରୀ
ଉଦରର ମଧ୍ୟଭାଗେ
ନବ ଯଉବନ କରିଛି ନିର୍ମାଣ
ଚାରୁ ତ୍ରିବଳି ସରାଗେ ।
ବକ୍ଷୋଜ ବଦନ ଉଚ୍ଚ ସ୍ଥାନମାନ
ପାଶେ ଯିବାକୁ ମଦନ
ସତେକି ଯୌବନ କରିଛି ନିର୍ମାଣ
ଚାରୁ ତ୍ରିସ୍ତର ସୋପାନ ॥ ୩୯ ॥

### ଶ୍ଲୋକ- ୪୦

ଅନ୍ୟୋନ୍ୟମୁତ୍ପୀଡୟଦୁତ୍ପଲାକ୍ଷ୍ୟାଃ
ସ୍ତନଦ୍ୱୟଂ ପାଣ୍ଡୁ ତଥା ପ୍ରବୃଦ୍ଧମ୍ ।
ମଧ୍ୟେ ଯଥା ଶ୍ୟାମମୁଖସ୍ୟ ତସ୍ୟ
ମୃଣାଳସୂତ୍ରାନ୍ତରମପ୍ୟଲଭ୍ୟମ୍ ॥ ୪୦ ॥

ଅନ୍ୱୟ- ଅନ୍ୟୋନ୍ୟମ୍ ଉତ୍ପୀଡୟତ୍ ପାଣ୍ଡୁ ଉତ୍ପଲାକ୍ଷ୍ୟାଃ ସ୍ତନଦ୍ୱୟଂ ତଥା ପ୍ରବୃଦ୍ଧମ୍, ଶ୍ୟାମମୁଖସ୍ୟ ତସ୍ୟ ମଧ୍ୟେ ଯଥା ମୃଣାଳସୂତ୍ରାନ୍ତରମ୍ ଅପି ଲଭ୍ୟମ୍ (ଆସୀତ୍) ।

ପଦ୍ୟାନୁବାଦ -

କମଳ ନୟନୀ ଗୌରୀ ପୀନସ୍ତନୀ
କୁଚ ଅଗ୍ର କୃଷ୍ଣବର୍ଣ୍ଣ
ଅତ୍ୟଧିକ ବୃଦ୍ଧି ହେତୁ କୁଚସନ୍ଧି
ହୋଇଛି ଅତି ସଂକୀର୍ଣ୍ଣ ।
ସେହି ସନ୍ଧିସ୍ଥାନ ଏତେ ଯେ ସଂକୀର୍ଣ୍ଣ
ମୃଣାଳ ନାଡର ସୂତ୍ର
ପ୍ରବେଶ ପାଇଁକି ଚେଷ୍ଟା କଲେ ମଧ୍ୟ
ହୋଇବ ନାହିଁ ସମର୍ଥ ॥ ୪୦ ॥

**ଶ୍ଳୋକ- ୪୧**

ଶିରୀଷପୁଷ୍ପୋଽଧିକସୌକୁମାର୍ଯୌ
ବାହୁ ତଦୀୟାବିତି ମେ ବିତର୍କଃ ।
ପରାଜିତେନାଽପି କୃତୌ ହରସ୍ୟ
ଯୌ କଣ୍ଠପାଶୌ ମକରଧ୍ୱଜେନ ॥ ୪୧ ॥

ଅନ୍ୱୟ- ଯୌ (ବାହୁ) ପରାଜିତେନ ଅପି ମକରଧ୍ୱଜେନ ହରସ୍ୟ କଣ୍ଠପାଶୌ କୃତୌ, (ଅତଃ) ତଦୀୟୋ ବାହୁ ଶିରୀଷପୁଷ୍ପୋଽଧିକସୌକୁମାର୍ଯୌ ଇତି ମେ ବିତର୍କଃ (ଅସ୍ତି) ।

ପଦ୍ୟାନୁବାଦ -

ହର କୋପାନଳେ ଜଳିଥିଲେ ଦିନେ
ରତିପତି କାମଦେବ
ସେ କୋପରୁ ମୁକ୍ତି ପାଇବା ପାଇଁକି
ଉପାୟ କଲେ ଉଭବ ।
ଶିରୀଷ ପୁଷ୍ପଠୁ ଅଧିକ କୋମଳ
ପାର୍ବତୀଙ୍କ ଦୁଇ ହସ୍ତ
ଶିବଙ୍କ ଗଳାରେ କଣ୍ଠପାଶ ରୂପେ
ଦେଇ ହେଲେ ଭୟ ମୁକ୍ତ ॥ ୪୧ ॥

### ଶ୍ଲୋକ- ୪୨

କଣ୍ଠସ୍ୟ ତସ୍ୟାଃ ସ୍ତନବନ୍ଧୁରସ୍ୟ
ମୁକ୍ତାକଲାପସ୍ୟ ଚ ନିସ୍ତଲସ୍ୟ।
ଅନ୍ୟୋନ୍ୟଶୋଭାଜନନାଦ୍‌ଭୂବ
ସାଧାରଣୋ ଭୂଷଣଭୂଷ୍ୟଭାବଃ ॥ ୪୨ ॥

ଅନ୍ୱୟ- ସ୍ତନବନ୍ଧୁରସ୍ୟ ତସ୍ୟାଃ କଣ୍ଠସ୍ୟ ନିସ୍ତଲସ୍ୟ ମୁକ୍ତାକଲାପସ୍ୟ ଚ ଅନ୍ୟୋନ୍ୟଶୋଭାଜନନାତ୍ ଭୂଷଣଭୂଷ୍ୟଭାବଃ ସାଧାରଣଃ ବଭୂବ।

ପଦ୍ୟାନୁବାଦ -

ହିମାଦ୍ରି ନନ୍ଦିନୀ ଘଉରୁ ପୀନସ୍ତନୀ
ଗଳେ ଶୋଭେ ମୁକ୍ତାହାର
ବର୍ତ୍ତୁଳ ମୁକୁତା- ହାରେ ବିଭୂଷିତା
କଣ୍ଠ ଦିଶେ କି ସୁନ୍ଦର।
କଣ୍ଠ ତ ସୁନ୍ଦର ହାର ବି ସୁନ୍ଦର
ଏକକୁ ଆରେକ ବଳି
ପରସ୍ପର ଶୋଭା ବୃଦ୍ଧିର କାରକ
ଭାବେ ରହିଛନ୍ତି ମିଳି ॥ ୪୨ ॥

### ଶ୍ଲୋକ- ୪୩

ଚନ୍ଦ୍ରଂ ଗତା ପଦ୍ମଗୁଣାନ୍ନ ଭୁଙ୍‌କ୍ତେ
ପଦ୍ମାଶ୍ରିତା ଚାନ୍ଦ୍ରମସୀମଭିଖ୍ୟାମ୍।
ଉମାମୁଖଂ ତୁ ପ୍ରତିପଦ୍ୟ ଲୋଳା
ଦ୍ୱିସଂଶ୍ରୟାଂ ପ୍ରୀତିମବାପ ଲକ୍ଷ୍ମୀଃ ॥ ୪୩ ॥

ଅନ୍ୱୟ -ଲୋଳା ଲକ୍ଷ୍ମୀଃ ଚନ୍ଦ୍ରଂ ଗତା (ସତୀ), ପଦ୍ମଗୁଣାନ୍ ନ ଭୁଙ୍କ୍ତେ, ପଦ୍ମାଶ୍ରିତା (ସତୀ), ଚାନ୍ଦ୍ରମସୀମ୍ ଅଭିଖ୍ୟାଂ ନ ଭୁଙ୍‌କ୍ତେ। ଉମାମୁଖଂ ପ୍ରତିପଦ୍ୟ ତୁ ଦ୍ୱିସଂଶ୍ରୟାଂ ପ୍ରୀତିମ୍ ଅବାପ।

ପଦ୍ୟାନୁବାଦ -

ରାତ୍ରେ ପୂର୍ଣ୍ଣଚନ୍ଦ୍ର ପ୍ରାପ୍ତ ହେଲେ ମଧ୍ୟ
ମିଳେନାହିଁ ପଦ୍ମଗୁଣ
ଦିବସେ କମଳ ଆଶ୍ରିତ ହୋଇ ବି
ମିଳେନି ଚନ୍ଦ୍ର କିରଣ।
ତେଣୁ ଶୋଭାଲକ୍ଷ୍ମୀ ଏ ଦୁଇ ଉପେକ୍ଷି
ଛାଡ଼ି ଚଞ୍ଚଳା ସ୍ୱଭାବ
ଉମାମୁଖେ ଦେଖି ଚନ୍ଦ୍ର-ପଦ୍ମଗୁଣ
ହୋଇଛନ୍ତି ଆବିର୍ଭାବ ॥ ୪୩ ॥

### ଶ୍ଳୋକ- ୪୪

ପୁଷ୍ପଂ ପ୍ରବାଳୋପହିତଂ ଯଦି
ସ୍ୟାନ୍ମୁକ୍ତାଫଳଂ ବା ସ୍ଫୁଟବିଦ୍ରୁମସ୍ଥମ୍।
ତତୋଽନୁକୁର୍ଯ୍ୟାଦ୍ୱିଶଦସ୍ୟ ତସ୍ୟାଃ
ତାମ୍ରୌଷ୍ଠପର୍ଯ୍ୟସ୍ତରୁଚଃ ସ୍ମିତସ୍ୟ ॥ ୪୪ ॥

ଅନ୍ୱୟ- ପୁଷ୍ପଂ ପ୍ରବାଳୋପହିତଂ ସ୍ୟାତ୍ ଯଦି ମୁକ୍ତାଫଳଂ ବା ସ୍ଫୁଟବିଦ୍ରୁମସ୍ଥଂ ସ୍ୟାତ୍ ଯଦି ତତଃ ବିଶଦସ୍ୟ ତାମ୍ରୌଷ୍ଠପର୍ଯ୍ୟସ୍ତରୁଚଃ ତସ୍ୟାଃ ସ୍ମିତସ୍ୟ ଅନୁକୁର୍ଯ୍ୟାତ୍।

ପଦ୍ୟାନୁବାଦ -

ତାମ୍ର ବର୍ଣ୍ଣ ନବ କୋମଳ ପଲ୍ଲବ-
ପରେ ସୁମନଃ ଧବଳ
ଅବା ଲାଲ ବର୍ଣ୍ଣ ପ୍ରବାଳ ଉପରେ
ରଖିଲେ ମୁକ୍ତାର ଫଳ।
ଯେଉଁ ମନଲୋଭା ଅପରୂପ ଶୋଭା
ହୋଇଥାଏ ଦୃଶ୍ୟମାନ
ପାର୍ବତୀଙ୍କ ତାମ୍ର ଅଧରରେ ନମ୍ର
ସ୍ମିତହାସ୍ୟ ସେ ସମାନ ॥ ୪୪ ॥

## ଶ୍ଲୋକ- ୪୫

ସ୍ୱରେଣ ତସ୍ୟାମମୃତସ୍ରୁତେବ
ପ୍ରଜଳ୍ପିତାୟାମଭିଜାତବାଚି ।
ଅପ୍ୟନ୍ୟପୁଷ୍ଟା ପ୍ରତିକୂଳଶବ୍ଦା
ଶ୍ରୋତୁର୍ବିତନ୍ତ୍ରୀରିବତାଡ୍ୟମାନା ॥ ୪୫ ॥

ଅନ୍ୱୟ- ଅଭିଜାତବାଚି ତସ୍ୟାମ୍ ଅମୃତସ୍ରୁତା ଇବ ସ୍ୱରେଣ ପ୍ରଜଳ୍ପିତାୟାଂ (ସତ୍ୟାମ୍), ଅନ୍ୟପୁଷ୍ଟା ଅପି ତାଡ୍ୟମାନା ବିତନ୍ତ୍ରୀଃ ଇବ ଶ୍ରୋତୁଃ ପ୍ରତିକୂଳଶବ୍ଦା (ଭବତି) ।

ପଦ୍ୟାନୁବାଦ -

ମଧୁରଭାଷିଣୀ ହିମାଦ୍ରି ନନ୍ଦିନୀ
କଥାରେ ଝରେ ପୀୟୂଷ
କୋକିଳ କୂଜନ ନୁହେଁ ତା ସମାନ
ଶୁଭଇ ଅତି କର୍କଶ ।
ନଥାଇ ସାଧନା ବଜାଇଲେ ବୀଣା
ସୃଷ୍ଟି ହୁଏ ଯେଉଁ ସ୍ୱର
କୋକିଳର ସ୍ୱର ଶୁଭେ ସେ ପ୍ରକାର
ହୁଏନି ଶ୍ରୁତି ମଧୁର ॥ ୪୫ ॥

## ଶ୍ଲୋକ- ୪୬

ପ୍ରବାତନୀଳୋତ୍ପଳନିର୍ବିଶେଷମ୍
ଅଧୀରବିପ୍ରେକ୍ଷିତମାୟତାକ୍ଷ୍ୟା ।
ତୟା ଗୃହିତଂ ନୁ ମୃଗାଙ୍ଗନାଭ୍ୟଃ
ତତୋ ଗୃହିତଂ ନୁ ମୃଗାଙ୍ଗନାଭିଃ ॥ ୪୬ ॥

ଅନ୍ୱୟ - ପ୍ରବାତନୀଳୋତ୍ପଳନିର୍ବିଶେଷମ୍ ଅଧୀରବିପ୍ରେକ୍ଷିତମ୍ ଆୟତାକ୍ଷ୍ୟା ତୟା ମୃଗାଙ୍ଗନାଭ୍ୟଃ ଗୃହିତଂ ନୁ, ଯଦ୍ୱା ମୃଗାଙ୍ଗନାଭିଃ ତତୋ ଗୃହିତଂ ନୁ ।

ପଦ୍ୟାନୁବାଦ -

ମନ୍ଦ ମନ୍ଦ ବାତ		କରେ ଆନ୍ଦୋଳିତ
	ନୀଳୋତ୍ପଳ ଯେଉଁପରି
କଟାକ୍ଷରେ ପୂର୍ଣ୍ଣ		ଗୌରୀଙ୍କ ନୟନ
	ଦିଶୁଥିଲା ସେହିପରି ।
ସତେକି ହରିଣୀ		ମାନଙ୍କ ଚହାଣି
	ଦେଖି ସେ କଲା ପାର୍ବତୀ
ଶିଖିଛନ୍ତି ଅବା		ହରିଣୀ ସମସ୍ତ
	ତାଙ୍କଠାରୁ ଶିଖିଛନ୍ତି ॥ ୪୬ ॥

## ଶ୍ଳୋକ- ୪୭

ତସ୍ୟାଃ ଶଳାକାଞ୍ଜନନିର୍ମିତେବ
କାନ୍ତିର୍ଭ୍ରୁବୋରାୟତଲେଖୟୋର୍ଯା ।
ତାଂ ବୀକ୍ଷ୍ୟ ଲୀଳାଚତୁରାମନଙ୍ଗଃ
ସ୍ୱଚାପସୌନ୍ଦର୍ଯମଦଂ ମୁମୋଚ ॥ ୪୭ ॥

ଅନ୍ୱୟ- ଆୟତଲେଖୟୋଃ ତସ୍ୟାଃ ଭ୍ରୁବୋଃ ଶଳାକାଞ୍ଜନନିର୍ମିତା ଇବ (ସ୍ଥିତା) ଯା କାନ୍ତିଃ, ଲୀଳାଚତୁରାଂ ତାଂ ବୀକ୍ଷ୍ୟ ଅନଙ୍ଗଃ ସ୍ୱଚାପସୌନ୍ଦର୍ଯମଦଂ ମୁମୋଚ ।

ପଦ୍ୟାନୁବାଦ -

ଭ୍ରୁଲତାର ଶୋଭା		ଅତି ମନଲୋଭା
	ଦୀର୍ଘ ଶୀର୍ଣ୍ଣ ରେଖା ପ୍ରାୟ
ତୂଳିକା ଅଞ୍ଜନେ		ଚିତ୍ରିତ ଯେସନେ
	ଦେଖିଲେ ହୁଏ ପ୍ରତ୍ୟୟ ।
ନେତ୍ର ଆକର୍ଷକ		ଆନନ୍ଦ ଦାୟକ
	ଏମନ୍ତ ସୌନ୍ଦର୍ଯ୍ୟ ଦେଖି
ନିଜ ପୁଷ୍ପଧନୁ		ତେଜିଲେ ଅତନୁ
	ଧନୁ ସୌନ୍ଦର୍ଯ୍ୟ ପରଖି ॥ ୪୭ ॥

## ଶ୍ଲୋକ- ୪୮

ଲଜ୍ଜା ତିରଶ୍ଚାଂ ଯଦି ଚେତସି ସ୍ୟାତ୍
ଅସଂଶୟଂ ପର୍ବତରାଜପୁତ୍ର୍ୟାଃ ।
ତଂ କେଶପାଶଂ ପ୍ରସମୀକ୍ଷ୍ୟ କୁର୍ଯ୍ୟୁଃ
ବାଳପ୍ରିୟତ୍ୱଂ ଶିଥିଳଂ ଚମର୍ଯ୍ୟଃ ॥ ୪୮ ॥

ଅନ୍ୱୟ- ତିରଶ୍ଚାଂ ଚେତସି ଲଜ୍ଜା ସ୍ୟାତ୍ ଯଦି, ଅସଂଶୟଂ ପର୍ବତରାଜପୁତ୍ର୍ୟାଃ ତଂ କେଶପାଶଂ ପ୍ରସମୀକ୍ଷ୍ୟ ଚମର୍ଯ୍ୟଃ ବାଳପ୍ରିୟତ୍ୱଂ ଶିଥିଳଂ କୁର୍ଯ୍ୟୁଃ ।

ପଦ୍ୟାନୁବାଦ -

ଗିରିରାଜ ସୁତା ରୂପେ ଅନିନ୍ଦିତା
ପାର୍ବତୀଙ୍କ ଘରୁ କେଶ
ତୁଳନୀୟ ନୁହେଁ ସେହି କେଶ ସହ
ଚମରୀଙ୍କ ପୁଚ୍ଛଦେଶ ।
ରହିଥାନ୍ତା ଯଦି ଲେଶ ମାତ୍ର ଲାଜ
ଚମରୀମାନଙ୍କ ମନେ
ଛାଡିଥାନ୍ତେ ମୋହ ନିଜ ପୁଚ୍ଛ ପ୍ରତି
ଦେଖି ସେ କେଶ ତତ୍‌କ୍ଷଣେ ॥୪୮ ॥

## ଶ୍ଲୋକ- ୪୯

ସର୍ବୋପମାଦ୍ରବ୍ୟସମୁଚ୍ଚୟେନ
ଯଥାପ୍ରଦେଶଂ ବିନିବେଶିତେନ ।
ସା ନିର୍ମିତା ବିଶ୍ୱସୃଜା ପ୍ରଯତ୍ନାତ୍
ଏକସ୍ଥସୌନ୍ଦର୍ଯଦିଦୃକ୍ଷୟେବ ॥ ୪୯ ॥

ଅନ୍ୱୟ- ସା ବିଶ୍ୱସୃଜା ଏକସ୍ଥସୌନ୍ଦର୍ଯଦିଦୃକ୍ଷୟା ଇବ ପ୍ରଯତ୍ନାତ୍ ଯଥାପ୍ରଦେଶଂ ବିନିବେଶିତେନ ସର୍ବୋପମାଦ୍ରବ୍ୟସମୁଚ୍ଚୟେନ ନିର୍ମିତା ।

ପଦ୍ୟାନୁବାଦ

ସୃଷ୍ଟିର ସମସ୍ତ ସୌନ୍ଦର୍ଯ୍ୟ ଏକତ୍ର
ଦର୍ଶନ କରିବା ପାଇଁ
ସମ୍ଭବତଃ ଅତି ଯତ୍ନେ ପାର୍ବତୀଙ୍କୁ
ରଚିଅଛନ୍ତି ସେ ବିହି।
ନାସିକାକୁ ତିଳ ନେତ୍ରକୁ କମଳ
ଚନ୍ଦ୍ର ସହିତ ବଦନ
ଉପମାନ ରୂପେ ପ୍ରୟୋଗ କରିଣ
କରିଅଛନ୍ତି ସୃଜନ ॥ ୪୯ ॥

**ଶ୍ଳୋକ- ୫୦**

ତାଂ ନାରଦଃ କାମଚରଃ କଦାଚିତ୍
କନ୍ୟାଂ କିଳ ପ୍ରେକ୍ଷ୍ୟ ପିତୁଃ ସମୀପେ।
ସମାଦିଦେଶୈକବଧୂଂ ଭବିତ୍ରୀଂ
ପ୍ରେମ୍ଣା ଶରୀରାର୍ଦ୍ଧହରାଂ ହରସ୍ୟ ॥ ୫୦ ॥

ଅନ୍ୱୟ- କାମଚରଃ ନାରଦଃ କଦାଚିତ୍ ପିତୁଃ ସମୀପେ କନ୍ୟାଂ ତାଂ ପ୍ରେକ୍ଷ୍ୟ କିଳ ପ୍ରେମ୍ଣା ଶରୀରାର୍ଦ୍ଧହରାଂ ଏକବଧୂଂ ଭବିତ୍ରୀଂ ସମାଦିଦେଶ।

ପଦ୍ୟାନୁବାଦ -

ସ୍ୱ ଇଚ୍ଛାରେ ଯିଏ ବିଚରନ୍ତି ସିଏ
ଅଟନ୍ତି ନାରଦ ମୁନି
ପାର୍ବତୀଙ୍କୁ ଥରେ ପିତା ପାଶେ ଦେଖି
କଲେ ଭବିଷ୍ୟତ ବାଣୀ।
ଏ କନ୍ୟାଙ୍କ ସହ ଶିବଙ୍କ ବିବାହ
ହୋଇବ ଦିନେ ସମ୍ପନ୍ନ
ଏକମାତ୍ର ପତ୍ନୀ ହେବେ ଶିବଙ୍କର
ଅର୍ଦ୍ଧାଙ୍ଗ କରି ହରଣ ॥ ୫୦ ॥

### ଶ୍ଳୋକ- ୫୧

ଗୁରୁଃ ପ୍ରଗଲ୍ଭେଽପି ବୟସ୍ୟତୋଽସ୍ୟାଃ
ତସ୍ଥୌ ନିବୃତ୍ତାନ୍ୟବରାଭିଳାଷଃ ।
ଋତେ କୃଶାନୋର୍ନ ହି ମନ୍ତ୍ରପୂତମ୍
ଅର୍ହନ୍ତି ତେଜାଂସ୍ୟପରାଣି ହବ୍ୟମ୍ ॥ ୫୧ ॥

ଅନ୍ୱୟ - ଗୁରୁଃ ଅତଃ ଅସ୍ୟାଃ ପ୍ରଗଲ୍ଭେ ବୟସି ଅପି ନିବୃତ୍ତାନ୍ୟବରାଭିଳାଷଃ ସନ୍ ତସ୍ଥୌ, ମନ୍ତ୍ରପୂତଂ ହବ୍ୟଂ କୃଶାନୋଃ ଋତେ ଅପରାଣି ତେଜାଂସି ନ ଅର୍ହନ୍ତି ।

ପଦ୍ୟାନୁବାଦ

ନାରଦ ବଚନ ଶୁଣି ହିମବାନ
ଯୁବତୀ ପାର୍ବତୀ ପାଇଁ
ଶିବଙ୍କ ବ୍ୟତୀତ ଅନ୍ୟ ବରପାତ୍ର
ଅନ୍ୱେଷଣ କଲେନାହିଁ ।
ହବ୍ୟ ମନ୍ତ୍ରପୂତ ଅଗ୍ନିଙ୍କ ବ୍ୟତୀତ
ଅନ୍ୟ କେହି ତେଜବାନ
ନୁହନ୍ତି ସମର୍ଥ ଆହୁତି ରୂପରେ
କରିବା ପାଇଁ ଗ୍ରହଣ ।
ସେହିପରି ହର ବ୍ୟତୀତ କେ ବର
ପାର୍ବତୀଙ୍କ ଉପଯୁକ୍ତ
ନୁହନ୍ତି ସମର୍ଥ ଧରିବା ପାଇଁକି
ପତି ରୂପେ ତାଙ୍କ ହସ୍ତ ॥ ୫୧ ॥

### ଶ୍ଳୋକ-୫୨

ଅଯାଚିତାରଂ ନ ହି ଦେବଦେବମ୍
ଅଦ୍ରିଃ ସୁତାଂ ଗ୍ରାହୟିତୁଂ ଶଶାକ ।
ଅଭ୍ୟର୍ଥନାଭଙ୍ଗଭୟେନ ସାଧୁଃ
ମାଧ୍ୟସ୍ଥ୍ୟମିଷ୍ଟେଽପ୍ୟବଲମ୍ବତେଽର୍ଥେ ॥ ୫୨ ॥

ଅନ୍ୱୟ- ଅଦ୍ରିଃ ଅଯାଚିତାରଂ ଦେବଦେବଂ ସୁତାଂ ଗ୍ରାହୟିତୁଂ ନ ଶଶାକ, (ତଥାହି) ସାଧୁଃ ଅଭ୍ୟର୍ଥନାଭଙ୍ଗଭୟେନ ଇଷ୍ଟେ ଅପି ଅର୍ଥେ ମାଧ୍ୟସ୍ଥ୍ୟମ୍ ଅବଲମ୍ବତେ ।

ପଦ୍ୟାନୁବାଦ -

ବିବାହ ନିମିତ୍ତ ପାର୍ବତୀଙ୍କ ହସ୍ତ
ନ ମାଗନ୍ତେ ମହାଦେବ
ପିତା ହିମାଳୟ ହରାଇ ଉତ୍ସାହ
ରହିଲେ ମଧ୍ୟ ନିରବ ।
ନିଜ ନିବେଦନ ନ ହେବା ଗ୍ରହଣ
ଭୟ ହେତୁ ସାଧୁଜନ
ନିଜର ଅତ୍ୟନ୍ତ ଅଭିଷ୍ଟ କାର୍ଯ୍ୟରେ
ରହିଥାନ୍ତି ଉଦାସୀନ ॥ ୫୨ ॥

### ଶ୍ଳୋକ- ୫୩

ଯଦୈବ ପୂର୍ବେ ଜନନେ ଶରୀରଂ
ସା ଦକ୍ଷରୋଷାତ୍ସୁଦତି ସସର୍ଜ ।
ତଦା ପ୍ରଭୃତ୍ୟେବ ବିମୁକ୍ତସଙ୍ଗଃ
ପତିଃ ପଶୂନାମପରିଗ୍ରହୋଽଭୂତ୍ ॥ ୫୩ ॥

ଅନ୍ୱୟ- ସୁଦତି ସା ପୂର୍ବେ ଜନନେ (ପୂର୍ବଂ ଜ୍ୱଳେନ ବା) ଯଦା ଦକ୍ଷରୋଷାତ୍ ଶରୀରଂ ସସର୍ଜ, ତଦା ପ୍ରଭୃତି ଏବ ପଶୂନାଂ ପତିଃ ବିମୁକ୍ତସଙ୍ଗଃ ସନ୍ ଅପରିଗ୍ରହ ଅଭୂତ୍ ।

ପଦ୍ୟାନୁବାଦ -

ଦକ୍ଷରାଜ ପୁତ୍ରୀ ସୁଦର୍ଶିନୀ ସତୀ
ପିତାଙ୍କର ଅପମାନ
ସହି ନପାରିଣ କଲେ ବିସର୍ଜନ
ଯୋଗାଗ୍ନିରେ ଅପଘନ ।

ସତୀଙ୍କ ନିଧନ ପରେ ତ୍ରିନୟନ
ତେଜି ବିଷୟ ବାସନା
ପୁନଶ୍ଚ ବିବାହ ଅନ୍ୟ ସ୍ତ୍ରୀ ସହ
ପାଇଁ କରିଥିଲେ ମନା ॥ ୫୩ ॥

**ଶ୍ଲୋକ- ୫୪**

ସ କୃତ୍ତିବାସାସ୍ତପସେ ଯତାତ୍ମା
ଗଙ୍ଗାପ୍ରବାହୋକ୍ଷିତଦେବଦାରୁଃ ।
ପ୍ରସ୍ଥଂ ହିମାଦ୍ରେର୍ମୃଗନାଭିଗନ୍ଧି
କିଂଚିତ୍କ୍ୱଣକ୍ରିନ୍ନରମଧ୍ୟୁବାସ ॥ ୫୪ ॥

ଅନ୍ୱୟ- କୃତ୍ତିବାସାଃ ଯତାତ୍ମା ସଃ ତପସେ ଗଙ୍ଗାପ୍ରବାହୋକ୍ଷିତଦେବଦାରୁଃ ମୃଗନାଭିଗନ୍ଧି କ୍ୱଣକ୍ରିନ୍ନରଂ କିଞ୍ଚିତ୍ ହିମାଦ୍ରେଃ ପ୍ରସ୍ଥମ୍ ଅଧ୍ୟୁବାସ ।

**ପଦ୍ୟାନୁବାଦ**

ଜିତେନ୍ଦ୍ରିୟ ଗଜ- ଚର୍ମ ପରିହିତ
ଶିବ ତପସ୍ୟା ନିମିତ୍ତ
ହିମାଦ୍ରି ଶିଖରେ ପ୍ରସ୍ତର ପୃଷ୍ଠରେ
ହୋଇଥିଲେ ଉପବିଷ୍ଟ ।
ଜଟାରୁ ନିସୃତ ମନ୍ଦାକିନୀ ପୂତ
ଜଳ ପ୍ରବାହରେ ସିକ୍ତ
ହେଉଥିଲେ ଦେବ ଦାରୁ ବୃକ୍ଷରାଜି
ପ୍ରକୃତି ଦ୍ୱାରା ପ୍ରଦତ୍ତ ।
କସ୍ତୁରୀ ମୃଗଙ୍କ ସୁଗନ୍ଧରେ ପୂର୍ଣ୍ଣ
ରହିଥିଲା ସେହି ସ୍ଥାନ
କିନ୍ନର ଯୁଗଳ ମଧୁର କୋମଳ
ସ୍ୱରେ କରୁଥିଲେ ଗାନ ॥ ୫୪ ॥

### ଶ୍ଲୋକ-୫୫

ଗଣା ନମେରୁପ୍ରସବାବତଂସା
ଭୂର୍ଜତ୍ୱଚଃ ସ୍ପର୍ଶବତୀର୍ଦ୍ଧଧାନାଃ ।
ମନଃଶିଳାବିଚ୍ଛୁରିତା ନିଷେଦୁଃ
ଶୈଳେୟନଦ୍ଧେଷୁ ଶିଳାତଳେଷୁ ॥ ୫୫ ॥

ଅନ୍ୱୟ- ଗଣାଃ ନମେରୁପ୍ରସବାବତଂସା ସ୍ପର୍ଶବତୀଃ ଭୂର୍ଜତ୍ୱଚଃ ଦଧାନାଃ ମନଃ ଶିଳାବିଚ୍ଛୁରିତା ଶୈଳେୟନଦ୍ଧେଷୁ ନିଷେଦୁଃ ।

ପଦ୍ୟାନୁବାଦ -

ଶିବଙ୍କ ପ୍ରମଥ ମନଃଶିଳାଯୁକ୍ତ
ପ୍ରସ୍ତର ଚଟାଣ ପରେ
ସ୍ନିଗ୍ଧ ଭୋଜପତ୍ର କରି ନିଜ ବସ୍ତ୍ର
ରହୁଥିଲେ ଆନନ୍ଦରେ ।
କର୍ଣ୍ଣ ଆଭୂଷଣ ରୂପେ ବିମଣ୍ଡନ
ସୁର-ପୁନ୍ନାଗ ସୁମନ
ଶିବଙ୍କର ସେବା କରି ପ୍ରତିଦିନ
ବିତି ଯାଉଥିଲା ଦିନ ॥ ୫୫ ॥

### ଶ୍ଲୋକ- ୫୬

ତୁଷାରସଙ୍ଘାତଶିଳା ଖୁରାଗ୍ରୈଃ
ସମୁଲ୍ଲିଖନ୍ଦର୍ପକଳଃ କକୁଦ୍ମାନ୍ ।
ଦୃଷ୍ଟଃ କଥଞ୍ଚିଦ୍ ଗବୟୈର୍ବିବିଗ୍ନୈଃ
ଅସୋଢସିଂହଧ୍ୱନିରୁନ୍ନନାଦ ॥ ୫୬ ॥

ଅନ୍ୱୟ- ତୁଷାରସଙ୍ଘାତଶିଳା ଖୁରାଗ୍ରୈଃ ସମୁଲ୍ଲିଖନ୍ ଦର୍ପକଳଃ ବିବିଗ୍ନୈଃ ଗବୟୈଃ କଥଞ୍ଚିତ୍ ଦୃଷ୍ଟଃ କକୁଦ୍ମାନ୍ ଅସୋଢସିଂହଧ୍ୱନିଃ ସନ୍ ଉନ୍ନନାଦ ।

ପଦ୍ୟାନୁବାଦ -

ଶିବଙ୍କ ବୃଷଭ ମନେ କରି ଗର୍ବ
କରେ ମଧୁର ଗର୍ଜନ
ଅତ୍ୟନ୍ତ କଠିନ ତୁଷାର ଚଟାଣ
ଖୁରାରେ କରେ ବିଦୀର୍ଣ୍ଣ ।
ସିଂହ ରଡି ସହି ପାରେନାହିଁ ସେହି
ମାରୁଥାଏ ସେ ହୁଙ୍କାଳ
ଦେଖି ତାକୁ ଭୟ କରନ୍ତି ଗବୟ
ଭୟରେ କାଟନ୍ତି କାଳ ॥ ୫୬ ॥

**ଶ୍ଳୋକ - ୫୭**

ତତ୍ରାଽଗ୍ନିମାଧାୟ ସମିତ୍ସମିଦ୍ଧଂ
ସ୍ୱମେବ ମୂର୍ତ୍ତ୍ୟନ୍ତରମଷ୍ଟମୂର୍ତ୍ତିଃ ।
ସ୍ୱୟଂ ବିଧାତା ତପସଃ ଫଳାନାଂ
କେନାଽପି କାମେନ ତପଶ୍ଚଚାର ॥ ୫୭ ॥

ଅନ୍ୱୟ- ତପସଃ ଫଳାନାଂ ସ୍ୱୟଂ ବିଧାତା ଅଷ୍ଟମୂର୍ତ୍ତିଃ ତତ୍ର ସ୍ୱମ୍ ଏବ ମୂର୍ତ୍ତ୍ୟଂନ୍ତରଂ ସମିତ୍ସମିଦ୍ଧଂ ଅଗ୍ନିମ୍ ଆଧାୟ କେନ ଅପି କାମେନ ତପଃ ଚଚ୍ଚର ।

ପଦ୍ୟାନୁବାଦ -

ଅନ୍ୟକୁ ଅଭୀଷ୍ଟ ଫଳ ଦେଇ ତୁଷ୍ଟ
କରନ୍ତି ଯେ ଅଷ୍ଟମୂର୍ତ୍ତି
ନିଜ କେଉଁ ଏକ ଦିବ୍ୟ ମାନସିକ
କରିବା ପାଇଁକି ପୂର୍ତ୍ତି ।
ସେ ଗିରି ଶିଖରେ ଯଜ୍ଞ ସମିଧରେ
ନିଜ ରୂପ ବୈଶ୍ୱାନର
ସଂଯୋଗ କରିଣ ତପ ଆଚରଣ
କରୁଥିଲେ ସ୍ୱୟଂ ହର ॥ ୫୭ ॥

### ଶ୍ଲୋକ- ୫୮

ଅନର୍ଘ୍ୟମର୍ଘ୍ୟେଣ ତମଦ୍ରିନାଥଃ
ସ୍ୱର୍ଗୌକସାମର୍ଚ୍ଚିତମର୍ଚ୍ଚୟିତ୍ୱା ।
ଆରାଧନାୟାଽସ୍ୟ ସଖୀସମେତାଂ
ସମାଦିଦେଶ ପ୍ରୟତାଂ ତନୂଜାମ୍ ॥ ୫୮ ॥

ଅନ୍ୱୟ- ଅଦ୍ରିନାଥଃ ଅନର୍ଘ୍ୟ ସ୍ୱର୍ଗୌକସାମ୍ ଅର୍ଚ୍ଚିତଂ ତମ୍ ଅର୍ଘ୍ୟେଣ ଅର୍ଚ୍ଚୟିତ୍ୱା
ଅସ୍ୟ ଆରାଧନାୟ ସଖୀସମେତାଂ ପ୍ରୟାତାଂ ତନୂଜାଂ ସମାଦିଦେଶ ।

ପଦ୍ୟାନୁବାଦ -

ସବୁଠୁ ମହାର୍ଘ ଦେବତାଙ୍କ ପୂଜ୍ୟ
ଶଂକର ହିମାଦ୍ରି ପରେ
ଥିଲେ ଅଧିଷ୍ଠିତ ହିମ ପରବତ
ପୂଜିଲେ ତାଙ୍କୁ ସାଦରେ ।
ନିୟମେ ପବିତ୍ର ପାର୍ବତୀ ସହିତ
ସଖୀଙ୍କୁ ସେ ହିମଗିରି
ଶିବ ଆରାଧନା କରିବା ପାଇଁକି
କରିଲେ ଆଦେଶ ଜାରି ॥ ୫୮ ॥

### ଶ୍ଲୋକ-୫୯

ପ୍ରତ୍ୟର୍ଥିଭୂତାମପି ତାଂ ସମାଧେଃ
ଶୁଶ୍ରୂଷମାଣାଂ, ଗିରିଶୋଽନୁମେନେ ।
ବିକାରହେତୌ ସତି ବିକ୍ରିୟନ୍ତେ
ଯେଷାଂ ନ ଚେତାଂସି ତ ଏବ ଧୀରାଃ ॥ ୫୯ ॥

ଅନ୍ୱୟ- ଗିରିଶଃ ସମାଧେଃ ପ୍ରତ୍ୟର୍ଥିଭୂତାମ୍ ଅପି ଶୁଶ୍ରୂଷମାଣାଂ ତାମ୍ ଅନୁମେନେ,
ବିକାରହେତୌ ସତି ଯେଷାଂ ଚେତାଂସି ନ ବିକ୍ରିୟନ୍ତେ, ତେ ଏବ ଧୀରାଃ ।

ପଦ୍ୟାନୁବାଦ -

ତପସ୍ୟାରେ ବିଘ୍ନ ହେବାର କାରଣ
ଜାଣି ବି କୈଳାସପତି
ସେବାରେ ନିମଗ୍ନା ପାର୍ବତୀଙ୍କୁ ସେବା
ପାଇଁ ଦେଲେ ଅନୁମତି ।
ବିକାର ଉତ୍ପନ ହେବାର କାରଣ
ରହି ମଧ୍ୟ ଉପସ୍ଥିତ
ଯା ମନେ ବିକୃତି ହୁଏନି ଉତ୍ପତ୍ତି
ସେ ଅଟନ୍ତି ସ୍ଥିର ଚିତ୍ତ ॥ ୫୯ ॥

**ଶ୍ଳୋକ- ୬୦**

ଅବଚିତବଲିପୁଷ୍ପା ବେଦିସମ୍ମାର୍ଗଦକ୍ଷା
ନିୟମବିଧିଜଳାନାଂ ବର୍ହିଷାଂଚୋପନେତ୍ରୀ ।
ଗିରିଶମୁପଚଚାର ପ୍ରତ୍ୟହଂ ସା ସୁକେଶୀ
ନିୟମିତପରିଖେଦା ତଚ୍ଛିରଶ୍ଚନ୍ଦ୍ରପାଦୈଃ ॥ ୬୦ ॥

ଅନ୍ୱୟ- ସୁକେଶୀ ସା ଅବଚିତବଲିପୁଷ୍ପା ବେଦିସମ୍ମାର୍ଗଦକ୍ଷା ନିୟମବିଧିଜଳାନାଂ ବର୍ହିଷାଂ ଚ ଉପନେତ୍ରୀ ସତୀ ତଚ୍ଛିରଶ୍ଚନ୍ଦ୍ରପାଦୈଃ ନିୟମିତପରିଖେଦା ସତୀ ପ୍ରତ୍ୟହଂ ଗିରିଶମ୍ ଉପଚଚାର ।

ପଦ୍ୟାନୁବାଦ

ସୁକେଶୀ ପାର୍ବତୀ ପୂଜା ପାଇଁ ନିତି
ତୋଳୁଥିଲେ ପୂଜାଫୁଲ
ଯଜ୍ଞବେଦୀ ବାନ୍ଧି ଆଣୁଥିଲେ ଖୋଜି
ଶାସ୍ତ୍ର ମତେ କୁଶ ଜଳ ।
ଶିବ ଶିର ସ୍ଥିତ ଚନ୍ଦ୍ରରୁ ନିସୃତ
ଶୀତଳ କିରଣ ସ୍ପର୍ଶେ
ଶରୀରର କ୍ଳାନ୍ତି ଯାଉଥିଲା ହଟି
ରହୁଥିଲେ ସେ ହରଷେ ॥ ୬୦ ॥

***

**(ପ୍ରଥମ ସର୍ଗଃ ସମାପ୍ତ)**

# ଦ୍ୱିତୀୟ ସର୍ଗଃ

### ଶ୍ଳୋକ- ୧

ତସ୍ମିନ୍ନିପ୍ରକୃତାଃ କାଳେ
ତାରକେଣ ଦିବୌକସଃ ।
ତୁରାସାହଂ ପୁରୋଧାୟ
ଧାମ ସ୍ୱାୟମ୍ଭୁବଂ ଯଯୁଃ ॥ ୧ ॥

ଅନ୍ୱୟ- ତସ୍ମିନ୍ କାଳେ ତାରକେଣ ବିପ୍ରକୃତାଃ ଦିବୌକସଃ ତୁରାସାହଂ ପୁରୋଧାୟ ସ୍ୱାୟମ୍ଭୁବଂ ଧାମ ଯଯୁଃ ।

ପଦ୍ୟାନୁବାଦ -

ଯେ କାଳେ ପାର୍ବତୀ ଶିବ-ସେବାବ୍ରତୀ
ହୋଇଥିଲେ କୈଳାସରେ
ଦେବତା ସମସ୍ତ ହୋଇ ଭୟଭୀତ
ଆସିଲେ ବ୍ରହ୍ମଲୋକରେ ।
ତାରକାସୁରର ଘୋର ଅତ୍ୟାଚାରେ
ଭୟଭୀତ ଦେବଗଣ
ଇନ୍ଦ୍ରଙ୍କୁ ଅଗ୍ରତେ ଧରି ସର୍ବ ଦେବ
ଗଲେ ବ୍ରହ୍ମାଙ୍କ ଶରଣ ॥ ୧ ॥

## ଶ୍ଲୋକ-୨

ତେଷାମାବିରଭୂଦ୍ ବ୍ରହ୍ମା
ପରିମ୍ଳାନମୁଖଶ୍ରିୟାମ୍ ।
ସରସାଂ ସୁପ୍ତପଦ୍ମାନାଂ
ପ୍ରାତର୍ଦୀଧିତିମାନିବ ॥ ୨ ॥

ଅନ୍ୱୟ- ପରିମ୍ଳାନମୁଖଶ୍ରିୟାମ୍ ତେଷାଂ ବ୍ରହ୍ମା, ସୁପ୍ତପଦ୍ମାନାଂ ସରସାଂ ପ୍ରାତଃ ଦୀଧିତିମାନ୍ ଇବ ଆବିରଭୂତ୍ ।

ପଦ୍ୟାନୁବାଦ -

ଯେପରି ସକାଳେ ସରସୀର ଜଳେ
ସୁପ୍ତ କମଳକୁ ଦେଖି
ଉଦିତ ସୂର୍ଯ୍ୟଙ୍କ ମୁଖମଣ୍ଡଳର
ଶୋଭା ଯାଇଥାଏ ଶୁଖି ।
ସେପରି ଉଦାସ ଦେବ ଓ ଦେବେଶ
ସମ୍ମୁଖରେ ବ୍ରହ୍ମଦେବ
ଦୁଃଖର କାରଣ ଜାଣିବା ନିମିତ୍ତ
ହେଲେ ତହିଁ ଆବିର୍ଭାବ ॥ ୨ ॥

## ଶ୍ଲୋକ- ୩

ଅଥ ସର୍ବସ୍ୟ ଧାତାରଂ ତେ
ସର୍ବେ ସର୍ବତୋମୁଖମ୍ ।
ବାଗୀଶଂ ବାଗ୍ଭିରର୍ଥ୍ୟାଭିଃ
ପ୍ରଣିପତ୍ୟୋପତସ୍ଥିରେ ॥ ୩ ॥

ଅନ୍ୱୟ- ଅଥ ସର୍ବେ ତେ ସର୍ବତୋମୁଖମ୍ ବାଗୀଶଂ ସର୍ବସ୍ୟ ଧାତାରଂ ପ୍ରଣିପତ୍ୟ ଅର୍ଥ୍ୟାଭିଃ ବାଗ୍ଭିଃ ଉପତସ୍ଥିରେ ।

ପଦ୍ୟାନୁବାଦ -

ଏ ସାରା ସଂସାର ରଚନା ଯାହାର
ସର୍ବତଃ ଯେ ଦୃଷ୍ଟିପାତ
କରିଥାନ୍ତି ଯେଉଁ ବ୍ରହ୍ମଦେବ ତାଙ୍କୁ
ଦେବେ କଲେ ପ୍ରଣିପାତ ।
ପବିତ୍ର ବଚନ ବାଣୀ ଅର୍ଥପୂର୍ଣ୍ଣ
ସ୍ତୁତି ଗାଇ ଦେବଗଣ
ବ୍ରହ୍ମଦେବଙ୍କର ବନ୍ଦନା କରିଲେ
ତୋଷିବାକୁ ତାଙ୍କ ମନ ॥ ୩ ॥

**ଶ୍ଲୋକ- ୪**

ନମସ୍ତ୍ରିମୂର୍ତ୍ତୟେ ତୁଭ୍ୟଂ
ପ୍ରାକ୍ସୃଷ୍ଟେଃ କେବଳାତ୍ମନେ ।
ଗୁଣତ୍ରୟବିଭାଗାୟ
ପଶ୍ଚାଦ୍ ଭେଦମୁପେୟୁଷେ ॥ ୪ ॥

ଅନ୍ୱୟ- ହ ଭଗବନ୍ ! ସୃଷ୍ଟେଃ ପ୍ରାକ୍ କେବଳାତ୍ମନେ, ପଶ୍ଚାତ୍ ଗୁଣତ୍ରୟବିଭାଗାୟ ଭେଦମ୍ ଉପୟୁଷେ, ଅତଏବ ତ୍ରିମୂର୍ତ୍ତୟେ, ତୁଭ୍ୟମ୍ ନମଃ ।

ପଦ୍ୟାନୁବାଦ -

ଆହେ ବ୍ରହ୍ମଦେବ ସୃଷ୍ଟିର ପ୍ରାରମ୍ଭେ
ଥିଲ ଏକ ରୂପ ମାତ୍ର
ସୃଷ୍ଟିକାଳ କ୍ରମେ ସତ୍ୱ ରଜ ତମ
ତ୍ରିଗୁଣେ ହେଲ ଭୂଷିତ ।
ସତ୍ୱ ରଜ ତମ ପ୍ରତୀକ ସ୍ୱରୂପ
ବ୍ରହ୍ମା ବିଷ୍ଣୁ ମହେଶ୍ୱର
ତ୍ରିମୂର୍ତ୍ତି ଉପାଧି ଧାରଣ କରିଛ
ଘେନ ପ୍ରଣତି ଆମ୍ଭର ॥ ୪ ॥

## ଶ୍ଲୋକ-୫

ଯଦମୋଘମପାମନ୍ତରୁପ୍ତଂ
ବୀଜମଜ ! ତ୍ୱୟା ।
ଅତଶ୍ଚରାଚରମ୍ ବିଶ୍ୱଂ
ପ୍ରଭବସ୍ତସ୍ୟ ଗୀୟସେ ॥ ୫ ॥

ଅନ୍ୱୟ - ହେ ଅଜ ! ଅପାମ୍ ଅନ୍ତଃ ଯତ୍ ତ୍ୱୟା ଅମୋଘମ୍ ବୀଜମ୍ ଉପ୍ତମ୍ ଅତଃ
ଚରାଚରଂ (ଉତ୍ପନ୍ନ;) ବିଶ୍ୱଂ ତସ୍ୟ ପ୍ରଭବଃ ଗୀୟସେ ।

ପଦ୍ୟାନୁବାଦ -

ଆହେ ବ୍ରହ୍ମଦେବ ସୃଷ୍ଟିର ପ୍ରାରମ୍ଭ
କଲ ସୃଷ୍ଟିକରି ଜଳ
ସେ ଜଳେ ଅବ୍ୟର୍ଥ ବୀଜ ବପନରୁ
ସୃଷ୍ଟି ହେଲା ବିଶ୍ୱସ୍ଥଳ ।
ସୃଷ୍ଟିର ପ୍ରାରମ୍ଭ ସୃଷ୍ଟିର ସର୍ଜନା
କରିଥିବାରୁ ଆପଣ
ବିଶ୍ୱ ଆଦ୍ୟ ବିଶ୍ୱ ସୃଷ୍ଟିର କାରଣ
ହେ ବ୍ରହ୍ମଦେବ ଆପଣ ॥ ୫ ॥

## ଶ୍ଲୋକ- ୬

ତିସୃଭିସ୍ତ୍ୱମବସ୍ଥାଭିଃ
ମହିମାନମୁଦୀରୟନ୍ ।
ପ୍ରଳୟସ୍ଥିତିସର୍ଗାଣାମ୍
ଏକଃ କାରଣତାଂ ଗତଃ ॥ ୬ ॥

ଅନ୍ୱୟ- ଏକଃ ତ୍ୱଂ ତିସୃଭିଃ ଅବସ୍ଥାଭିଃ ମହିମାନମ୍ ଉଦୀରୟନ୍
ପ୍ରଳୟସ୍ଥିତିସର୍ଗାଣାଂ କାରଣତାଂ ଗତଃ ।

ପଦ୍ୟାନୁବାଦ -

ପ୍ରଳୟ, ପାଳନ, ସୃଷ୍ଟିର କାରଣ
ଆପଣ ହେ ବ୍ରହ୍ମଦେବ
ଏକ ରୂପ ଧରି ତ୍ରିଗୁଣାଧିକାରୀ
ତ୍ରିଗୁଣେ ହୁଅ ଉଭବ।
ତିନି ଅବସ୍ଥାରେ ତ୍ରିଗୁଣ ଶକ୍ତିକୁ
ପ୍ରୟୋଗ କରି ଆପଣ
ପ୍ରଳୟ, ପାଳନ, କରନ୍ତି ସୃଜନ
ତବ ବିନା ନାହିଁ ଆନ ॥ ୬ ॥

## ଶ୍ଳୋକ- ୭

ସ୍ତ୍ରୀପୁଂସାବାତ୍ମଭାଗୌ ତେ
ଭିନ୍ନମୂର୍ତ୍ତେଃ ସିସୃକ୍ଷୟା।
ପ୍ରସୂତିଭାଜଃ ସର୍ଗସ୍ୟ
ତାବେବ ପିତରୌ ସ୍ମୃତୌ ॥ ୭ ॥

ଅନ୍ୱୟ- ସ୍ତ୍ରୀପୁଂସୌ ସିସୃକ୍ଷୟା ଭିନ୍ନମୂର୍ତ୍ତେଃ ତେ ଆତ୍ମଭାଗୌ ସ୍ତଃ। ତୌ ଏବ ପ୍ରସୂତିଭାଜଃ ସର୍ଗସ୍ୟ ପିତରୌ ସ୍ମୃତୌ।

ପଦ୍ୟାନୁବାଦ -

ଯେବେ ନିଜ ଅଙ୍ଗ କଲ ଦୁଇଭାଗ
ଆହେ ପ୍ରଭୁ ବ୍ରହ୍ମଦେବ
ଏକରୁ ପୁରୁଷ ଆରେକରୁ ନାରୀ
ହୋଇଥିଲେ ଆବିର୍ଭାବ।
ସୃଷ୍ଟିର ସୃଜନ କରି ଦୁଇଜଣ
ବୋଲାଇଲ ପିତାମାତା
ସେ ପାଇଁ ଆପଣ ସଂସାର କାରଣ
କୁହାଯାଏ ହେ ବିଧାତା ॥ ୭ ॥

### ଶ୍ଳୋକ- ୮

ସ୍ୱକାଳପରିମାଣେନ
ବ୍ୟସ୍ତରାତ୍ରିନ୍ଦିବସ୍ୟ ତେ ।
ଯୌ ତୁ ସ୍ୱପ୍ନାଽବବୋଧୌ
ତୌ ଭୂତାନାଂ ପ୍ରଳୟୋଦୟୌ ॥ ୮ ॥

ଅନ୍ୱୟ- ସ୍ୱକାଳପରିମାଣେନ ବ୍ୟସ୍ତରାତ୍ରିନ୍ଦିବସ୍ୟ ତେ, ଯୌ ତୁ ସ୍ୱପ୍ନାଽବବୋଧୌ ତୌ (ଏବ) ଭୂତାନାଂ ପ୍ରଳୟୋଦୟୌ (ଭବତଃ) ।

ପଦ୍ୟାନୁବାଦ -

ନିଜର ଅବଧି କରିଛ ହେ ବିଧି
ନିର୍ଦ୍ଧାରଣ ହିଁ ଆପଣ
ଶୟନେ ଯାମିନୀ ଜାଗରଣେ ଦିନ
ହୋଇଥାଏ ତବ ଜାଣ ।
ତବ ରାତ୍ରିକାଳ ପ୍ରଳୟର ବେଳ
ଦିବସକାଳ ସୃଜନ
ହୋଇଥାଏ ଏହି ଯଗତେ ହେ ବିଧି !
ଜାଣିଛନ୍ତି ତା ଆପଣ ॥ ୮ ॥

### ଶ୍ଳୋକ- ୯

ଯଗଦ୍ୟୋନିରଯୋନିସ୍ତ୍ୱମ୍
ଯଗଦନ୍ତୋ ନିରନ୍ତକଃ ।
ଯଗଦାଦିରନାଦିସ୍ତ୍ୱମ୍
ଯଗଦୀଶୋ ନିରୀଶ୍ୱର ॥ ୯ ॥

ଅନ୍ୱୟ - ହେ ଭଗବନ୍ ! ତ୍ୱଂ ଯଗଦ୍ୟୋନିଃ, ସ୍ୱୟଂ ଅଯୋନିଃ, ଯଗଦନ୍ତଃ, ସ୍ୱୟଂ ନିରନ୍ତକଃ, ତ୍ୱଂ ଯଗଦାଦିଃ, ଅତଏବ ଅନାଦିଃ, ତ୍ୱଂ ଯଗଦୀଶଃ ଅତଏବ, ସ୍ୱୟଂ ନିରୀଶ୍ୱରଃ (ଅସି) ।

ପଦ୍ୟାନୁବାଦ -

ସମଗ୍ର ସୃଷ୍ଟିର କାରଣ ଆପଣ
ସ୍ୱୟଂ ଅଯୋନି ସମ୍ଭୁତ
ସମସ୍ତ ଅନ୍ତର କାରଣ ଆପଣ
ସ୍ୱୟଂ ଅଟ ଯେ ଅନନ୍ତ।
ସାରା ଜଗତର ଆଦ୍ୟରେ ଆପଣ
ସ୍ୱୟଂ ଅଟ ଆଦ୍ୟହୀନ
ସାରା ଜଗତର ଈଶ୍ୱର ଆପଣ
ସ୍ୱୟଂ ଈଶ୍ୱରବିହୀନ ॥ ୯ ॥

## ଶ୍ଳୋକ- ୧୦

ଆତ୍ମାନମାତ୍ମନା ବେତ୍ସି
ସୃଜସ୍ୟାତ୍ମାନମାତ୍ମନା।
ଆତ୍ମନା କୃତିନା ଚ ତ୍ୱମ୍
ଆତ୍ମନ୍ୟେବ ପ୍ରଲିୟସେ ॥ ୧୦ ॥

ଅନ୍ୱୟ- ହେ ଭଗବନ୍ ! ତ୍ୱମ୍ ଆତ୍ମାନମ୍ ଆତ୍ମନା ଏବ ବେତ୍ସି, ଆତ୍ମାନମ୍ ଆତ୍ମନା ଏବ ସୃଜସି। କୃତିନା ଆତ୍ମନା ଚ ଆତ୍ମନି ଏବ ପ୍ରଲିୟସେ।

ପଦ୍ୟାନୁବାଦ -

ଆପଣଙ୍କ ଜ୍ଞାନ ଜାଣନ୍ତି ଆପଣ
ପ୍ରୟୋଗ କରି ସେ ଜ୍ଞାନ
ନିଜର ସୃଜନ ନିଜେ ବ୍ରହ୍ମଦେବ
କରିଅଛନ୍ତି ଆପଣ।
ସୃଷ୍ଟି କାର୍ଯ୍ୟ ସର୍ବ ହୋଇଲେ ସମ୍ପୂର୍ଣ୍ଣ
ଆହେ ସୃଷ୍ଟିର କାରଣ
ନିଜ ମଧ୍ୟେ ନିଜ ସତ୍ତାକୁ ଆପଣ
କରି ଥାଆନ୍ତି ବିଲୀନ॥ ୧୦ ॥

## ଶ୍ଳୋକ-୧୧

ଦ୍ରବଃ ସଙ୍ଘାତକଠିନଃ
ସ୍ଥୂଳଃ ସୁକ୍ଷ୍ମୌ ଲଘୁର୍ଗୁରୁଃ ।
ବ୍ୟକ୍ତୋ ବ୍ୟକ୍ତେତରଶ୍ଚାଽସି
ପ୍ରାକାମ୍ୟଂ ତେ ବିଭୂତିଷୁ ॥ ୧୧ ॥

ଅନ୍ୱୟ- ହେ ଭଗବନ୍ ! ତ୍ୱମ୍ ଦ୍ରବଃ, ସଙ୍ଘାତକଠିନଃ, ସ୍ଥୂଳ, ସୁକ୍ଷ୍ମଃ ଲଘୁଃ, ଗୁରୁଃ, ବ୍ୟକ୍ତଃ ବ୍ୟକ୍ତତରେଶ୍ଚ ଅସି । ବିଭୂତିଷୁ ତେ ପ୍ରାକାମ୍ୟମ୍ (ଅସ୍ତୀତି ଶେଷଃ) ।

ପଦ୍ୟାନୁବାଦ -

ଆହେ ବ୍ରହ୍ମଦେବ ନଦୀ ସମ ଦ୍ରବ
ପର୍ବତ ପରି କଠିନ
ଘଟ ସମ ସ୍ଥୂଳ ଅଣୁ ସମ ସୁକ୍ଷ୍ମ
ଏହି ସୃଷ୍ଟିରେ ଆପଣ ।
ଆପଣ ହିଁ ଲଘୁ ଆପଣ ହିଁ ଗୁରୁ
ଆପଣ ବ୍ୟକ୍ତ ଅବ୍ୟକ୍ତ
ଅଣିମାଦି ସର୍ବ ସିଦ୍ଧି ହିଁ ଆପଣ
ସବୁରି ମଧ୍ୟରେ ସ୍ଥିତ ॥ ୧୧ ॥

## ଶ୍ଳୋକ-୧୨

ଉଦ୍ଘାତଃ ପ୍ରଣବୋ ଯାସାଂ
ନ୍ୟାୟୈସ୍ତ୍ରିଭିରୁଦୀରଣମ୍ ।
କର୍ମ ଯଜ୍ଞଃ ଫଳଂ ସ୍ୱର୍ଗଃ
ତାସାଂ ତ୍ୱମ୍ ପ୍ରଭବୋ ଗିରାମ୍ ॥ ୧୨ ॥

ଅନ୍ୱୟ - ହେ ଭଗବନ୍ ! ଯାସାଂ ଗିରାମୁଦ୍ଘାତଃ ପ୍ରଣବଃ, ଯାସାଂ ତ୍ରିଭିଃ ନ୍ୟାୟୈଃ ଉଦୀରଣଂ, ଯାସାଂ କର୍ମ ଯଜ୍ଞଃ ଫଳଂ ସ୍ୱର୍ଗଃ, ତ୍ୱଂ ତାସାଂ ଗିରାଂ ପ୍ରଭବଃ ଅସି ।

ପଦ୍ୟାନୁବାଦ -

ଆହେ ବ୍ରହ୍ମଦେବ ବେଦବାଣୀ ସର୍ବ
କାରଣ ଅଟ ଆପଣ
ପ୍ରାରମ୍ଭେ ଓଁକାର ରହିଛି ଯାହାର
ତ୍ରି ସ୍ୱରରେ ଉଚ୍ଚାରଣ ।
ସେ ବାଣୀ ସହିତ ରହିଛି ନିହିତ
ଯଜ୍ଞ ଆଦି କାର୍ଯ୍ୟମାନ
ଯଜ୍ଞ ସଂପାଦନ କଲେ ଫଳ ରୂପେ
ମିଳିଥାଏ ସ୍ୱର୍ଗସ୍ଥାନ ॥ ୧୨ ॥

**ଶ୍ଲୋକ-୧୩**

ତ୍ୱାମାମନନ୍ତି ପ୍ରକୃତିଂ
ପୁରୁଷାର୍ଥପ୍ରବର୍ତିନୀମ୍ ।
ତଦ୍ଦର୍ଶିନମୁଦାସୀନଂ
ତ୍ୱାମେବ ପୁରୁଷଂ ବିଦୁଃ ॥ ୧୩ ॥

ଅନ୍ୱୟ - ହେ ଭଗବନ୍ ! ତ୍ୱାମ୍ ପୁରୁଷାର୍ଥପ୍ରବର୍ତୀନୀଂ ପ୍ରକୃତିଂ ଆମନନ୍ତି । ତ୍ୱାମ୍ ଏବ ତଦ୍ଦର୍ଶୀନମ୍ ଉଦାସୀନଂ ପୁରୁଷଂ ବିଦୁଃ ।

ପଦ୍ୟାନୁବାଦ -

ରହିଛି କଥିତ ପ୍ରକୃତ ମୌଳିକ
ପ୍ରକୃତି ଅଟ ଆପଣ
ପୁରୁଷାର୍ଥ ପାଇଁ ସଦା ରତ ରହି
କରୁଥାଅ କାର୍ଯ୍ୟମାନ ।
ଆପଣ ହିଁ ଏକ ପୁରୁଷ ସୃଷ୍ଟିରେ
ନାହିଁ କେ ପୁରୁଷ ଆନ
ପ୍ରକୃତି ସହିତ ହୋଇଛି ସାକ୍ଷାତ
ରହିଅଛ ଉଦାସୀନ ॥ ୧୩ ॥

## ଶ୍ଲୋକ- ୧୪

ତ୍ୱଂ ପିତୃଣାମପି ପିତା
ଦେବାନାମପି ଦେବତା ।
ପରତୋଽପି ପରଶ୍ଚାଽସି
ବିଧାତା ବେଧସାମପି ॥ ୧୪ ॥

ଅନ୍ୱୟ - ହେ ଭଗବନ୍ ! ତ୍ୱଂ ପିତୃଣାମ୍ ଅପି ପିତା, ଦେବାନାମ୍ ଅପି ଦେବତା, ପରତଃ ଅପି ପରଶ୍ଚ ଅସି, ବେଧସାମ୍ ଅପି ବିଧାତା ଅସି ।

ପଦ୍ୟାନୁବାଦ -

ପିତାମାନଙ୍କର ପିତା ହିଁ ଆପଣ
ଦେବମାନଙ୍କ ଦେବତା
ପରମ ପୁରୁଷ ଠାରୁ ଉଚ୍ଚତର
ବିଧାତାଙ୍କର ବିଧାତା ॥ ୧୪ ॥

## ଶ୍ଲୋକ-୧୫

ତ୍ୱମେବ ହବ୍ୟଂ ହୋତା ଚ
ଭୋଜ୍ୟଂ ଭୋକ୍ତା ଚ ଶାଶ୍ୱତଃ ।
ବେଦ୍ୟଂ ଚ ବେଦିତା ଚାଽସି
ଧ୍ୟାତା ଧ୍ୟେୟଂ ଚ ଯତ୍ପରମ୍ ॥ ୧୫ ॥

ଅନ୍ୱୟ- ଶାଶ୍ୱତଃ ତ୍ୱମ୍ ଏବ ହବ୍ୟଂ ହୋତା ଚ ଅସି, ଭୋଜ୍ୟଂ ଭୋକ୍ତା ଚ ଅସି, ବେଦଂ ବେଦିତା ଚ ଅସି, ଧ୍ୟାତା ଯଚ୍ଚ ପରଂ ଧ୍ୟେୟଂ (ଯଚ୍ଚ ଅସି) ।

ପଦ୍ୟାନୁବାଦ -

ଆପଣ ହିଁ ହୋମ ସାମଗ୍ରୀ ହେ ପ୍ରଭୁ
ଆପଣ ହିଁ ହୋମ କର୍ତ୍ତା
ଆପଣ ସମସ୍ତ ଭୋଜନ ସାମଗ୍ରୀ
ଆପଣ ଅଟନ୍ତି ଭୋକ୍ତା ।

আপণঙ্କু ସର୍ବେ ଜାଣିବା ଉଚିତ
ଆପଣ ହିଁ ସର୍ବ ଜ୍ଞାତା
ଆପଣ ହିଁ ସର୍ବ- ଜନ ଧ୍ୟେୟ ପ୍ରଭୁ
ସ୍ୱୟଂ ଆପଣ ହିଁ ଧାତା ॥ ୧୫ ॥

### ଶ୍ଳୋକ-୧୬

ଇତି ତେଭ୍ୟଃ ସ୍ତୁତୀଃ ଶ୍ରୁତ୍ୱା
ଯଥାର୍ଥା ହୃଦୟଙ୍ଗମାଃ ।
ପ୍ରସାଦାଭିମୁଖୋ ବେଧାଃ
ପ୍ରତ୍ୟୁବାଚ ଦିବୌକସଃ ॥ ୧୬ ॥

ଅନ୍ୱୟ- ବେଧା ଇତି ତେଭ୍ୟଃ ଯଥାର୍ଥାଃ ହୃଦୟଙ୍ଗମାଃ ସ୍ତୁତୀଃ ଶ୍ରୁତ୍ୱା ପ୍ରସାଦାଭିମୁଖଃ ସନ୍ ଦିବୌକସଃ ପ୍ରତ୍ୟୁବାଚ ।

### ଶ୍ଳୋକ- ୧୭

ପୁରାଣସ୍ୟ କବେସ୍ତସ୍ୟ
ଚତୁର୍ମୁଖସମୀରିତା ।
ପ୍ରବୃତ୍ତିରାସୀଚ୍ଛବ୍ଦାନାଂ
ଚରିତାର୍ଥା ଚତୁଷ୍ଟୟୀ ॥ ୧୭ ॥

ଅନ୍ୱୟ - ଚତୁଷ୍ଟୟୀ ଶବ୍ଦାନାଂ ପ୍ରବୃତ୍ତିଃ ପୁରାଣସ୍ୟ କବେଃ ତସ୍ୟ ଚତୁର୍ମୁଖସମୀରିତା ସତୀ ଚରିତାର୍ଥା ଆସୀତ୍ ।

ପଦ୍ୟାନୁବାଦ -

ମର୍ମସ୍ପର୍ଶୀ ସ୍ତୁତି ଶୁଣି ବେଦପତି
ହୋଇଣ ପ୍ରସନ୍ନ ମନ
ତହିଁ ଉପସ୍ଥିତ ଦେବତାମାନଙ୍କୁ
ବୋଇଲେ ନିଜ ବଚନ ॥ ୧୬ ॥

ସର୍ବ ପୁରାତନ ଋଷି ସେ ମହାନ
ଚତୁର୍ମୁଖରୁ ନିର୍ଗତ
ହୋଇଲା ବଚନ ପ୍ରବୃତ୍ତି* ସମ୍ପନ୍ନ
ଶୁଣିଲେ ଦେବ ସମସ୍ତ ॥ ୧୭ ॥

* (ପରା, ପଶ୍ୟନ୍ତି, ମଧ୍ୟମା ଓ ବୈଖରୀ ଚାରି ପ୍ରବୃତ୍ତି ସମ୍ପନ୍ନ)

## ଶ୍ଳୋକ -୧୮

ସ୍ୱାଗତଂ ସ୍ୱାନଧୀକାରାନ୍
ପ୍ରଭାବୈରବଲମ୍ବ୍ୟ ବଃ ।
ଯୁଗପଦ୍ୟୁଗବାହୁଭ୍ୟଃ
ପ୍ରାପ୍ତେଭ୍ୟଃ ପ୍ରାଜ୍ୟବିକ୍ରମାଃ ॥ ୧୮ ॥

ଅନ୍ୱୟ - ପ୍ରାଜ୍ୟବିକ୍ରମାଃ ! ସ୍ୱାନ୍ ଅଧୀକାରାନ୍ ପ୍ରଭାବୈଃ ଅବଲମ୍ବ୍ୟ ଯୁଗପତ୍ ପ୍ରାପ୍ତେଭ୍ୟଃ ଯୁଗବାହୁଭ୍ୟଃ ବଃ ସ୍ୱାଗତମ୍ ।

ପଦ୍ୟାନୁବାଦ -

ଦୀର୍ଘବାହୁଯୁକ୍ତ ମହା ପରାକ୍ରମୀ
ଇନ୍ଦ୍ରାଦି ଦେବ ସମସ୍ତ
ସର୍ବେ ଏକତ୍ରିତ ହୋଇ ଆସିଅଛ
ତୁମ୍ଭମାନଙ୍କୁ ସ୍ୱାଗତ ॥୧୮ ॥

## ଶ୍ଳୋକ-୧୯

କିମିଦଂ ଦ୍ୟୁତିମାତ୍ମୀୟାଂ
ନ ବିଭ୍ରତି ଯଥା ପୁରା ।
ହିମକ୍ଲିଷ୍ଟପ୍ରକାଶାନି
ଜ୍ୟୋତୀଂଷୀବ ମୁଖାନି ବଃ ॥ ୧୯ ॥

ଅନ୍ୱୟ- ହେ ବତ୍ସାଃ ! ହିମକ୍ଲିଷ୍ଟପ୍ରକାଶାନି ଜ୍ୟୋତୀଂଷି ଇବ ବଃ ମୁଖାନି ପୁରା ଯଥା ଆତ୍ମୀୟାଂ ଦ୍ୟୁତିଂ ନ ବିଭ୍ରତି, ଇଦଂ କିମ୍ ?

ପଦ୍ୟାନୁବାଦ -

କୁହ ସର୍ବ ଦେବ ପୂର୍ବ ପରି ତୁମ୍ଭ
ମୁଖ ନୁହେଁ ତେଜୀୟାନ
ସତେକି ତୁଷାର- କ୍ଲିଷ୍ଟ ଜ୍ୟୋତି ସମ
ଦେଖା ଯାଉଛି ମଳିନ ॥ ୧୯ ॥

### ଶ୍ଳୋକ- ୨୦

ପ୍ରଶମାଦର୍ଚିଷାମେତତ୍
ଅନୁଦ୍ଗୀର୍ଣ୍ଣସୁରାୟୁଧମ୍ ।
ବୃତ୍ରସ୍ୟ ହନ୍ତୁଃ କୁଳିଶଂ
କୁଣ୍ଠିତାଶ୍ରୀବ ଲକ୍ଷ୍ୟତେ ॥ ୨୦ ॥

ଅନ୍ୱୟ - ଅର୍ଚିଷାଂ ପ୍ରଶମାତ୍ ଅନୁଦ୍ଗୀର୍ଣ୍ଣସୁରାୟୁଧମ୍ ଏତତ୍ ବୃତ୍ରସ୍ୟ ହନ୍ତୁଃ
କୁଳିଶଂ କୁଣ୍ଠିତାଶ୍ରି ଇବ ଲକ୍ଷ୍ୟତେ ।

### ଶ୍ଳୋକ-୨୧

କିଞ୍ଚାଽୟମରିଦୁର୍ବାର
ପାଣୌ ପାଶଃ ପ୍ରଚେତସଃ ।
ମନ୍ତ୍ରେଣ ହତବୀର୍ଯସ୍ୟ
ଫଣିନୋ ଦୈନ୍ୟମାଶ୍ରିତଃ ॥ ୨୧ ॥

ଅନ୍ୱୟ - କିଞ୍ଚ ଅୟମ୍ ଅରିଦୁର୍ବାର ପ୍ରଚେତସଃ ପାଣୌ ପାଶଃ ମନ୍ତ୍ରେଣ
ହତବୀର୍ଯସ୍ୟ ଫଣୀନଃ ଦୈନ୍ୟଂ ଆଶ୍ରିତଃ ।

ପଦ୍ୟାନୁବାଦ -

ବୃତ୍ରାସୁର ବଧ କରିଥିବା ଇନ୍ଦ୍ର-
ଦେବଙ୍କର ବଜ୍ରାୟୁଧ
ସପ୍ତରଙ୍ଗୀ ଇନ୍ଦ୍ର ଧନୁର ଚମକ
ନଥିବାରୁ ଦିଶେ ସ୍ତବ୍ଧ ॥ ୨୦ ॥

ଶତ୍ରୁଙ୍କ ନିମନ୍ତେ    ବରୁଣଙ୍କ ହସ୍ତେ
ଅଛି ଯେ ଦୁର୍ବାର ପାଶ
ମନ୍ତ୍ରବଳେ ହତ-    ବୀର୍ଯ୍ୟ ସର୍ପ ପ୍ରାୟ
କିମ୍ବା ଦିଶେ ଦୈନ୍ୟବଶ ॥ ୨୧ ॥

### ଶ୍ଲୋକ-୨୨

କୁବେରସ୍ୟ ମନଃ ଶଲ୍ୟଂ
ଶଂସତୀବ ପରାଭବମ୍ ।
ଅପବିଦ୍ଧଗଦୋ ବାହୁଃ
ଭଗ୍ନଶାଖ ଇବ ଦ୍ରୁମଃ ॥ ୨୨ ॥

ଅନ୍ୱୟ - ଅପବିଦ୍ଧଗଦଃ ଭଗ୍ନଶାଖଃ ଦ୍ରୁମଃ ଇବ ସ୍ଥିତଃ କୁବେରସ୍ୟ ବାହୁଃ ମନଃ ଶଲ୍ୟଂ ପରାଭବଂ ଶଂସତି ଇବ ।

ପଦ୍ୟାନୁବାଦ -

ଶାଖାହୀନ ହୋଇ    ଥୁଣ୍ଟା ବୃକ୍ଷଟିଏ
ଦିଶେ ଯେପରି ଶ୍ରୀହୀନ
ଗଦାଶୂନ୍ୟ ହସ୍ତେ    କୁବେର ସେପରି
ହୁଅନ୍ତି ପ୍ରତୀୟମାନ ।
ସତେ ଅବା ମନେ    କଣ୍ଟା ପରି କେଉଁ
ଗୁରୁ ପରାଜୟ କଥା
କରଇ ଆଘାତ    ହୁଅଇ ସୂଚିତ
ମୁଖମଣ୍ଡଳରେ ବ୍ୟଥା ॥ ୨୨ ॥

### ଶ୍ଲୋକ- ୨୩

ଯମୋଽପି ବିଲିଖନ୍‌ଭୂମିଂ
ଦଣ୍ଡେନାସ୍ତମିତତ୍ୱିଷା ।
କୁରୁତେଽସ୍ମିନ୍ନମୋଘେଽପି
ନିର୍ବାଣାଲାତଲାଘବମ୍ ॥ ୨୩ ॥

ଅନ୍ୱୟ- ଅସ୍ତମିତତ୍ୱିଷା ଦଣ୍ଡେନ ଯମଃ ଅପି ଭୂମିଂ ବିଲିଖନ୍, ଅମୋଘେ
ଅପି ଅସ୍ମିନ୍ ନିର୍ବାଣାଲାତଲାଘବମ୍ କୁରୁତେ ।

### ଶ୍ଳୋକ-୨୪

ଅମୀ ଚ କଥମାଦିତ୍ୟାଃ
ପ୍ରତାପକ୍ଷତିଶୀତଳାଃ ।
ଚିତ୍ରନ୍ୟସ୍ତା ଇବ ଗତାଃ
ପ୍ରକାମାଲୋକନୀୟତାମ୍ ॥ ୨୪ ॥

ଅନ୍ୱୟ- ପ୍ରତାପକ୍ଷତିଶୀତଳାଃ ଅମୀ ଆଦିତ୍ୟାଶ୍ଚ କଥଂ ଚିତ୍ରନ୍ୟସ୍ତାଃ ଇବ
ପ୍ରକାମାଲୋକନୀୟତାମ୍ ଗତାଃ ।

ପଦ୍ୟାନୁବାଦ -

ନିର୍ବାପିତ ଉଲ୍କା- ପିଣ୍ଡ ସମ ଅଗ୍ନି-
ଦଣ୍ଡ ଧରି ଯମରାଜ
ଦଣ୍ଡମୁନେ ଭୂମି ଉଖାରୁ ଅଛନ୍ତି
ନୁହେଁ ସେ ଅମୋଘ ଆଜ ॥ ୨୩ ॥
କାହିଁକି ଦ୍ୱାଦଶ ସୂର୍ଯ୍ୟଙ୍କ ମୟୂଖ
ହୋଇଛନ୍ତି ତେଜହୀନ
ହସ୍ତାଙ୍କିତ ଛବି ପ୍ରାୟ କିବା ସତେ
ହୁଅନ୍ତି ପ୍ରତୀୟମାନ ।
ଶୀତଳତା ହେତୁ ଯଦି କେହି ଜନ
ଚାହିଁବାକୁ କରେ ମନ
ନିଜ ଇଚ୍ଛା ମତେ ଚାହିଁ ପାରେ ଯେତେ
ନାହିଁ କିଛି ବାଧା ବିଘ୍ନ ॥ ୨୪ ॥

## ଶ୍ଲୋକ-୨୫

ପର୍ଯ୍ୟାକୁଳତ୍ୱାନ୍ମରୁତାଂ
ବେଗଭଙ୍ଗୋଽନୁମୀୟତେ ।
ଅମ୍ଭସାମୋଘସଂରୋଧଃ
ପ୍ରତୀପଗମନାଦିବ ॥ ୨୫ ॥

ଅନ୍ୱୟ - ମରୁତାଂ ପର୍ଯ୍ୟାକୁଳତ୍ୱାତ୍ ବେଗଭଙ୍ଗଃ ଅମ୍ଭସାଂ ପ୍ରତିପଗମନାତ୍ ଓଘସଂ ରୋଧଃ ଇବ ଅନୁମୀୟତେ ।

ପଦ୍ୟାନୁବାଦ -

ଯଦି ଜଳସ୍ରୋତ ହୋଇ ବାଧା ପ୍ରାପ୍ତ
ବହେ ବୀପରିତ ଦିଗେ
ତହିଁରୁ ନିର୍ଣ୍ଣୟ କରିହୁଏ ତାର
କେତେ ବଡ ବାଧା ଆଗେ ।
ସେହିପରି ସର୍ବ ବାୟୁମାନଙ୍କର
ବେଗ ଲାଗେ ଅସମ୍ପୂର୍ଣ୍ଣ
ସତେକି ସେମାନେ ବଡ ବିପତ୍ତିର
ହୋଇଛନ୍ତି ସମ୍ମୁଖୀନ ॥ ୨୫ ॥

## ଶ୍ଲୋକ-୨୬

ଆବର୍ଜିତଜଟାମୌଳି
ବିଲମ୍ବିଶଶିକୋଟୟଃ ।
ରୁଦ୍ରାଣାମପି ମୂର୍ଦ୍ଧାନଃ
କ୍ଷତହୁଙ୍କାରଶଂସିନଃ ॥ ୨୬ ॥

ଅନ୍ୱୟ - ଆବର୍ଜିତଜଟାମୌଳିବିଲମ୍ବିଶଶିକୋଟୟଃ ରୁଦ୍ରାଣାମ୍ ଅପି ମୂର୍ଦ୍ଧାନଃ କ୍ଷତହୁଙ୍କାରଶଂସିନଃ ।

ପଦ୍ୟାନୁବାଦ -

ଏକାଦଶ ରୁଦ୍ର ମାନଙ୍କର ଶିର
ଗ୍ଲାନିରେ ଯାଇଛି ଝୁଙ୍କି
ଜଟାରେ ସଂଯୁକ୍ତ ଶଶୀକଳା ମାନ
ରହି ଅଛନ୍ତି ଲଟକି ।
ପରାଜୟ ଖେଦ ଅପମାନେ କ୍ରୋଧ
କାରଣୁ ହୁଙ୍କାର ଶବ୍ଦ
ଶୁଭେନାହିଁ ସତେ କରିଛିକି କିଏ
ବଳପୂରୁବକ ବନ୍ଦ ॥ ୨୬ ॥

### ଶ୍ଳୋକ-୨୭

ଲବ୍ଧପ୍ରତିଷ୍ଠାଃ ପ୍ରଥମଂ
ଯୂୟଂ କୀଂ ବଳବତ୍ତରୈଃ ।
ଅପବାଦୈରିବୋତ୍ସର୍ଗାଃ
କୃତବ୍ୟାବୃତ୍ତୟଃ ପରୈଃ ॥ ୨୭ ॥

ଅନ୍ୱୟ - ପ୍ରଥମଂ ଲବ୍ଧପ୍ରତିଷ୍ଠାଃ ଯୂୟଂ ବଳବତ୍ତରୈଃ ପରୈଃ, ଉତ୍ସର୍ଗାଃ ଅପବାଦୈଃ ଇବ କିଂ କୃତବ୍ୟାବୃତ୍ତୟଃ (ଭବଥ) ?

ପଦ୍ୟାନୁବାଦ -

ବ୍ୟାକରଣ ଅବା ଶାସ୍ତ୍ରରେ ବର୍ଣ୍ଣିତ
ସାମାନ୍ୟ ନିୟମମାନ
ବିଶେଷ ସ୍ଥଳରେ ବ୍ୟତିକ୍ରମ ସୂତ୍ରେ
ହୋଇଥାନ୍ତି ପ୍ରତ୍ୟାଖ୍ୟାନ ।
ସେହିପରି ତୁମ୍ଭେ ଦେବତା ସକଳ
ପ୍ରାପ୍ତ ପ୍ରତିଷ୍ଠା ସମସ୍ତ
ହରାଇଛ କେଉଁ ବଳଶାଳୀ ଶତ୍ରୁ
ଦ୍ୱାରା ହୋଇ ପରାଜିତ ॥ ୨୭ ॥

## ଶ୍ଲୋକ-୨୮

ତଦ୍ ବ୍ରୂତ ବତ୍ସାଃ ! କିମିତଃ
ପ୍ରାର୍ଥୟଧ୍ୱଂ ସମାଗତାଃ ।
ମୟି ସୃଷ୍ଟିର୍ହି ଲୋକାନାଂ
ରକ୍ଷା ଯୁଷ୍ମାସ୍ୱବସ୍ଥିତା ॥ ୨୮ ॥

ଅନ୍ୱୟ - ତତ୍ ବତ୍ସାଃ ! ସମାଗତାଃ ଯୂୟଂ ଇତଃ କିଂ ପ୍ରାର୍ଥୟଧ୍ୱମ୍ ? ବ୍ରୂତ । ହି ମୟି ଲୋକାନାଂ ସୃଷ୍ଟିଃ, ରକ୍ଷା ଯୁଷ୍ମାସୁ ଅବସ୍ଥିତା ।

ପଦ୍ୟାନୁବାଦ

ଏଥିପାଇଁ ଶୁଣ ଆହେ ପୁତ୍ରଗଣ
ତୁମ୍ଭେମାନେ କି କାରଣ
ହୋଇ ଏକତ୍ରିତ ଏଠି ଉପସ୍ଥିତ
ପ୍ରାର୍ଥନା ତୁମ୍ଭର କଣ ।
ସୃଷ୍ଟିର ସୃଜନ କେବଳ ହିଁ ଜାଣ
ଅଟଇ ଯେ ମୋର କାର୍ଯ୍ୟ
ସୁରକ୍ଷାର ଭାର ତୁମ୍ଭମାନଙ୍କର
ଉପରେ ହୋଇଛି ଧାର୍ଯ୍ୟ ॥ ୨୮ ॥

## ଶ୍ଲୋକ-୨୯

ତତୋ ମନ୍ଦାଽନିଳୋଦ୍ଧୂତ
କମଳାକରଶୋଭିନା ।
ଗୁରୁଂ ନେତ୍ରସହସ୍ରେଣ
ନୋଦୟାମାସ ବାସବଃ ॥ ୨୯ ॥

ଅନ୍ୱୟ - ତତଃ ବାସବଃ ଗୁରୁଂ ମନ୍ଦାଽନିଳୋଦ୍ଧୂତକମଳାକରଶୋଭିନା ନେତ୍ରସହସ୍ରେଣ ନୋଦୟାମାସ ।

ପଦ୍ୟାନୁବାଦ -

ତପ୍ରେ ଦେବେଶ ନିଜର ସହସ୍ର
ନୟନେ ଦେଇ ସଂକେତ
ଜଣାଇଲେ ଦେବ- ଗୁରୁଙ୍କୁ କହିବା
ପାଇଁ ଦେବତାଙ୍କ କଷ୍ଟ ।
ମନ୍ଦବାତେ ପଦ୍ମ- ବନ ଆନ୍ଦୋଳିତ
ହେଲେ ଦିଶେ ଯେଉଁ ପରି
ଇନ୍ଦ୍ରଙ୍କ ସହସ୍ର ନୟନର ଦୃଶ୍ୟ
ଦିଶୁଥିଲା ସେହିପରି ॥ ୨୯ ॥

**ଶ୍ଳୋକ-୩୦**

ସ ଦ୍ୱିନେତ୍ରଂ ହରେଚକ୍ଷୁ୍ୟଃ
ସହସ୍ରନୟନାଽଧିକମ୍ ।
ବାଚସ୍ପତିରୁବାଚେଦଂ
ପ୍ରାଞ୍ଜଳିର୍ଜଳଜାସନମ୍ ॥ ୩୦ ॥

ଅନ୍ୱୟ - ହରେଃ ସହସ୍ରନୟନାଽଧିକମ୍ ଦ୍ୱିନେତ୍ରଂ ଚକ୍ଷୁ୍ୟଃ ସଃ ବାଚସ୍ପତିଃ ପ୍ରାଞ୍ଜଳିଃ ସନ୍ ଜଳଜାସନମ୍ ଇଦମ୍ ଉବାଚ ।

ପଦ୍ୟାନୁବାଦ -

ଇନ୍ଦ୍ରଙ୍କ ହଜାର ନେତ୍ରଠୁ ନିଜର
ନେତ୍ର ଦ୍ୱୟେ ଅତିରିକ୍ତ
ଦେଖିବା କ୍ଷମତା ରଖିଥିବା ଗୁରୁ
ବୃହସ୍ପତି ଯୋଡି ହସ୍ତ ।
କମଳ ଆସନ ବ୍ରହ୍ମାଙ୍କ ସମ୍ମୁଖେ
ହୋଇଲେ ଦଣ୍ଡାୟମାନ
ଦେବତାମାନଙ୍କ ଯାତନା ଓ ଦୁଃଖ
କରିବା ପାଇଁ ବୟାନ ॥ ୩୦ ॥

### ଶ୍ଲୋକ- ୩୧

ଏବଂ ଯଦାହ ଭଗବନ !
ଆମୃଷ୍ଟଂ ନଃ ପରୈଃ ପଦମ୍ ।
ପ୍ରତ୍ୟେକଂ ବିନିଯୁକ୍ତାତ୍ମା
କଥଂ ନ ଜ୍ଞାୟସି ପ୍ରଭୋ ॥ ୩୧ ॥

ଅନ୍ୱୟ- ଭଗବନ ! ଯତ୍ ଆହ ତତ୍ ଏବମ୍ । ନଃ ପଦଂ ପରୈଃ ଆମୃଷ୍ଟମ୍ ।
ପ୍ରଭୋ ! ପ୍ରତ୍ୟେକଂ ବିନିଯୁକ୍ତାତ୍ମା ତ୍ୱଂ କଥଂ ନ ଜ୍ଞାସ୍ୟସି ?

ପଦ୍ୟାନୁବାଦ -

ଆହେ ଭଗବାନ ! ଯେ କଥା ଆପଣ
କହିଲେ ସେ ସବୁ ସତ୍ୟ
ନିଜ ନିଜ ସ୍ଥାନ ହରାଇଛୁ ଜାଣ
ଯୁଦ୍ଧେ ହୋଇ ପରାଜିତ ।
ଘଟେ ଘଟେ ବ୍ୟାପ୍ତ ଆପଣ ହେ ନାଥ
ଆପଣ ହିଁ ସର୍ବଜ୍ଞାତା
ଆପଣଙ୍କଠାରୁ ଲୁଚଇ ପାରିବ
କିଏ ଅବା କେଉଁ କଥା ॥ ୩୧ ॥

### ଶ୍ଲୋକ-୩୨

ଭବଲବ୍ଧବରୋଦୀର୍ଣ୍ଣଃ
ତାରକାଖ୍ୟୋ ମହାସୁରଃ ।
ଉପପ୍ଲବାୟ ଲୋକାନାଂ
ଧୂମକେତୁରିବୋହିତଃ ॥ ୩୨ ॥

ଅନ୍ୱୟ- ହେ ଭଗବନ୍ ! ଭବଲବ୍ଧବରୋଦୀର୍ଣ୍ଣଃ ତାରକାଖ୍ୟୋ ମହାସୁରଃ ଧୂମକେତୁଃ
ଇବ ଲୋକାନାମ୍ ଉପପ୍ଲବାୟ ଉହିତଃ ।

## ଶ୍ଲୋକ-୩୩

ପୁରେ ତାବନ୍ତମେବାଽସ୍ୟ
ତନୋତି ରବିରାତପମ୍ ।
ଦୀର୍ଘିକାକମଳୋନ୍ମେଷୋ
ଯାବନ୍ମାତ୍ରେଣ ସାଧ୍ୟତେ ॥ ୩୩ ॥

ଅନ୍ୱୟ - ଅସ୍ୟ ପୁରେ ରବିଃ ତାବନ୍ତମ୍ ଏବ ଆତପଂ ତନୋତି, ଯାବନ୍ମାତ୍ରେଣ ଦୀର୍ଘିକାକମଳୋନ୍ମେଷଃ ସାଧ୍ୟତେ ।

ପଦ୍ୟାନୁବାଦ -

ଆପଣଙ୍କ ଦତ୍ତ ବରରେ ଉଦ୍ଧତ
ତାରକ ନାମେ ଅସୁର
ଧୂମକେତୁ ସମ ତ୍ରିଲୋକରେ ଉଭା
ହୋଇ କରେ ଅତ୍ୟାଚାର ॥ ୩୨ ॥
ପ୍ରଚଣ୍ଡ କିରଣ ସମ୍ପନ୍ନ ତପନ
ହୋଇ ଭୟଭୀତ ମନ
ତାରକ ନଗ୍ରକୁ ଦିଅନ୍ତି କିରଣ
ଯେତିକି ହିଁ ପ୍ରୟୋଜନ ।
ନଗର ମଧ୍ୟରେ କ୍ରୀଡା ସରୋବରେ
ରହିଥିବା ପଦ୍ମବନ
ସେ କିରଣ ପାଇ ପଦ୍ମବନେ ପଦ୍ମ
ଫୁଟିଥାନ୍ତି ପ୍ରତିଦିନ ॥ ୩୩ ॥

## ଶ୍ଲୋକ-୩୪

ସର୍ବାଭିଃ ସର୍ବଦା ଚନ୍ଦ୍ରସ୍ତଂ
କଳାଭିର୍ନିଷେବତେ ।
ନାଦତ୍ତେ କେବଳାଂ ଲେଖାଂ
ହରଚୂଡାମଣୀକୃତାମ୍ ॥ ୩୪ ॥

ଅନ୍ୱୟ- ଚନ୍ଦ୍ରଃ ତଂ ସର୍ବଦା ସର୍ବାଭିଃ କଳାଭିଃ ନିଷେବତେ, କେବଳାଂ ହରଚୂଡାମଣୀକୃତାଂ ଲେଖାଂ ନ ଆଦତ୍ତେ।

ପଦ୍ୟାନୁବାଦ -

ସମସ୍ତ କଳାରୁ ଏକ କଳା ଛାଡି
ଚନ୍ଦ୍ରଦେବ ଅବିରତ
ତାରକାସୁରର ସେବା କରିବାରେ
ସର୍ବଦା ଅଛନ୍ତି ସେ ବ୍ୟସ୍ତ।
ଯେଉଁ ଏକ କଳା ତାରକାସୁରର
ସେବାରୁ ଅଛି ବଞ୍ଚିତ
ଶିବଙ୍କ ମସ୍ତକେ ଚୂଡାମଣି ରୂପେ
ସେହି କଳା ବିରାଜିତ ॥ ୩୪ ॥

**ଶ୍ଳୋକ- ୩୫**

ବ୍ୟାବୃତ୍ତଗତିରୁଦ୍ୟାନେ
କୁସୁମସ୍ତେୟସାଧ୍ୱସାତ୍।
ନ ବାତି ବାୟୁସ୍ତତ୍ପାର୍ଶ୍ୱେ
ତାଳବୃନ୍ତାଽନିଳାଽଧିକମ୍ ॥ ୩୫ ॥

ଅନ୍ୱୟ - ବାୟୁଃ କୁସୁମସ୍ତେୟସାଧ୍ୱସାତ୍ ଉଦ୍ୟାନେ ବ୍ୟାବୃତଗତିଃ ସନ୍ ତତ୍ପାର୍ଶ୍ୱେ ତାଳବୃନ୍ତାଽନିଳାଽଧିକମ୍ ନ ବାତି।

ପଦ୍ୟାନୁବାଦ -

ଫୁଲ ଚୋରି ଦୋଷ କାଳେ ତା ଉପରେ
ଲାଗିଯିବ ବୋଲି ବାୟୁ
ସେ ପାଇଁ ଭୟରେ · ଉଦ୍ୟାନ ଭିତରେ
ବହୁନାହିଁ ଏବେ ଆଉ।

ତାରକ ଅସୁର ସମୀପରେ ମଧ
ବହୁଛି ସେ ଧୀରେ ଧୀରେ
ତାଳପତ୍ର ପଙ୍ଖା- ସୃଷ୍ଟ ବାୟୁଠାରୁ
ନୁହେଁ ଅଧିକ ଗତିରେ ॥ ୩୫ ॥

## ଶ୍ଳୋକ-୩୬

ପର୍ଯ୍ୟାୟସେବାମୁତ୍ସୃଜ୍ୟ
ପୁଷ୍ପସମ୍ଭାରତତ୍ପରାଃ ।
ଉଦ୍ୟାନପାଳସାମାନ୍ୟମ୍
ଋତବସ୍ତମୁପାସତେ ॥ ୩୬ ॥

ଅନ୍ୱୟ - ଋତବଃ ପର୍ଯାୟସେବାମ୍ ଉତ୍ସୃଜ୍ୟ ପୁଷ୍ପସମ୍ଭାରତତ୍ପରାଃ
ସନ୍ତଃ ତମ୍ ଉପାସତେ ।

ପଦ୍ୟାନୁବାଦ -

ଏକ ପରେ ଆନ କ୍ରମ ଆଗମନ
ନିୟମୁ ହୋଇ ନିବୃତ୍ତ
ଋତୁ ଏ ସମସ୍ତ ହୋଇ ଏକତ୍ରିତ
ତାରକ ସେବାରେ ରତ ।
ସବୁ ଋତୁ ମିଶି ବଗିଚାରେ ପଶି
ମାଳିମାନଙ୍କ ସଦୃଶ
ଫୁଲ ସବୁ ତୋଳି ସେବାପାଇଁ ଚଳି
ଯାଇଛନ୍ତି ତା'ର ପାଶ ॥ ୩୬ ॥

## ଶ୍ଳୋକ-୩୭

ତସ୍ୟୋପାୟନଯୋଗ୍ୟାନି
ରତ୍ନାନି ସରିତାଂ ପତିଃ ।
କଥମପ୍ୟମ୍ଭସାମନ୍ତଃ
ଆନିଷ୍ପତ୍ତେଃ ପ୍ରତିକ୍ଷତେ ॥ ୩୭ ॥

ଅନ୍ୱୟ - ସରିତାଂ ପତିଃ ତସ୍ୟ ଉପାୟନଯୋଗ୍ୟାନି ରତ୍ନାନି ଅମ୍ଭସାମ୍
ଅନ୍ତଃ ଆନିଷ୍ପତ୍ତେଃ କଥମପି ପ୍ରତିକ୍ଷତେ ।

ପଦ୍ୟାନୁବାଦ -

ସରିତାଙ୍କ ପତି          ସାଗର ବି ଅତି
କଷ୍ଟରେ ପ୍ରତୀକ୍ଷାରତ
ଜଳ ମଧ୍ୟେ ସ୍ଥିତ          ରତ୍ନ କେବେ ହେବ
ଉପହାର ଉପଯୁକ୍ତ ।
ସେ ରତ୍ନ ସାଉଁଟି          ଦେବ ନେଇ ଭେଟି
ତାରକାସୁର ନିକଟ
ସାଗର ଭାବଇ          ରତ୍ନ ଭେଟି ପାଇ
ତାରକ ହବ ସନ୍ତୁଷ୍ଟ ।। ୩୭ ।।

### ଶ୍ଳୋକ-୩୮

ଜ୍ୱଳନ୍ମଣିଶିଖାଶ୍ଚୈନଂ
ବାସୁକିପ୍ରମୁଖା ନିଶି ।
ସ୍ଥିରପ୍ରଦୀପତାମେତ୍ୟ
ଭୂଜଙ୍ଗାଃ ପର୍ଯ୍ୟୁପାସତେ ।। ୩୮ ।।

ଅନ୍ୱୟ - ଜ୍ୱଳନ୍ମଣିଶିଖାଃ ବାସୁକିପ୍ରମୁଖାଃ ଭୂଜଙ୍ଗାଃ ଚ ନିଶି ସ୍ଥିରପ୍ରଦୀପତାମ୍
ଏତ୍ୟ ଏନଂ ପର୍ଯ୍ୟୁପାସତେ ।

ପଦ୍ୟାନୁବାଦ -

ବାସୁକିଙ୍କ ସଙ୍ଗ          ପ୍ରମୁଖ ପନ୍ନଗ
ଉପରକୁ ଟେକି ଫଣ
ଫଣାପରେ ସ୍ଥିତ          ଉଜ୍ଜ୍ୱଳ ମଣିରୁ
ଆଲୋକ କରନ୍ତି ଦାନ ।

ଦୀପାଧାର ସମ ନାଗଙ୍କ ମଣିରୁ
ସ୍ଥିର ଆଲୋକର ଧାରା
ତାରକାସୁରର ନଗ୍ରେ ବିଚ୍ଛୁରିତ
ହେଉଥାଏ ରାତ୍ରି ସାରା ॥ ୩୮ ॥

### ଶ୍ଳୋକ-୩୯

ତତ୍କୃତାଽନୁଗ୍ରହାପେକ୍ଷୀ
ତଂ ମୁହୂର୍ଦ୍ଦୂତହାରିତୈଃ ।
ଅନୁକୂଳୟତୀନ୍ଦ୍ରୋଽପି
କଳ୍ପଦ୍ରୁମବିଭୂଷଣୈଃ ॥ ୩୯ ॥

ଅନ୍ୱୟ - ଇନ୍ଦ୍ରୋଽପି ତତ୍କୃତାଽନୁଗ୍ରହାପେକ୍ଷୀ ସନ୍ ମୁହୂଃ ଦୂତହାରିତୈଃ
କଳ୍ପଦ୍ରୁମବିଭୂଷଣୈଃ ତମ୍ ଅନୁକୂଳୟତି ।

ପଦ୍ୟାନୁବାଦ -

ଇନ୍ଦ୍ର ବାରମ୍ବାର କଳ୍ପବୃକ୍ଷୁ ତା'ର
ଆଣି ପୁଷ୍ପ ଆଭୂଷଣ
ଦୂତ ମାଧ୍ୟମରେ ତାରକର ପାଶେ
କରୁଅଛି ସେ ପ୍ରେରଣ ।
ମନେ ଅଭିଳାଷ ତାରକକୁ ତୋଷ
କରି ତା'ର ଅନୁଗ୍ରହ
ହୋଇବ ପ୍ରାପତ ହେବ ଶଙ୍କା ମୁକ୍ତ
ରହିବନି ମନେ ଭୟ ॥ ୩୯ ॥

### ଶ୍ଳୋକ-୪୦

ଇତ୍ଥମାରାଧ୍ୟମାନୋଽପି
କ୍ଲିଶ୍ନାତି ଭୁବନତ୍ରୟମ୍ ।
ଶାମ୍ୟେତ୍ପ୍ରତ୍ୟପକାରେଣ
ନୋପକାରେଣ ଦୁର୍ଜନଃ ॥ ୪୦ ॥

ଅନ୍ୱୟ - ଇତ୍ଥମ୍ ଆରାଧମାନୋଽପି ସଃ ଭୁବନତ୍ରୟଂ କ୍ଲିଶ୍ନାତି। ତଥାହି ଦୁର୍ଜନଃ ପ୍ରତ୍ୟପକାରେଣ ଶାମ୍ୟେତ୍, ଉପକାରେଣ ନ ଶାମ୍ୟେତ୍।

ପଦ୍ୟାନୁବାଦ -

ଦେବମାନଙ୍କର ଏମନ୍ତ ପ୍ରକାର
ସେବା ଆରଧନା ସତ୍ତ୍ୱେ
ନିରନ୍ତର ଅତ୍ୟା- ଚାର କରୁଅଛି
ସ୍ୱର୍ଗ ପାତାଳ ଓ ମର୍ତ୍ତ୍ୟେ।
ଉପକାର ଦ୍ୱାରା ଦୁର୍ଜନର ମନ
ହୁଏନାହିଁ କେବେ ଶାନ୍ତ
ଦୁର୍ଜନକୁ ସଦା ଖଳକାର୍ଯ୍ୟ ଦ୍ୱାରା
କରିହୁଏ ପ୍ରତିହତ ॥ ୪୦ ॥

## ଶ୍ଳୋକ-୪୧

ତେନାଽମରବଧୂହସ୍ତୈଃ
ସଦୟାଲୂନପଲ୍ଲବାଃ।
ଅଭିଜ୍ଞାଶ୍ଛେଦପାତାନାଂ
କ୍ରିୟନ୍ତେ ନନ୍ଦନଦ୍ରୁମାଃ ॥ ୪୧ ॥

ଅନ୍ୱୟ- ତେନ ଅମରବଧୂହସ୍ତୈଃ ସଦୟାଲୂନପଲ୍ଲବାଃ ନନ୍ଦନଦ୍ରୁମାଃ ଛେଦପାତାନାମ୍ ଅଭିଜ୍ଞା କ୍ରିୟନ୍ତେ।

ପଦ୍ୟାନୁବାଦ -

ନବ ପଲ୍ଲବରେ କର୍ଣ୍ଣ ଆଭୂଷଣ
ତିଆରି କରିବା ପାଇଁ
ନନ୍ଦନ ବନରେ ସୁର ନନ୍ଦିନୀଏ
ପତ୍ର ତୋଳୁଥିଲେ ଯାଇ।

ବୃକ୍ଷମାନଙ୍କରୁ ପତ୍ର ଛିଣ୍ଡାଇଲେ
ମନ ହେଉଥିଲା କଷ୍ଟ
ସେ ସବୁ ବୃକ୍ଷକୁ ତାରକ ଅସୁର
କଟେଇ କରିଛି ନଷ୍ଟ ॥ ୪୧ ॥

### ଶ୍ଳୋକ- ୪୨

ବୀଜ୍ୟତେ ସ ହି ସଂସୁପ୍ତ
ଶ୍ୱାସସାଧାରଣାନିଳୈଃ ।
ଚାମରୈଃ ସୁରବନ୍ଦିନାଂ
ବାଷ୍ପସୀକରବର୍ଷିଭିଃ ॥ ୪୨ ॥

ଅନ୍ୱୟ - ହି ଯତଃ ସଃ ସଂସୁପ୍ତଃ ସନ୍ ଶ୍ୱାସସାଧାରଣାନିଳୈଃ
ବାଷ୍ପସୀକରବର୍ଷିଭିଃ ସୁରବନ୍ଦିନାଂ ଚାମରୈଃ ବୀଜ୍ୟତେ ।

ପଦ୍ୟାନୁବାଦ -

ସ୍ୱର୍ଗର ଅପ୍ସରୀ ବନ୍ଦୀ ହୋଇକରି
ରହିଥିଲେ ତା ଉଆସେ
ତା ଶୟନ କାଳେ ଚାମର ଚାଳନା
କରୁଥିଲେ ରହି ପାଶେ ।
ଚାମରୁ ଉତ୍ପନ୍ନ କୋମଳ ପବନ
ନିଶ୍ୱାସ ବାୟୁ ସମାନ
ଅପ୍ସରୀଙ୍କ ନେତ୍ର ଅଶ୍ରୁକଣା ମିଶି
ଥିଲା ସୀକରସମ୍ପନ୍ନ ॥ ୪୨ ॥

### ଶ୍ଳୋକ-୪୩

ଉତ୍ପାଟ୍ୟ ମେରୁଶୃଙ୍ଗାଣି
କ୍ଷୁଣ୍ଣାନି ହରିତାଂ ଖୁରୈଃ ।
ଆକ୍ରୀଡପର୍ବତାସ୍ତେନ
କଳ୍ପିତା ସ୍ୱେଷୁ ବେଶ୍ମସୁ ॥ ୪୩ ॥

ଅନ୍ୱୟ - ତେନ ହରିତାଂ ଖୁରୈଃ କ୍ଷୁଣାନି ମେରୁଶୃଙ୍ଗାଣି ଉତ୍ପାଟ୍ୟ ସ୍ୱେଷୁ ବେଶ୍ମସୁ ଆକ୍ରୀଡପର୍ବତାଃ କଳ୍ପିତାଃ

ପଦ୍ୟାନୁବାଦ -

ସୂର୍ଯ୍ୟଙ୍କର ରଥ ନିତି ଯାତାୟାତ
କାଳେ ମେରୁ ପରବତେ
ଶୃଙ୍ଗପରେ କ୍ଷତ ହେଉଥିଲା ସୃଷ୍ଟ
ଅଶ୍ୱଙ୍କ ଖୁରା ଆଘାତେ।
ସେହି ଶୃଙ୍ଗମାନ କରି ଉତ୍ପାଟନ
ନେଇଛି ତାରକାସୁର
ସେ ସବୁରେ ଏକ ଶୈଳ କ୍ରୀଡନକ
କରି ରଖିଛି ତା ଘର ॥ ୪୩ ॥

## ଶ୍ଳୋକ-୪୪

ମନ୍ଦାକିନ୍ୟାଃ ପୟଃ ଶେଷଂ
ଦିଗ୍ୱାରଣମଦାବିଳମ୍।
ହେମାମ୍ଭୋରୁହସସ୍ୟାନାଂ
ତଦ୍ୱାପ୍ୟୋ ଧାମ ସାମ୍ପ୍ରତମ୍ ॥ ୪୪ ॥

ଅନ୍ୱୟ- ସାମ୍ପ୍ରତଂ ମନ୍ଦାକିନ୍ୟାଃ ଦିଗ୍ୱାରଣମଦାବିଳମ୍ ପୟଃ ଶେଷମ୍। ହେମାମ୍ଭୋରୁହସସ୍ୟାନାଂ ତଦ୍ୱାପ୍ୟଃ ଧାମ।

ପଦ୍ୟାନୁବାଦ -

ମନ୍ଦାକିନୀ ଜଳେ କନକ କମଳ-
ବନ ଥିଲା ସୁଶୋଭିତ
ସେ ସବୁ ଉପାଡି କରିଛି ରୋପଣ
ସ୍ୱ ହ୍ରଦେ ତାରକାସୁର।

କମଳବନର ଅବର୍ତ୍ତମାନରେ
ବାକୀ ମନ୍ଦାକିନୀ ଜଳ
ଦିଗ୍ଗଜମାନଙ୍କ ମଦ ବାରି ମିଶି
ହୋଇଯାଇଛି ଆବିଳ ॥ ୪୪ ॥

## ଶ୍ଳୋକ-୪୫

ଭୁବନାଲୋକନପ୍ରୀତିଃ
ସ୍ୱର୍ଗିଭିର୍ନାନୁଭୂୟତେ ।
ଖିଳୀଭୂତେ ବିମାନାନାଂ
ତଦାପାତଭୟାତ୍ପଥି ॥ ୪୫ ॥

ଅନ୍ୱୟ - ତଦାପାତଭୟାତ୍ ବିମାନାନାଂ ପଥି ଖିଳୀଭୂତେ ସତି ସ୍ୱର୍ଗିଭିଃ ଭୁବନାଲୋକନପ୍ରୀତିଃ ନ ଅନୁଭୂୟତେ ।

ପଦ୍ୟାନୁବାଦ -

ବିମାନ ପଥରେ ତାରକାସୁରର
ଅକସ୍ମାତ ଆବିର୍ଭାବ
ଭୟ କାରଣରୁ ବିମାନ ଭ୍ରମଣ
ତେଜିଛନ୍ତି ସର୍ବଦେବ ।
ସେଥିପାଇଁ ଅନ୍ୟ ଲୋକକୁ ଗମନ
ସ୍ୱର୍ଗବାସୀ ତ୍ୟାଗ କରି
କେବଳ ହିଁ ସ୍ୱର୍ଗ- ପୁରେ ରହିଛନ୍ତି
ତାରକାସୁରକୁ ଡରି ॥ ୪୫ ॥

## ଶ୍ଳୋକ-୪୬

ଯଜ୍ୱଭିଃ ସମ୍ଭୃତଂ ହବ୍ୟଂ
ବିତତେଷ୍ୱଧ୍ୱରେଷୁ ସଃ ।
ଜାତବେଦୋମୁଖ ନ୍ମାୟୀ
ମିଷତାମାଚ୍ଛିନତ୍ତି ନଃ ॥ ୪୬ ॥

ଅନ୍ୱୟ -  ଯଜ୍ୱଭିଃ ବିତତେଷ୍ଟୁ ଅଧ୍ୱରେଷ୍ଟୁ ସମ୍ଭୃତଂ ହବ୍ୟଂ ମାୟୀ ସଃ ନଃ ମିଷତାଂ ଜାତବେଦୋମୁଖାତ୍ ଆଚ୍ଛିନତ୍ତି।

### ଶ୍ଳୋକ-୪୭

ଉଚ୍ଚୈରୁଚ୍ଚୈଃଶ୍ରବାସ୍ତେନ
ହୟରତ୍ନମହାରି ଚ।
ଦେହବଦ୍ଧମିବେନ୍ଦ୍ରସ୍ୟ
ଚିରକାଳାର୍ଜିତଂ ଯଶଃ ॥ ୪୭ ॥

ଅନ୍ୱୟ -  ଚ ତେନ ଉଚ୍ଚୈଃ ଉଚ୍ଚୈଃଶ୍ରବାଃ ହୟରତ୍ନମ୍ ଦେହବଦ୍ଧଂ ଚିରକାଳାର୍ଜିତମ୍ ଇନ୍ଦ୍ରସ୍ୟ ଯଶଃ ଇବ ଅହାରି।

ପଦ୍ୟାନୁବାଦ -

ଦେବଙ୍କ ନମିତ୍ତ                    ଯଜମାନକୃତ
ବଡ ଯଜ୍ଞମାନଙ୍କରେ
ଅଗ୍ନି ମୁଖୁ ହବ୍ୟ                  ଛଡାଇ ନେଉଛି
ଦେଖୁ ଦେଖୁ ସେ ମାୟାରେ ॥ ୪୬ ॥
ଚିରକାଳୁ ପ୍ରାପ୍ତ                    ଯଶ ମୂର୍ତ୍ତିମନ୍ତ
ଉଚ୍ଚୈଶ୍ରବା ଅଶ୍ୱରତ୍ନ
ଦେଖେଇ ବଡେଇ               ନେଇଛି ଛଡେଇ
ଇନ୍ଦ୍ର ଆଜି ଅଶ୍ୱହୀନ ॥ ୪୭ ॥

### ଶ୍ଳୋକ-୪୮

ତସ୍ମିନ୍ନୁପାୟାଃ ସର୍ବେ ନଃ
କ୍ରୂରେ ପ୍ରତିହତକ୍ରିୟାଃ।
ବୀର୍ଯବନ୍ତ୍ୟୌଷଧାନୀବ
ବିକାରେ ସାନ୍ନିପାତିକେ ॥ ୪୮ ॥

ଅନ୍ୱୟ - କ୍ରୂରେ ତସ୍ମିନ୍ ନଃ ସର୍ବେ ଉପାୟାଃ ସାନ୍ନିପାତିକେ ବିକାରେ
ବୀର୍ଯବନ୍ତି ଔଷଧାନି ଇବ ପ୍ରତିହତକ୍ରିୟାଃ ଭବନ୍ତି।

ପଦ୍ୟାନୁବାଦ

ଯେପରି ଅତ୍ୟନ୍ତ ଉତ୍କୃଷ୍ଟ ଔଷଧ
ସନ୍ନିପାତ ରୋଗ ପାଇଁ
ପ୍ରୟୋଗ କରି ବି ବିଫଳ ହୁଅଇ
ରୋଗ ଭଲ ହୁଏନାହିଁ।
ସେପରି ସେ କ୍ରୂର ତାରକ ବିରୁଦ୍ଧେ
କଲେ ବି ଯେତେ ଉପାୟ
ସମସ୍ତ ଉପାୟ ହୋଇଛି ବିଫଳ
ଏବେ ଆମ୍ଭେ ନିରୁପାୟ ॥ ୪୮ ॥

### ଶ୍ଳୋକ-୪୯

ଜୟାଶା ଯତ୍ର ଚାଽସ୍ମାକଂ
ପ୍ରତିଘାତୋତ୍ଥିତାଽର୍ଚିଷା।
ହରିଚକ୍ରେଣ ତେନାଽସ୍ୟ
କଣ୍ଠେ ନିଷ୍କମିବାଽର୍ପିତମ୍ ॥ ୪୯॥

ଅନ୍ୱୟ - ଯତ୍ର ଅସ୍ମାକଂ ଜୟାଶା, ପ୍ରତିଘାତୋତ୍ଥିତାଽର୍ଚିଷା ତେନ ହରିଚକ୍ରେଣ
ଚ ଅସ୍ୟ କଣ୍ଠେ ନିଷ୍କମ୍ ଅର୍ପିତମ୍ ଇବ।

ପଦ୍ୟାନୁବାଦ -

ତାରକ ବିନାଶ କରିଥିଲୁ ଆଶ
ହୋଇବ ହରିଙ୍କ ଚକ୍ରେ
ହେଲେ ସବୁ ଆଶା ହୋଇଲା ନିରାଶା
ଦେଖିଲୁ ଯା ଆମ୍ଭେ ନେତ୍ରେ।

ଯେତେବେଳେ ଚକ୍ର କରିଲା ଆଘାତ
ତାରକର କଣ୍ଠଦେଶେ
ଅଗ୍ନିର ସ୍ଫୁଲିଙ୍ଗ ହେଲା ଉଦ୍ଗୀରଣ
ତା କଣ୍ଠର ଚତୁର୍ପାର୍ଶ୍ୱେ ।
ସେ ଅଗ୍ନି ସ୍ଫୁଲିଙ୍ଗ ଏକ ମାଳା ସମ
ତାରକ ଅସୁର ଗଳେ
ଶୋଭମାନ ହେଲା ପ୍ରାୟ ଦିଶୁଥିଲା
ହରି ଚକ୍ରାଘାତ କାଳେ ॥ ୪୯ ॥

### ଶ୍ଳୋକ-୫୦

ତଦୀୟାସ୍ତୋୟଦେଷ୍ୱଦ୍ୟ
ପୁଷ୍କରାବର୍ତ୍ତକାଦିଷୁ ।
ଅଭ୍ୟସ୍ୟନ୍ତି ତଟାଘାତଂ
ନିର୍ଜ୍ଜିତୈରାବତା ଗଜାଃ ॥ ୫୦ ॥

ଅନ୍ୱୟ - ଅଦ୍ୟ ନିର୍ଜ୍ଜିତୈରାବତାଃ ତଦୀୟାଃ ଗଜାଃ ପୁଷ୍କରାବର୍ତ୍ତକାଦିଷୁ ତ୍ୱୟଦେଷୁ ତଟାଘାତଂ ଅଭ୍ୟସନ୍ତି ।

### ଶ୍ଳୋକ-୫୧

ତଦିଚ୍ଛାମୋ ବିଭୋ ! ସ୍ରଷ୍ଟୁଂ
ସେନାନ୍ୟଂ ତସ୍ୟ ଶାନ୍ତୟେ ।
କର୍ମବନ୍ଧଚ୍ଛିଦଂ ଧର୍ମଂ
ଭବସ୍ୟେବ ମୁମୁକ୍ଷୁବଃ ॥ ୫୧ ॥

ଅନ୍ୱୟ - ତତ୍ ବିଭୋ ! ମୁମୁକ୍ଷୁବଃ ଭବସ୍ୟ ଶାନ୍ତୟେ କର୍ମବନ୍ଧଚ୍ଛିଦଂ ଧର୍ମମ୍ ଇବ ତସ୍ୟ ଶାନ୍ତୟେ ସେନାନ୍ୟଂ ସ୍ରଷ୍ଟୁମ୍ ଇଚ୍ଛାମଃ ।

ପଦ୍ୟାନୁବାଦ -

ଏବେ ତାରକର ହସ୍ତୀମାନେ କରି
ଐରାବତକୁ ପରାସ୍ତ
ପୁଷ୍କର ଆବର୍ତ୍ତ ବାଦଲ ସହିତ
ସଂଘର୍ଷେ ଅଛନ୍ତି ରତ ॥ ୫୦ ॥
ସଂସାର ବନ୍ଧନ ଜନମ ମରଣ
ମୁକତି ପାଇବା ପାଇଁ
ମୋକ୍ଷକାମୀ ଜନ ଧର୍ମ ଅର୍ଜିବାକୁ
ଯେପରି ଇଚ୍ଛା କରଇ
ସେହିପରି ପ୍ରଭୁ ଆମ୍ଭେମାନେ ସବୁ
ତାରକ ବିନାଶ ପାଇଁ
କରୁଛୁ ପ୍ରାର୍ଥନା କରନ୍ତୁ ରଚନା
ସେନାପତି ଆମ୍ଭ ପାଇଁ ॥ ୫୧ ॥

## ଶ୍ଳୋକ-୫୨

ଗୋପ୍ତାରଂ ସୁରସୈନ୍ୟାନାଂ
ଯଂ ପୁରସ୍କୃତ୍ୟ ଗୋତ୍ରଭିତ୍ ।
ପ୍ରତ୍ୟାନେଷ୍ୟତି ଶତ୍ରୁଭ୍ୟୋ
ବନ୍ଦୀମିବ ଜୟଶ୍ରିୟମ୍ ॥ ୫୨ ॥

ଅନ୍ୱୟ- ସୁରସୈନ୍ୟାନାଂ ଗୋପ୍ତାରଂ ଯଂ ପୁରସ୍କୃତ୍ୟ ଗୋତ୍ରଭିତ୍ ଜୟଶ୍ରିୟଂ ବନ୍ଦୀମ୍ ଇବ ଶତ୍ରୁଭ୍ୟଃ ପ୍ରତ୍ୟାନେଷ୍ୟତି ।

ପଦ୍ୟାନୁବାଦ -

ସେ ସେନାପତିଙ୍କୁ ସୁରସେନାଙ୍କର
ପୁରଭାଗେ ଇନ୍ଦ୍ର ରଖି
ତାରକାସୁରଠୁ ଫେରାଇ ଆଣିବେ
ବନ୍ଦିନୀ ବିଜୟଲକ୍ଷ୍ମୀ ॥ ୫୨ ॥

## ଶ୍ଲୋକ-୫୩

ବଚସ୍ୟବସିତେ ତସ୍ମିନ୍
ସସର୍ଜ ଗିରମାତ୍ମଭୂଃ ।
ଗର୍ଜିତାନନ୍ତରାଂ ବୃଷ୍ଟିଂ
ସୌଭାଗ୍ୟେନ ଜିଗାୟ ସା ॥ ୫୩ ॥

ଅନ୍ୱୟ - ତସ୍ମିନ୍ ବଚସି ଅବସିତେ ସତି ଆତ୍ମଭୂଃ ଗିରଂ ସସର୍ଜ । ସା ସୌଭାଗ୍ୟେନ ଗର୍ଜିତାଽନନ୍ତରାଂ ବୃଷ୍ଟିଂ ଜିଗାୟ ।

ପଦ୍ୟାନୁବାଦ -

ଏପରି କହିଣ ହୋଇଲେ ମଉନ
ଦେବଗୁରୁ ବୃହସ୍ପତି
ସବୁ ଶୁଣି ବ୍ରହ୍ମା ବୋଇଲେ ବଚନ
ଦେବତାମାନଙ୍କ ପ୍ରତି ।
ମେଘ ଘଡଘଡି ପରେ ଯେଉଁ ବୃଷ୍ଟି
ହୁଏ ତା ଶାନ୍ତ ମଧୁର
ତା ଠାରୁ ଅଧିକ ଶାନ୍ତ ଓ ମଧୁର
ଥିଲା ବ୍ରହ୍ମାଙ୍କର ଗିର ॥ ୫୩ ॥

## ଶ୍ଲୋକ-୫୪

ସମ୍ପତ୍ସ୍ୟତେ ବଃ କାମୋଽୟଂ
କାଳଃ କଶ୍ଚିତ୍ପ୍ରତୀକ୍ଷ୍ୟତାମ୍ ।
ନ ତ୍ୱସ୍ୟ ସିଦ୍ଧୌ ଯାସ୍ୟାମି
ସର୍ଗବ୍ୟାପାରମାତ୍ମନା ॥ ୫୪ ॥

ଅନ୍ୱୟ - ଅୟଂ ବଃ କାମଃ ସମ୍ପତ୍ସ୍ୟତେ, କଶ୍ଚିତ କାଳଃ ପ୍ରତୀକ୍ଷ୍ୟତାମ । ତୁ ଅସ୍ୟ ସିଦ୍ଧୌ ଆତ୍ମନା ସର୍ଗବ୍ୟାପାରଂ ନ ଯାସ୍ୟାମି ।

### ଶ୍ଲୋକ-୫୫

ଇତଃ ସ ଦୈତ୍ୟଃ ପ୍ରାପ୍ତଶ୍ରୀଃ
ନେତ ଏବାର୍ହତି କ୍ଷୟମ୍ ।
ବିଷବୃକ୍ଷୋଽପି ସଂବର୍ଦ୍ଧ
ସ୍ୱୟଂ ଛେତୁମସାମ୍ପ୍ରତମ୍ ॥ ୫୫ ॥

ଅନ୍ୱୟ - ଇତଃ ପ୍ରାପ୍ତଶ୍ରୀଃ ସଃ ଦୈତ୍ୟଃ ଇତଃ ଏବ କ୍ଷୟଂ ନ ଅର୍ହତି ।
ବିଷବୃକ୍ଷଃ ଅପି ସଂବର୍ଦ୍ଧ ସ୍ୱୟଂ ଛେତୁମ୍ ଅସାମ୍ପ୍ରତମ୍ ।

ପଦ୍ୟାନୁବାଦ -

ତୁମ୍ଭ ଇଚ୍ଛା ପୂର୍ତ୍ତି ପାଇଁ ଦିନ କିଛି
ପ୍ରତୀକ୍ଷାର ପ୍ରୟୋଜନ
ସେ ପାଇଁ କୌଣସି ନୂତନ ସୃଷ୍ଟି ମୁଁ
କରିବି ନାହିଁ ନିର୍ମାଣ ॥ ୫୪ ॥
ମୋ ଠାରୁ ସମସ୍ତ ଐଶର୍ଯ୍ୟ ପ୍ରାପତ
ହୋଇଅଛି ସେହି ଦୈତ୍ୟ
ମୋ ହସ୍ତେ ସଂହାର ହୋଇବା ତାହାର
ନୁହଁଇ ଅଟେ ଉଚିତ ।
ସ୍ୱହସ୍ତେ ରୋପିତ ପାଦପ ବିଷାକ୍ତ
ନିଜ ହସ୍ତରେ ଛେଦନ
ଲାଗେନା ଉଚିତ ଅବା ଶାସ୍ତ୍ରଗତ
ରହିଅଛି ଏ ବିଧାନ ॥ ୫୫ ॥

### ଶ୍ଲୋକ-୫୬

ବୃତଂ ତେନେଦମେବ ପ୍ରାଙ୍
ମୟା ଚାସ୍ମୈ ପ୍ରତିଶ୍ରୁତମ୍ ।
ବରେଣ ଶମିତଂ ଲୋକାନଲଂ
ଦଗ୍‌-ଧୁଂ ହି ତତପଃ ॥ ୫୬ ॥

ଅନ୍ୱୟ- ପ୍ରାକ୍ ତେନ ଇଦମ୍ ଏବ ବୃତମ୍, ମୟା ପ୍ରତିଶ୍ରୁତମ୍।
ହି ଲୋକାନ୍ ଦଗ୍-ଧୁଂ ଅଳଂ ତତ୍ତପଃ ବରେଣ ଶମିତମ୍।

ପଦ୍ୟାନୁବାଦ -

କରି ତପ ଘୋର ମାଗିଥିଲା ବର
ପୂର୍ବେ ଏ ତାରକାସୁର
ଥିଲା ତାର ଇଚ୍ଛା ଦେବତାଙ୍କ ହସ୍ତେ
ହେବନାହିଁ ମୃତ୍ୟୁ ତାର।
ନହୋଇଲେ ପ୍ରାପ୍ତ କରିଥାନ୍ତା ଧ୍ୱସ୍ତ
ତପାନଳେ ତିନିପୁର
ସେଥିପାଇଁ ବର ଦେଇଥିଲି ଶାନ୍ତ
ହୋଇଥିଲା ସେ ଅସୁର ॥ ୫୬ ॥

### ଶ୍ଳୋକ-୫୭

ସଂଯୁଗେ ସାଂଯୁଗୀନଂ
ତମୁଦ୍ୟତଂ ପ୍ରସହେତ କଃ।
ଅଂଶାଦୃତେ ନିଷିକ୍ତସ୍ୟ
ନୀଳଲୋହିତରେତସଃ ॥ ୫୭ ॥

ଅନ୍ୱୟ- ସଂଯୁଗେ ଉଦ୍ୟତଃ ସାଂଯୁଗୀନଂ ନିଷିକ୍ତସ୍ୟ ନୀଳଲୋହିତରେତସଃ
ଅଂଶାତ୍ ଋତେ କଃ ପ୍ରସହେତ।

ପଦ୍ୟାନୁବାଦ

ଯୁଦ୍ଧ ଭୂମେ ଯୁଦ୍ଧ- କୁଶଳ ସେ ଦୈତ୍ୟ
ହୁଅନ୍ତେ ଯୁଦ୍ଧେ ଉଦ୍ୟତ
ଜଣେ ବି କେ ନାହିଁ ସମ୍ମୁଖେ ତା ଯାଇ
ଯୁଦ୍ଧେ ହେବାପାଇଁ ଲିପ୍ତ।

ନୀଳ ଓ ଲୋହିତ ଶିବଙ୍କର ରେତ
ତହିଁରୁ ଜାତ ସନ୍ତାନ
କେବଳ ସମର୍ଥ କରିବାକୁ ହତ
ତାରକାସୁର ଜୀବନ ॥ ୫୭ ॥

## ଶ୍ଳୋକ-୫୮

ସଃ ହି ଦେବଃ ପରଂ ଜ୍ୟୋତିଃ
ତମଃ ପାରେ ବ୍ୟବସ୍ଥିତମ୍ ।
ପରିଚ୍ଛିନ୍ନପ୍ରଭାବର୍ଦ୍ଧିଃ
ନ ମୟା ନ ଚ ବିଷ୍ଣୁନା ॥ ୫୮ ॥

ଅନ୍ୱୟ - ହି ମତଃ ସଃ ଦେବଃ ତମଃ ପାରେ ବ୍ୟବସ୍ଥିତଂ ପରଂ ଜ୍ୟୋତିଃ ଅସ୍ତି । ଅତ ଏବ ମୟା ବିଷ୍ଣୁନା ଚ ପରିଚ୍ଛିନ୍ନପ୍ରଭାବର୍ଦ୍ଧିଃ ନ (ଭବତି) ।

ପଦ୍ୟାନୁବାଦ -

ତମଗୁଣ ରୂପୀ ଅନ୍ଧାର ଅବିଦ୍ୟା
ଠାରୁ ବହୁ ଦୂରେ ସ୍ଥିତ
ଦେବ ଦେବ ମହା- ଦେବ ସେ ଶଙ୍କର
ଅମାପ ଜ୍ୟୋତି ବିକ୍ଷାତ ।
ସ୍ୱୟଂ ବିଷ୍ଣୁ ଅବା ନିଜେ ମୁହିଁ ବ୍ରହ୍ମା
ତାଙ୍କ ଶକ୍ତି ଆକଳନ
କରିବା ସହଜ ନୁହଁଇ ସମ୍ଭବ
ଶୁଣ ଆହେ ଦେବଗଣ ॥ ୫୮ ॥

## ଶ୍ଳୋକ-୫୯

ଉମାରୂପେଣ ତେ ଯୂୟଂ
ସଂଯମସ୍ତିମିତଂ ମନଃ ।
ଶମ୍ଭୋର୍ଯତଧ୍ୱମାକ୍ରଷ୍ଟୁମ୍
ଅୟକାନ୍ତନଲୌହବତ୍ ॥ ୫୯ ॥

ଅନ୍ୱୟ -  ତେ ଯୂୟଂ ସଂଯମସ୍ତିମିତଂ ଶମ୍ଭୋଃ ମନଃ ଉମାରୂପେଣ
ଅୟକାନ୍ତେନ ଲୋହବତ୍ ଆକ୍ରଷ୍ଟୁମ୍ ଯତଧ୍ୱମ୍ ।

ପଦ୍ୟାନୁବାଦ -

ଏଣୁ ଦେବଗଣ          ଅଭିଳାଷ ପୂର୍ଣ୍ଣ
ହେବାପାଇଁ ଚେଷ୍ଟା କର
ସମାଧିରେ ସ୍ଥିର          ମହାଦେବଙ୍କର
ମନକୁ କର ଅସ୍ଥିର ।
ଲୌହ ଯେଉଁପରି          ଚୁମ୍ବକର ପ୍ରତି
ହୋଇଥାଏ ଆକର୍ଷିତ
ପାର୍ବତୀଙ୍କ ରୂପ          ପ୍ରତି ଆକର୍ଷିତ
କରାଅ ଶିବଙ୍କ ଚିତ୍ତ ।। ୫୯ ।।

### ଶ୍ଳୋକ-୬୦

ଉଭେ ଏବ କ୍ଷମେ ବୋଢୁମ୍
ଉଭୟୋର୍ବୀଜମାହିତମ୍ ।
ସା ବା ଶମ୍ଭୋସ୍ତଦୀୟା ବା
ମୂର୍ତିର୍ଜଳମୟୀ ମମ ।। ୬୦ ।।

ଅନ୍ୱୟ -  ଉଭୟଃ ଶମ୍ଭୋଃ ମମ ବା ଆହିତଂ ବୀଜଂ ବୋଢୁଂ କ୍ରମେଣ ଶମ୍ଭୋଃ
ସା ବା, ମମ ଚ ତଦୀୟା ଜଳମୟୀ ମୂର୍ତିବା, ଉଭେ ଏବ କ୍ଷମେ ।

ପଦ୍ୟାନୁବାଦ

ଶିବଙ୍କ କ୍ଷରିତ          ରେତକୁ ଧାରଣ
କରିବାକୁ କେ ସମର୍ଥ
ନାହାଁନ୍ତି କେ ନାରୀ          ଏ ସାରା ଯଗତେ
ଏକା ଗୌରୀଙ୍କ ବ୍ୟତୀତ ।

ମୋ ଠାରୁ କ୍ଷରିତ ରେତକୁ ବି ମଧ୍ୟ
ଧାରଣ କରିବା ପାଇଁ
କେବଳ ଶିବଙ୍କ ଅନ୍ୟ ଏକ ରୂପ
ଜଳ ସମର୍ଥ ଅଟଇ ॥ ୬୦ ॥

### ଶ୍ଳୋକ-୬୧

ତସ୍ୟାତ୍ମା ଶିତିକଣ୍ଠସ୍ୟ
ସୈନ୍ୟାପତ୍ୟମୁପେତ୍ୟ ବଃ ।
ମୋକ୍ଷ୍ୟତେ ସୁରବନ୍ଦୀନାଂ
ବେଣୀର୍ବୀର୍ଯ୍ୟବିଭୂତିଭିଃ ॥ ୬୧ ॥

ଅନ୍ୱୟ - ତସ୍ୟ ଶିତିକଣ୍ଠସ୍ୟ ଆତ୍ମା ବଃ ସୈନାପତ୍ୟମ୍ ଉପେତ୍ୟ ବୀର୍ଯ୍ୟବିଭୂତିଭିଃ ସୁରବନ୍ଦୀନାଂ ବେଣୀଃ ମୋକ୍ଷ୍ୟତେ ।

ପଦ୍ୟାନୁବାଦ -

ସେହି ନୀଳକଣ୍ଠ ଅଂଶୁ ଜାତ ପୁତ୍ର
ହୋଇ ଦେବ ସେନାପତି
କରିବେ ସଂହାର ତାରକ ଅସୁର
ଦେବସ୍ତ୍ରୀ ପାଇବେ ମୁକ୍ତି ।
ବନ୍ଦିନୀ ଜୀବନେ ଦେବାଙ୍ଗନାମାନେ
ସଜାଡି ନଥିଲେ କେଶ
ଦୀର୍ଘଦିନ ପରେ ସଜାଡିବେ ପୁଣି
ହୁଅନ୍ତେ ତାରକ ନାଶ ॥ ୬୧ ॥

### ଶ୍ଳୋକ-୬୨

ଇତି ବ୍ୟାହୃତ୍ୟ ବିବୁଧାନ୍
ବିଶ୍ୱଯୋନିସ୍ତିରୋଦଧେ ।
ମନସ୍ୟାହିତକର୍ତ୍ତବ୍ୟାଃ
ତେଽପି ଦେବା ଦିବଂ ଯଯୁଃ ॥ ୬୨ ॥

ଅନ୍ୱୟ -  ବିଶ୍ୱଯୋନିଃ ବିବୁଧାନ୍ ଇତି ବ୍ୟାହୃତ୍ୟ ତିରୋଦଧେ ।
ଦେବା ଅପି ମନସି ଆହିତକର୍ତ୍ତବ୍ୟାଃ ସନ୍ତଃ ଦିବଂ ଯଯୁଃ ।

### ଶ୍ଳୋକ-୬୩

ତତ୍ର ନିଶ୍ଚିତ୍ୟ କନ୍ଦର୍ପମ୍
ଅଗମତ୍ପାକଶାସନଃ ।
ମନସା କାର୍ଯ୍ୟସଂସିଦ୍ଧୌ
ତ୍ୱରାଦ୍ୱିଗୁଣରଂହସା ॥ ୬୩ ॥

ଅନ୍ୱୟ -  ପାକଶାସନଃ ତତ୍ର ନିଶ୍ଚିତ୍ୟ କାର୍ଯ୍ୟସିଦ୍ଧୌ ତ୍ୱରାଦ୍ୱିଗୁଣରଂହସା
ମନସା କନ୍ଦର୍ପମ୍ ଅଗମତ୍ ।

ପଦ୍ୟାନୁବାଦ -

ଜଗତ୍ ସୃଷ୍ଟିକର୍ତ୍ତା  କହି ଏହି କଥା
ହୋଇଗଲେ ଅନ୍ତର୍ଦ୍ଧାନ
ତତ୍ପର ବ୍ୟବସ୍ଥା  ଚିନ୍ତିଣ ଦେବତା
ସ୍ୱର୍ଗକୁ କଲେ ପ୍ରସ୍ଥାନ ॥ ୬୨ ॥
କାର୍ଯ୍ୟ ପାଇଁ ଇନ୍ଦ୍ର  ମନେ କଲେ ସ୍ଥିର
ଉପଯୁକ୍ତ ଯେ ମନ୍ମଥ
ତେଣୁ ମନେ ମନେ  ଦ୍ୱିଗୁଣ ବେଗରେ
ଚିନ୍ତିଲେ ତାଙ୍କୁ ତ୍ୱରିତ ॥ ୬୩ ॥

### ଶ୍ଳୋକ-୬୪

ଅଥ ସ ଲଳିତଯୋଷିଦ୍-ଭ୍ରୂଲତାଚାରୁଶୃଂଗଂ
ରତିବଳୟପଦାଙ୍କେ ଚାପମାସଜ୍ୟ କଣ୍ଠେ ।
ସହଚରମଧୁହସ୍ତନ୍ୟସ୍ତଚୂତାଙ୍କୁରାସ୍ତ୍ରଃ
ଶତମଖମୁପତସ୍ଥେ ପ୍ରାଞ୍ଜଳିଃ ପୁଷ୍ପଧନ୍ୱା ॥ ୬୪ ॥

ଅନ୍ୱୟ - ଅଥ ଚ ପୁଷ୍ପଧନ୍ୱା ଲଳିତଯୋଷିଦ୍-ଭ୍ରୂଲତାଚାରୁଶୃଙ୍ଗଂ ଚାପଂ ରତିବଳୟପଦାଙ୍କେ କଣ୍ଠେ ଆସଜ୍ୟ ସହଚରମଧୁହସ୍ତନ୍ୟସ୍ତଚୂତାଙ୍କୁରାସ୍ତ୍ରଃ ପ୍ରାଞ୍ଜଳି ସନ୍ ଶତମଖମ୍ ଉପତସ୍ଥେ ।

ପଦ୍ୟାନୁବାଦ -

ଇନ୍ଦ୍ରଙ୍କ ସ୍ମରଣ ଜାଣିଣ ମଦନ
ଯୋଡି ହସ୍ତ ହେଲ ଉଭା
ସୁନ୍ଦରୀ ତରୁଣୀ ଭ୍ରୂଲତା ସମାନ
କଣ୍ଠେ ପୁଷ୍ପଧନୁ ଶୋଭା ।
ସେ କଣ୍ଠେ ଚିତ୍ରଣ ରତିଙ୍କ କଙ୍କଣ
ଦିଶୁଥିଲା କି ମଞ୍ଜୁଳ
ସଙ୍ଗରେ ବସନ୍ତ ହସ୍ତେ ତା'ର ତୀର-
ରୂପୀ ଆମ୍ରର ମୁକୁଳ ॥ ୬୪ ॥

***

(ଦ୍ୱିତୀୟ ସର୍ଗଃ ସମାପ୍ତ)

# ତୃତୀୟ ସର୍ଗଃ

## ଶ୍ଳୋକ-୧

ତସ୍ମିନ୍ମଘୋନସ୍ତ୍ରିଦଶାନ୍ୱିହାୟ
ସହସ୍ରମକ୍ଷ୍ଣାଂ ଯୁଗପତ୍ପପାତ ।
ପ୍ରୟୋଜନାପେକ୍ଷିତୟା ପ୍ରଭୁଣାଂ
ପ୍ରାୟଶ୍ଚଳଂ ଗୌରବମାଶ୍ରିତେଷୁ ॥ ୧ ॥

ଅନ୍ୱୟ - ମଘୋନଃ ଅକ୍ଷ୍ଣାଂ ସହସ୍ରଂ ତ୍ରିଦଶାନ୍ ବିହାୟ ତସ୍ମିନ୍ ଯୁଗପତ୍ ପପାତ । ପ୍ରାୟଃ ପ୍ରଭୁଣାମ୍ ଆଶ୍ରିତେଷୁ ଗୌରବଂ ପ୍ରୟୋଜନପେକ୍ଷିତୟା ଚଳଂ (ଭବତି) ।

ପଦ୍ୟାନୁବାଦ -

ଇନ୍ଦ୍ରଦେବ ଅନ୍ୟ ଦେବତାଙ୍କ ଭିନ୍ନ
ନିଜ ସହସ୍ର ନୟନେ
ଏକସଙ୍ଗେ ଦୃଷ୍ଟି କାମଦେବ ପରେ
ପକାଇଲେ ତତକ୍ଷଣେ ।
ସ୍ୱାମୀଙ୍କ ଦୃଷ୍ଟିରେ ସେବକ ମହତ୍ୱ
ସିନା ଏହି ଜଗତରେ
ହ୍ରାସ ଅବା ବୃଦ୍ଧି ହୋଇଥାଏ ପ୍ରାୟ
ପ୍ରୟୋଜନ ଅନୁସାରେ ॥ ୧ ॥

## ଶ୍ଳୋକ-୨

ସ ବାସବେନାସନସନ୍ନିକୃଷ୍ଟମ୍
ଇତଃ ନିଷୀଦେତି ବିସୃଷ୍ଟଭୂମିଃ ।
ଭର୍ତ୍ତୁଃ ପ୍ରସାଦଂ ପ୍ରତିନନ୍ଦ୍ୟ ମୂର୍ଦ୍ଧ୍ନା
ବକ୍ତୁଂ ମିଥଃ ପ୍ରାକ୍-ମତୈବମେନମ୍ ॥ ୨ ॥

ଅନ୍ୱୟ ସ ବାସବେନ ଆସନସନ୍ନିକୃଷ୍ଟମ୍ ଇତଃ ନିଷୀଦ ଇତି ବିସୃଷ୍ଟଭୂମିଃ ସନ୍ ଭର୍ତ୍ତୁଃ ପ୍ରସାଦଂ ମୂର୍ଦ୍ଧ୍ନା ବକ୍ତୁଂ ପ୍ରତିନନ୍ଦ୍ୟ ମିଥଃ ଏନମ୍ ଏବଂ ବକ୍ତୁଂ ପ୍ରାକ୍-ମତ ।

ପଦ୍ୟାନୁବାଦ -

ନିଜର ଆସନ ପାଶେ ଏକ ସ୍ଥାନ
ବ୍ୟବସ୍ଥା କରି ଦେବେଶ
ନିଜ ପାଶେ ଡାକି ବସିବା ପାଇଁକି
ସାଦରେ ଦେଲେ ନିର୍ଦ୍ଦେଶ ।
ସ୍ୱାମୀଙ୍କ ଆଦର ଦେଖି ସ୍ମର ଶିର
ନତ କରି ତାଙ୍କ ପାଶ
ଚଳି ଉପବିଶ ହୋଇଲେ ସେ ସ୍ଥାନେ
ଆରମ୍ଭିଲେ ନିଜ ଭାଷ ॥ ୨ ॥

## ଶ୍ଳୋକ- ୩

ଆଜ୍ଞାପୟ ଜ୍ଞାତବିଶେଷ ! ପୁଂସାଂ
ଲୋକେଷ୍ୱୁ ଯତ୍ତେ କରଣୀୟମସ୍ତି ।
ଅନୁଗ୍ରହଂ ସଂସ୍ମରଣପ୍ରବୃତ୍ତଂ
ଇଚ୍ଛାମି ସଂବର୍ଦ୍ଧିତମାଜ୍ଞୟା ତେ ॥ ୩ ॥

ଅନ୍ୱୟ ପୁଂସାଂ ଜ୍ଞାତବିଶେଷ ! ଆଜ୍ଞାପୟ, ଲୋକେଷୁ ତେ ଯତ୍ କରଣୀୟମ୍ ଅସ୍ତି ସଂସ୍ମରଣପ୍ରବୃତଂ ତେ ଅନୁଗ୍ରହଂ ଆଜ୍ଞୟା ସଂବର୍ଦ୍ଧିତମ୍ ଇଚ୍ଛାମି ।

ପଦ୍ୟାନୁବାଦ -

ପୁରୁଷର ଗୁଣ ଚିହ୍ନିବାର ଜ୍ଞାନ
ରଖିଅଛନ୍ତି ଆପଣ
ତ୍ରିଲୋକେ ଯେ କାର୍ଯ୍ୟ ମୋ ପାଇଁକି ଧାର୍ଯ୍ୟ
କରିବି ମୁହିଁ ପୂରଣ ।
ମୋ ନାମ ସ୍ମରଣ କରି କୃପାଦାନ
କରିଅଛନ୍ତି ଆପଣ
ସେ କୃପାର ବୃଦ୍ଧି ହୋଇବ ଅବଶ୍ୟ
କଲେ ମୁଁ ଆଜ୍ଞା ପାଳନ ॥ ୩ ॥

### ଶ୍ଲୋକ-୪

କେନାଽଭ୍ୟସୂୟା ପଦକାଙ୍କ୍ଷିଣା ତେ
ନିତାନ୍ତଦୀର୍ଘୈର୍ଜନିତା ତପୋଭିଃ ।
ଯାବଦ୍ଭବତ୍ୟାହିତସାୟକସ୍ୟ
ମତ୍କାର୍ମୁକସ୍ୟାଽସ୍ୟ ନିଦେଶବର୍ତ୍ତୀ ॥ ୪ ॥

ଅନ୍ୱୟ- ତେ ପଦକାଙ୍କ୍ଷିଣା କେନ ନିତାନ୍ତଦୀର୍ଘୈଃ ତପୋଭିଃ ଅଭ୍ୟସୂୟା ଜନିତା । ତଂ ବ୍ରୂହି, ଯତଃ ସ ଆହିତସାୟକସ୍ୟ ଅସ୍ୟ ମତ୍କାର୍ମୁକସ୍ୟ ନିଦେଶବର୍ତ୍ତୀ ଯାବତ୍ ଭବତି ।

ପଦ୍ୟାନୁବାଦ -

କିଏ ସେହି ବ୍ୟକ୍ତି କା'ର ତପଶକ୍ତି
ବଳେ ଆପଣଙ୍କ ସ୍ଥାନ
ପାଇବାକୁ ଇଚ୍ଛା କରିବାରୁ ଈର୍ଷା
ହୋଇଛି ମନେ ଉତ୍ପନ୍ନ ।
କୁହନ୍ତୁ ତା ନାମ କରିବି ମୁଁ କାମ
ସଜ୍ଜିତ ମୋ ଧନୁର୍ବାଣ
ହେବ ବଶୀଭୂତ ଅକ୍ଳେଶରେ ସେ ତ
ନାହିଁ ଚିନ୍ତାର କାରଣ ॥ ୪ ॥

### ଶ୍ଲୋକ -୫

ଅସମ୍ମତଃ କସ୍ତବ ମୁକ୍ତିମାର୍ଗ
ପୁନର୍ଭବକ୍ଲେଶଭୟାତ୍ପ୍ରପନ୍ନଃ।
ବଦ୍ଧଶ୍ଚିରଂ ତିଷ୍ଠତୁ ସୁନ୍ଦରୀଣାମ୍
ଆରେଚିତଭ୍ରୂଚତୁରୈଃ କଟାକ୍ଷୈଃ ॥ ୫

ଅନ୍ୱୟ- ତବ ଅସମ୍ମତଃ କଃ ପୁନର୍ଭବକ୍ଲେଶଭୟାତ୍ ମୁକ୍ତିମାର୍ଗ ପ୍ରପନଃ (ତଂ ବଦ୍, ଯତଃ ସଃ) ଆରେଚିତଭ୍ରୂଚତୁରୈଃ ସୁନ୍ଦରୀଣାମ୍ କଟାକ୍ଷୈଃ ବଦ୍ଧଃ ସନ୍ ଚିରଂ ତିଷ୍ଠତୁ।

ପଦ୍ୟାନୁବାଦ -

କିଏ ସେହି ବ୍ୟକ୍ତି ତବ ସହମତି
ବିନା ଏ ସଂସାର ପଥେ
ହୁଏ ଅଗ୍ରସର ମୋକ୍ଷ୍ୟ ପ୍ରାପ୍ତି ପାଇଁ
କୁହନ୍ତୁ ତା ନାମ ମୋତେ।
ସୁନ୍ଦରୀ ତରୁଣୀ ଭ୍ରୂଭଙ୍ଗୀରେ ହାଣି
ଦେବି ମୁହିଁ ତାକୁ ବାନ୍ଧି
ସେ ବନ୍ଧନୁ ମୁକ୍ତି ନୁହଁଇ ସମ୍ଭବ
ହେବ ଚିରଦିନ ବନ୍ଦୀ ॥ ୫ ॥

### ଶ୍ଲୋକ- ୬

ଅଧ୍ୟାପିତସ୍ୟୋଶନସାଽପି ନୀତିଂ
ପ୍ରଯୁକ୍ତରାଗପ୍ରଣିଧିର୍ଦ୍ୱିଷସ୍ତେ।
କସ୍ୟାଽର୍ଥଧର୍ମୌ ବଦ ପୀଡୟାମି
ସିନ୍ଧୋସ୍ତଟାବୋଘ ଇବ ପ୍ରବୃଦ୍ଧଃ ॥ ୬ ॥

ଅନ୍ୱୟ- ଉଶନସା ନୀତିମ୍ ଅଧ୍ୟାପିତସ୍ୟ ଅପି ତେ ଦ୍ୱିଷଃ କସ୍ୟ ଅର୍ଥଧର୍ମୌ ପ୍ରଯୁକ୍ତରାଗ-ପ୍ରଣିଧିଃ ଅହଂ ପ୍ରବୃଦ୍ଧଃ ଓଘଃ ସିନ୍ଧୋଃ ତଟୌ ଇବ ପୀଡୟାମି, ବଦ।

ପଦ୍ୟାନୁବାଦ -

କୁହ ହେ ଦେବେଶ କରିବି କି ନାଶ
ଅଛନ୍ତି କେ ଶତ୍ରୁ ତବ
କରିଥାନ୍ତୁ ପଛେ ଶୁକ୍ରାଚାର୍ଯ୍ୟଙ୍କଠୁ
ରାଜନୀତି ଜ୍ଞାନ ଲାଭ ।
ବେଗବତୀ ନଦୀ ଜଳସ୍ରୋତ ଯଥା
ତଟବନ୍ଧ କରେ ଭଗ୍ନ
ବିଷୟ ବାସନା ଦ୍ୱାରା ନାଶିବି ତା
ଧର୍ମ ଅର୍ଥ ଦୁଇ ଗୁଣ ॥ ୬ ॥

## ଶ୍ଳୋକ- ୭

କାମେକପତ୍ନୀବ୍ରତଦୁଃଖଶୀଳାଂ
ଲୋଲଂ ମନଶ୍ଚାରୁତୟା ପ୍ରବିଷ୍ଟାମ୍ ।
ନିତମ୍ବିନୀମିଛସି ମୁକ୍ତଲଜ୍ଜାଂ
କଣ୍ଠେ ସ୍ୱୟଂଗ୍ରାହନିଷକ୍ତବାହୁମ୍ ॥

ଅନ୍ୱୟ- ଏକପତ୍ନୀବ୍ରତଦୁଃଖଶୀଳାଂ ଚାରୁତୟାଂ ଲୋଲଂ ମନଃ ପ୍ରବିଷ୍ଟାମ କାଂ ନିତମ୍ବିନୀମ୍ ମୁକ୍ତଲଜ୍ଜାମ୍ ସତୀମ୍ କଣ୍ଠେ ସ୍ୱୟଂଗ୍ରାହନିଷକ୍ତବାହୁମ୍ଃ ଇଛସି ।

ପଦ୍ୟାନୁବାଦ -

ଦୃଢ ନୀତିନିଷ୍ଠା ଏକପତିବ୍ରତା
ନିତମ୍ବିନୀ କେହି ନାରୀ
ତା ସୌନ୍ଦର୍ଯ୍ୟପଣ ଦେଖି ତବ ମନ
ହୋଇଛି ଚଞ୍ଚଳ ଭାରି
ଏ କି ଇଛା ତବ ସେ ନାରୀ ଆସିବ
ହୋଇ ଅତି କାମାକୁଳ
ଲମ୍ବାଇ ସେ ଦେବ ତେଜି ଲଜ୍ଜା, ତବ
ଗଳେ ତା ବାହୁ ଯୁଗଳ ॥ ୭ ॥

## ଶ୍ଲୋକ -୮

କୟାସି କାମିନ୍! ସୁରତାପରାଧାତ୍
ପାଦାନତା କୋପନୟାଽବଧୂତଃ।
ତସ୍ୟାଃ କରିଷ୍ୟାମି ଦୃଢାନୁତାପଂ
ପ୍ରବାଳଶଯ୍ୟାଶରଣଂ ଶରୀରମ୍ ॥ ୮ ॥

ଅନ୍ୱୟ ହେ କାମିନ୍! ସୁରତାଽପରାଧାତ ପାଦାନତଃ ସନ୍ କୋପନୟା କୟା ଅବଧୂତଃ ଅସି, ତସ୍ୟାଃ ଶରୀରଂ ଦୃଢାନୁତାପଂ ପ୍ରବାଳଶଯ୍ୟାଶରଣଂ କରିଷ୍ୟାମି।

ପଦ୍ୟାନୁବାଦ -

କେ ନାରୀ ସେ ଜାଣି ସମ୍ଭୋଗ କାହାଣୀ
ଅନ୍ୟ ନାରୀ ସହ ତବ
ପଦାନତ ହୋଇ ଯେତେ ବୁଝାଇଲେ
ଶୁଣେନାହିଁ କଥା ତବ।
କରନ୍ତୁ ଆଦେଶ ଆହେ କାମୀଶ୍ରେଷ୍ଠ
କ୍ରୋଧିତା ସେ ନାରୀ ମନେ
ତୀବ୍ର ଅନୁତାପ କରିବି ଉତ୍ପନ୍ନ
ଶୋଇବ ପ୍ରବାଳାସନେ ॥ ୮ ॥

## ଶ୍ଲୋକ-୯

ପ୍ରସୀଦ ବିଶ୍ରାମ୍ୟତୁ ବୀର! ବଜ୍ରଂ
ଶରୈର୍ମଦୀୟୈଃ କତମଃ ସୁରାଽରିଃ।
ବିଭେତୁ ମୋଘୀକୃତବାହୁବୀର୍ଯ୍ୟଃ
ସ୍ତ୍ରୀଭ୍ୟୋଽପି କୋପସ୍ଫୁରିତାଽଧରାଭ୍ୟଃ ॥ ୯ ॥

ଅନ୍ୱୟ- ହେ ବୀର! ପ୍ରସୀଦ। ବଜ୍ରଂ ବିଶ୍ରମ୍ୟତୁ। ମଦୀୟୈଃ ଶରୈଃ ମୋଘୀକୃତବାହୁବୀର୍ଯ୍ୟଃ କତମଃ ସୁରାରିଃ କୋପସ୍ଫୁରିତାଽଧରାଭ୍ୟଃ ସ୍ତ୍ରୀଭ୍ୟଃ ଅପି ବିଭେତୁ।

ପଦ୍ୟାନୁବାଦ

କୁହନ୍ତୁ ଆପଣ ହୋଇଣ ପ୍ରସନ୍ନ
ବଜ୍ରକୁ ବିଶ୍ରାମ ଦେଇ
କିଏସେ ଏପରି ଦେବତାଙ୍କ ଅରି
ଚାହାଁନ୍ତି ମାରିବା ପାଇଁ।
ବାଣ ଦ୍ୱାରା ମୋର କରିବି ମୁଁ ତା'ର
ବାହୁବଳକୁ ବିଫଳ
କୋପେ ସ୍ଫୁରିତୋଷ୍ଠ ନାରୀକୁ ଦେଖି ବି
ହେବ ସେ ଭୟେ ବ୍ୟାକୁଳ ॥ ୯ ॥

## ଶ୍ଳୋକ-୧୦

ତବପ୍ରସାଦାତ୍କୁସୁମାୟୁଧୋଽପି
ସହାୟମେକଂ ମଧୁମେବ ଲବ୍ଧା।
କୁର୍ଯାମ୍ ହରସ୍ୟାଽପି ପିନାକପାଣେଃ
ଧୈର୍ଯ୍ୟଚ୍ୟୁତିଂ କେ ମମ ଧନ୍ୱିନୋଽନ୍ୟେ ॥ ୧୦ ॥

ଅନ୍ୱୟ - ତବ ପ୍ରସାଦାତ୍ କୁସୁମାୟୁଧୋଽପି (ଅହମ୍) ଏକଂ ମଧୁମ୍ ଏବ ସହାୟଂ ଲବ୍ଧା ପିନାକପାଣେଃ ହରସ୍ୟ ଅପି ଧୈର୍ଯ୍ୟଚ୍ୟୁତିଂ କୁର୍ଯାମ୍, ଅନ୍ୟେ ଧନ୍ୱିନଃ ମମ କେ।

ପଦ୍ୟାନୁବାଦ -

ମୋ ପ୍ରତି ପ୍ରସନ୍ନ ହୋଇଲେ ଆପଣ
ନେଇ ବସନ୍ତ ସାହାଯ୍ୟ
ମାରି ଫୁଲଶର କରିବି ଅଧୀର
ଭାଙ୍ଗିବି ଶିବଙ୍କ ଧୈର୍ଯ୍ୟ।
ପିନାକଧାରୀ ଯେ ଶିବ ଯେଉଁଠାରେ
ହରାନ୍ତି ନିଜର ଧୈର୍ଯ୍ୟ
ଅନ୍ୟ ଧନୁର୍ଦ୍ଧାରୀ ମାନଙ୍କର କଥା
ନୁହଁଇ ଅଟେ ବିଚାର୍ଯ୍ୟ ॥ ୧୦ ॥

## ଶ୍ଳୋକ-୧୧

ଅଥୋରୁଦେଶାଦବତାର୍ଯ୍ୟ ପାଦମ୍
ଆକ୍ରାନ୍ତିସମ୍ଭାବିତପାଦପୀଠମ୍।
ସଙ୍କଳ୍ପିତାଃର୍ଥେ ବିବୃତାତ୍ମଶକ୍ତିମ୍
ଆଖଣ୍ଡଳଃ କାମମିଦଂ ବଭାଷେ ॥ ୧୧ ॥

ଅନ୍ୱୟ - ଅଥ ଆଖଣ୍ଡଳଃ ଉରୁଦେଶାତ୍ ପାଦମ୍ ଆକ୍ରାନ୍ତିସମ୍ଭାବିତ ପାଦପୀଠମ୍ ଯଥା ସ୍ୟାତ୍ତଥା ଅବତାର୍ଯ୍ୟ ସଙ୍କଳ୍ପିତାଃର୍ଥେ ବିବୃତାତ୍ମଶକ୍ତି କାମମ୍ ଇଦଂ ବଭାଷେ।

ପଦ୍ୟାନୁବାଦ -

ଏକ ଜଙ୍ଘୁ ପାଦ ହଟାଇ ଦେବେନ୍ଦ୍ର
ରଖିଲେ ପାଦପୀଠରେ
ଦୁଇପାଦ ସ୍ପର୍ଶ ପାଇ ପାଦପୀଠ
ଗର୍ବ ଅନୁଭବ କରେ।
ସ୍ୱ ଶକ୍ତି ପ୍ରକଟ କରଣେ ସମର୍ଥ
ମନ୍ମଥଙ୍କୁ ମଘବାନ
ନିଜର ଅଭିଷ୍ଟ ବିଷୟରେ ସ୍ପଷ୍ଟ
କରି କହିଲେ ତତ୍କ୍ଷଣ ॥ ୧୧ ॥

## ଶ୍ଳୋକ -୧୨

ସର୍ବଂ ସଖେ ! ତ୍ୱୟ୍ୟୁପପନ୍ନମେତତ୍
ଉଭେ ମମାଃସ୍ତ୍ରେ କୁଳିଶଂ ଭବାଂଶ୍ଚ।
ବଜ୍ରଂ ତପୋବୀର୍ଯ୍ୟମହତ୍ସୁ କୁଣ୍ଠଂ
ତ୍ୱଂ ସର୍ବତୋଗାମି ଚ ସାଧକଂ ଚ ॥ ୧୨ ॥

ଅନ୍ୱୟ- ସଖେ ! ସର୍ବମ୍ ଏତତ୍ ତ୍ୱୟି ଉପପନ୍ନମ୍। ମମ କୁଳିଶଂ ଭବାନ୍ ଚ ଉଭେ ଅସ୍ତ୍ରେ। ବଜ୍ରଂ ତପୋବୀର୍ଯ୍ୟମହତ୍ସୁ କୁଣ୍ଠଂ, ତ୍ୱଂ ସର୍ବତୋଗାମି ଚ ସାଧକଂ ଚ।

ପଦ୍ୟାନୁବାଦ -

ହେ ମିତ୍ର ମନ୍ମଥ କହିଛ ଯା ସତ
ନିଜ ବିଷୟରେ ତୁମେ
ହେଲେ ମୋର ପାଶ ଅଛି ଦୁଇ ଅସ୍ତ୍ର
ଏକ ବଜ୍ର ଅନ୍ୟ ତୁମେ ।
ତପବଳେ ବଳି ଲୋକଙ୍କ ସମ୍ମୁଖେ
ବଜ୍ର ମୋର ହୀନବଳ
ତେଣୁ ଏହି କାର୍ଯ୍ୟ ବଜ୍ର ଦ୍ୱାରା କେବେ
ହୋଇବ ନାହିଁ ସଫଳ ।
କିନ୍ତୁ ଆହେ ମିତ୍ର ତୁମର ସର୍ବତ୍ର
ଅଛି ଅକ୍ଲେଶେ ପ୍ରବେଶ
ତେଣୁ ତୁମ ଦ୍ୱାରା ଏ କାର୍ଯ୍ୟ ସାଧନ
ହୋଇ ପାରିବ ଅବଶ୍ୟ ॥ ୧୨ ॥

**ଶ୍ଳୋକ- ୧୩**

ଅବୈମି ତେ ସାରମତଃ ଖଲୁ ତ୍ୱାଂ
କାର୍ଯ୍ୟେ ଗୁରୁଣ୍ୟାତ୍ମସମଂ ନିୟୋକ୍ଷ୍ୟେ ।
ବ୍ୟାଦିଶ୍ୟତେ ଭୂଧରତାମବେକ୍ଷ୍ୟ
କୃଷ୍ଣେନ ଦେହୋଦ୍ୱହନାୟ ଶେଷଃ ॥ ୧୩ ॥

ଅନ୍ୱୟ - ହେ ସଖେ ! ତେ ସାରମ୍ ଅବୈମି । ଅତଃ ଖଲୁ ଆତ୍ମସମଂ ତ୍ୱାଂ ଗୁରୁଣି କାର୍ଯ୍ୟେ ନିୟୋକ୍ଷ୍ୟେ । କୃଷ୍ଣେନ ଭୂଧରତାମ୍ ଅବେକ୍ଷ୍ୟ ଶେଷଃ ଦେହଦ୍ୱହନାୟ ବ୍ୟାଦିଶ୍ୟତେ ।

ପଦ୍ୟାନୁବାଦ

ଆହେ ମୋର ମିତ୍ର ତୁମର ସାମର୍ଥ୍ୟ
ଭଲଭାବେ ମୁଁ ଜାଣିଛି
ସ୍ୱ ସମାନ ଭାବି ଗୁରୁ କାର୍ଯ୍ୟ ଏକ
ତୁମକୁ ସମର୍ପିଅଛି ।

ଶେଷନାଗଙ୍କର ଧରଣୀର ଭାର
ବହନ କ୍ଷମତା ଜାଣି
ସ୍ୱୟଂ ନାରାୟଣ ନିଜ ଅଙ୍ଗଭାର
ବୋହିବାକୁ ଦେଲେ ପୁଣି ॥ ୧୩ ॥

## ଶ୍ଳୋକ-୧୪

ଆଶଂସତା ବାଣଗତିଂବୃଷାଙ୍କେ
କାର୍ଯ୍ୟଂ ତ୍ୱୟା ନଃ ପ୍ରତିପନ୍ନକଳ୍ପମ୍।
ନିବୋଧ ଯଜ୍ଞାଂଶଭୂଜାମିଦାନୀମ୍
ଉଚ୍ଚୈର୍ଦ୍ୱିଷାମୀପ୍ସିତମେତଦେବ ॥ ୧୪ ॥

ଅନ୍ୱୟ - ବୃଷାଙ୍କେ ବାଣଗତିମ୍ ଆଶଂସତା ତ୍ୱୟା ନଃ କାର୍ଯ୍ୟଂ ପ୍ରତିପନ୍ନକଳ୍ପମ୍। ଇଦାନୀମ୍ ଉଚ୍ଚୈଦ୍ୱିଷାଂ ଯଜ୍ଞାଂଶଭୂଜାମ୍ ଈପ୍ସିତମ୍ ଏତତ୍ ଏବ ନିବୋଧ।

ପଦ୍ୟାନୁବାଦ -

ଶଙ୍କରଙ୍କ ପ୍ରତି ତୁମ ବାଣ ଗତି
ବର୍ଣ୍ଣନାରୁ ଅନୁମେୟ
ଆମ୍ଭର ଅଭୀଷ୍ଟ କାର୍ଯ୍ୟ ସଂପାଦିତ
ହେବ ନାହିଁ ଟି ସଂଶୟ।
ବଳବାନ ଶତ୍ରୁଠାରୁ ପାଇ ପୀଡା
ଅଛନ୍ତି ଯେ ଦେବଗଣ
ଏହିପରି ତୁମ ଦ୍ୱାରା କାର୍ଯ୍ୟମାନ
କରାଇଥାନ୍ତି ସମ୍ପନ୍ନ ॥ ୧୪ ॥

## ଶ୍ଳୋକ- ୧୫

ଅମୀ ହି ବୀର୍ଯ୍ୟପ୍ରଭବଂ ଭବସ୍ୟ
ଜୟାୟ ସେନାନ୍ୟମୁଶନ୍ତି ଦେବାଃ।
ସ ଚ ତ୍ୱଦେକେଷୁନିପାତସାଧ୍ୟୋ
ବ୍ରହ୍ମାଙ୍ଗଭୂର୍ବ୍ରହ୍ମଣି ଯୋଜିତାତ୍ମା ॥ ୧୫ ॥

ଅନ୍ୱୟ -  ହି ଅମୀ ଦେବାଃ ଜୟାୟ ଭବସ୍ୟ ବୀର୍ଯପ୍ରଭବଂ ସେନାନ୍ୟମ୍ ଉଶନ୍ତି।
ବ୍ରହ୍ମାଙ୍ଗଭୂଃ ବ୍ରହ୍ମଣି ଯୋଜିତାତ୍ମା ସ ଚ ତ୍ୱଦେକେଷୁ ନିପାତସାଧ୍ୟଃ ଅସ୍ତି।

ପଦ୍ୟାନୁବାଦ -

ଏ ସର୍ବ ଦେବତା       ହେବାକୁ ବିଜେତା
ଶିବଙ୍କ ବୀର୍ଯ୍ୟ ସମ୍ଭୂତ
ପୁତ୍ର ଏକ ସେନା-       ପତି ରୂପେ ମନେ
ଭାବିଛନ୍ତି ହେବେ ପ୍ରାପ୍ତ।
ବ୍ରହ୍ମାଙ୍କଠୁ ସୃଷ୍ଟ       ଭଗବାନ ଶିବ
ଏକାଳେ ତପସ୍ୟାରତ
ଏଣୁ ଆହେ ସ୍ମର       ବିନ୍ଧି ଫୁଲଶର
କର ତାଙ୍କୁ ବିଚଳିତ ॥ ୧୫ ॥

### ଶ୍ଲୋକ-୧୬

ତସ୍ମୈ ହିମାଦ୍ରେଃ ପ୍ରୟତାଂ ତନୁଜାଂ
ଯତାତ୍ମନେ ରୋଚୟିତୁଂ ଯତସ୍ୱ।
ଯୋଷିତ୍ସୁ ତଦ୍ୱୀର୍ଯନିଷେକଭୂମିଃ
ସୈବ କ୍ଷମେତ୍ୟାତ୍ମଭୁବୋପଦିଷ୍ଟମ୍ ॥ ୧୬ ॥

ଅନ୍ୱୟ -  ଯତାତ୍ମନେ ତସ୍ମୈ ପ୍ରୟତାଂ ହିମାଦ୍ରେଃ ତନୁଜାଂ ରୋଚୟିତୁଂ ଯତସ୍ୱ।
ଯୋଷିତ୍ସୁ ତଦ୍ୱୀର୍ଯନିଷକଭୂମିଃ ସା ଏବ କ୍ଷମା, ଇତି ଆତ୍ମଭୂବା ଉପଦିଷ୍ଟମ୍।

ପଦ୍ୟାନୁବାଦ -

ଏଣୁ ବର୍ତ୍ତମାନ       କରନ୍ତୁ ପ୍ରଯତ୍ନ
ହେ ମୋର ମିତ୍ର ମନ୍ମଥ
ସଂଯମୀ ପାର୍ବତୀ       ପ୍ରତି ଶିବଙ୍କର
ମନ ହେଉ ଆକର୍ଷିତ।

ବିଧାତାଙ୍କ ବାଣୀ ନାହାଁନ୍ତି ରମଣୀ
ପାର୍ବତୀଙ୍କ ବିନା କେହି
ଶିବଙ୍କର ବୀର୍ଯ୍ୟ ଧାରଣର ଯୋଗ୍ୟା
କେବଳ ଅଟନ୍ତି ସେହି ॥ ୧୬ ॥

### ଶ୍ଳୋକ-୧୭

ଗୁରୋର୍ନିୟୋଗାଚ୍ଚ ନଗେନ୍ଦ୍ରକନ୍ୟା
ସ୍ଥାଣୁଂ ତପସ୍ୟନ୍ତମଧିତ୍ୟକାୟାମ୍ ।
ଅନ୍ୱାସ୍ତ ଇତ୍ୟପ୍ସରସାଂ ମୁଖେଭ୍ୟଃ
ଶ୍ରୁତଂ ମୟା ମତ୍ପ୍ରଣିଧିଃ ଚ ବର୍ଗଃ ॥ ୧୭ ॥

ଅନ୍ୱୟ - ନଗେନ୍ଦ୍ରକନ୍ୟା ଚ ଗୁରୋଃ ନିୟୋଗାତ୍ ଅଧିତ୍ୟକାୟାଂ ତପସ୍ୟନ୍ତଂ ସ୍ଥାଣୁଂ ଅନ୍ୱାସ୍ତେ, ଇତି ମୟା ଅପ୍ସରସାଂ ମୁଖେଭ୍ୟଃ ଶ୍ରୁତଂ, ସ ବର୍ଗଃ ମତ୍ପ୍ରଣିଧିଃ ଅସ୍ତି ।

ପଦ୍ୟାନୁବାଦ -

ଏ କାଳେ ପାର୍ବତୀ ପିତାଙ୍କ ଆଦେଶେ
ହିମାଦ୍ରି ଶିଖରେ ରହି
ତପସ୍ୟାରେ ରତ ଶିବଙ୍କର ସେବା
କରୁଛନ୍ତି ମନଦେଇ ।
ମୋର ଗୁପ୍ତଚର ମୁଖରୁ ଖବର
ଶୁଣିଅଛି ମୁଁ ଏମନ୍ତ
ତେଣୁ ଆହେ ମିତ୍ର ଏ ଖବର ସତ୍ୟ
ଏଥିରେ ନାହିଁ ଦ୍ୱିମତ ॥ ୧୭ ॥

### ଶ୍ଳୋକ-୧୮

ତଦ୍ ଗଚ୍ଛ ସିଦ୍ଧ୍ୟୈ କୁରୁ ଦେବକାର୍ଯ୍ୟମ୍
ଅର୍ଥୋଽୟମର୍ଥାନ୍ତରଭାବ୍ୟ ଏବ ।
ଅପେକ୍ଷତେ ପ୍ରତ୍ୟୟମୁତ୍ତମଂ ତ୍ୱାଂ
ବୀଜାଙ୍କୁରଃ ପ୍ରାଗୁଦୟାଦିବାମ୍ଭଃ ॥ ୧୮ ॥

ଅନ୍ୱୟ - ତତ୍ ସିଦ୍ଧୟେ ଗଚ୍ଛ । ଦେବକାର୍ଯ୍ୟଂ କୁରୁ । ଅୟମ୍ ଅର୍ଥଃ ଅର୍ଥାନ୍ତରଭାବ୍ୟ ଏବ । ବୀଜାଙ୍କୁରଃ ଉଦୟାତ୍ ପ୍ରାକ୍ ଅମ୍ଭ ଇବ ତ୍ୱାମ୍ ଉତ୍ତମଂ ପ୍ରତ୍ୟୟମ୍ ଅପେକ୍ଷତେ ।

ପଦ୍ୟାନୁବାଦ -

ହେ ମିତ୍ର ମନ୍ମଥ ସମୟ ଉଚିତ
କର ଏ କାର୍ଯ୍ୟ ସାଧନ
ଦିନେ ନା ଦିନେ ଯା ହୋଇଥାନ୍ତା ପୂର୍ଣ୍ଣ
ଏବେ ତା କର ସଂପନ୍ନ ।
ବୀଜର ଅଙ୍କୁର ପାଇଁ ଯେହ୍ନେ ନୀର
ହୋଇଥାଏ ଦରକାର
ହର ପାର୍ବତୀଙ୍କ ପାଇଁ ସେହି କାର୍ଯ୍ୟ
କରୁ ତୁମ ଫୁଲଶର ॥ ୧୮ ॥

## ଶ୍ଳୋକ -୧୯

ତସ୍ମିନ୍ନୁରାଣାଂ ବିଜୟାଭ୍ୟୁପାୟେ
ତଦେବ ନାମାସ୍ତ୍ରଗତିଃ କୃତୀ ତ୍ୱମ୍ ।
ଅପ୍ୟପ୍ରସିଦ୍ଧଂ ଯସସେ ହି ପୁଂସାମ୍
ଅନନ୍ୟସାଧାରଣମେବ କର୍ମ ॥ ୧୯ ॥

ଅନ୍ୱୟ - ସୁରାଣାମ୍ ବିଜୟାଽଭ୍ୟୁପାୟେ ତସ୍ମିନ୍ ଅସ୍ତ୍ରଗତିଃ ତବ ଏବ ନାମ; ଅତଃ ତ୍ୱଂ କୃତୀ । ହି ଅପ୍ରସିଦ୍ଧମ୍ ଅପି ଅନନ୍ୟସାଧାରଣମ୍ ଏବ କର୍ମ ପୁଂସାଂ ଯସସେ ଭବତି ।

ପଦ୍ୟାନୁବାଦ -

ଦେବଙ୍କ ବିଜୟ ପାଇଁକି ଉପାୟ
ମାନଙ୍କରେ ତୁମ ବାଣ
କେବଳ ସଫଳ ହୋଇପାରେ ବୋଲି
କରାଯାଏ ଅନୁମାନ ।

ଯେଉଁ କାର୍ଯ୍ୟ କେହି କରିପାରନ୍ତିନି
ବଡ ହେଉ ଅବା ସାନ
ଅରଜଇ ଯଶ ଏଇ ସେ ମଣିଷ
କରି ସେ କାର୍ଯ୍ୟ ସାଧନ ॥ ୧୯ ॥

## ଶ୍ଳୋକ-୨୦

ସୁରାଃ ସମଭ୍ୟର୍ଥୟିତାର ଏତେ
କାର୍ଯଂ ତ୍ରୟାଣାମପି ବିଷ୍ଟପାନାମ୍।
ଋପେନ ତେ କର୍ମ ନ ଋଽତିହିଂସ୍ରମ୍
ଅହୋ ! ବତାଽସି ସ୍ପୃହଣୀୟବୀର୍ଯଃ ॥ ୨୦ ॥

ଅନ୍ୱୟ - ଏତେ ସୁରାଃ ସମଭ୍ୟର୍ଥୟିତାରଃ କାର୍ଯଂ ତ୍ରୟାଣାମ୍ ଅପି ବିଷ୍ଟପାନାମ୍। କର୍ମ ତେ ଋପେନ, ଅତିହିଂସ୍ରଞ୍ଚ ନ। ଅହୋ ! ବତ। ସ୍ପୃହଣୀୟବୀର୍ଯଃ ଅସି।

ପଦ୍ୟାନୁବାଦ -

ତୁମ୍ଭକୁ ସମସ୍ତ ଦେବତା ମିଳିତ
ହୋଇ କରନ୍ତି ପ୍ରାର୍ଥନା
ଏ କାର୍ଯ୍ୟ କେବଳ ନୁହେଁ ଦେବଙ୍କର
ତିନି ଲୋକର କାମନା।
ତୁମ ବାଣେ ଏହି କାର୍ଯ୍ୟ ହେବ ସିଦ୍ଧ
ନୁହେଁ ତା ପ୍ରାଣ ଘାତକ
ତେଣୁ ତୁମ ଶକ୍ତି ଦେଖି ବି କାହାର
ହେବନି ଈର୍ଷା ଉଦ୍ରେକ ॥ ୨୦ ॥

## ଶ୍ଳୋକ-୨୧

ମଧୁଶ୍ଚ ତେ ମନ୍ମଥ ! ସାହଚର୍ଯାତ୍
ଅସୌ ଅନୁକ୍ତୋଽଅପି ସହାୟ ଏବ।
ସମୀରଣ ନୋଦୟିତା ଭବେତି
ବ୍ୟାଦିଶ୍ୟତେ କେନ ହୁତାଽଶନସ୍ୟ ॥ ୨୧ ॥

ଅନ୍ୱୟ -  ହେ ମନ୍ମଥ ! ଅସୌ ମଧୁଶ୍ଚ ତେ ସାହଚର୍ଯାତ୍ ଅନୁକ୍ତୋଽପି ସହାୟ ଏବ (ଅସ୍ତି)।
'ସମୀରଣଃ ହୁତାଶନସ୍ୟ ନୋଦୟିତା ଭବ' ଇତି କେନ ବ୍ୟାଦିଶ୍ୟତେ।

ପଦ୍ୟାନୁବାଦ -

ଦେବତାଙ୍କ ବିନା ଅନୁରୋଧେ ମଧ
ତୁମର ବନ୍ଧୁ ବସନ୍ତ
ଏ କାର୍ଯ୍ୟରେ ତୁମ ସହାୟତା ପାଇଁ
ସମ୍ପୂର୍ଣ୍ଣ ରୂପେ ପ୍ରସ୍ତୁତ।
କେବେ କଣ କେହି ବାୟୁକୁ କହଇ
ଯିବା ପାଇଁ ଅଗ୍ନି ପାଶ
ତୁମେ ସେହିପରି ବିନ୍ଧି ତୁମ ବାଣ
ଶିବଙ୍କୁ କର ବିବଶ ॥ ୨୧ ॥

### ଶ୍ଳୋକ- ୨୨

ତଥେତି ଶେଷାମିବ ଭର୍ତୁରାଜ୍ଞାମ୍
ଆଦାୟ ମୁର୍ଦ୍ଧ୍ନା ମଦନଃ ପ୍ରତସ୍ଥେ।
ଐରାବତାସ୍ଫାଳନକର୍କଶେନ
ହସ୍ତେନ ପସ୍ପର୍ଶ ତଦଙ୍ଗମିନ୍ଦ୍ରଃ ॥ ୨୨ ॥

ଅନ୍ୱୟ -  ତଥା ଇତି ଭର୍ତ୍ତୁଃ ଶେଷାମ୍ ଇବ ଆଜ୍ଞାଂ ମୂର୍ଦ୍ଧ୍ନା ଆଦାୟ ମଦନଃ ପ୍ରତସ୍ଥେ।
ଇନ୍ଦ୍ରଃ ହସ୍ତେନ ତଦଙ୍ଗମ୍ ପସ୍ପର୍ଶ।

ପଦ୍ୟାନୁବାଦ -

ଯାହା ଆଜ୍ଞା ନାଥ କହିଣ ମନ୍ମଥ
ମଥା କରି ଅବନତ
ସ୍ୱାମୀଙ୍କ ଆଜ୍ଞାକୁ ମାଳା ମଣି ମନେ
ପ୍ରସ୍ଥାନ କଲେ ତୁରିତ।

ହସ୍ତୀକୁ ଅଙ୍କୁଶ ?ମାରିଣ କର୍କଶ
ହୋଇଛି ଇନ୍ଦ୍ରଙ୍କ ହସ୍ତ
ମନ୍ମଥଙ୍କ ପିଠି ଥାପୁଡେଇ ତାଙ୍କ
ମନକୁ କଲେ ଆଶ୍ୱସ୍ତ ॥ ୨୨ ॥

**ଶ୍ଳୋକ- ୨୩**

ସ ମାଧବେନାଽଭିମତେନ ସଖ୍ୟା
ରତ୍ୟା ଚ ସାଶଙ୍କମନୁପ୍ରୟାତଃ।
ଅଙ୍ଗବ୍ୟୟପ୍ରାର୍ଥିତକାର୍ଯ୍ୟସିଦ୍ଧିଃ
ସ୍ଥାଣ୍ୱାଶ୍ରମଂ ହୈମବତଂ ଯଗାମ ॥ ୨୩ ॥

ଅନ୍ୱୟ - ସ ଅଭିମତେନ ସଖ୍ୟା ମାଧବେନ ରତ୍ୟା ଚ ସାଶଂକମ୍ ଅନୁପ୍ରୟାତଃ ସନ୍ ଅଙ୍ଗବ୍ୟୟପ୍ରାର୍ଥିତକାର୍ଯ୍ୟସିଦ୍ଧିଃ ହୈମବତଂ ସ୍ଥାଣ୍ୱାଶ୍ରମଂ ଯଗାମ।

ପଦ୍ୟାନୁବାଦ -

ନିଜ ପ୍ରିୟ ମିତ୍ର ବସନ୍ତ ଓ ପ୍ରିୟା
ରତିଙ୍କୁ ନେଇ ସହିତ
ହିମାଦ୍ରି ଶିଖରେ ଶିବ ଆଶ୍ରମକୁ
ପ୍ରସ୍ଥାନ କଲେ ମନ୍ମଥ।
ଆତଙ୍କିତ ଚିତ୍ତ କଲେ ସେ ନିଶ୍ଚିତ
କରିବେ କାର୍ଯ୍ୟ ସାଧନ
ଆସୁ ପଛେ ବାଧା ମନେ ନାହିଁ ଦ୍ୱିଧା
ଦେବାପାଇଁ ନିଜ ପ୍ରାଣ ॥ ୨୩ ॥

**ଶ୍ଳୋକ-୨୪**

ତସ୍ମିନ୍ୱନେ ସଂଯମିନାଂ ମୁନିନାଂ
ତପଃସମାଧେଃ ପ୍ରତିକୂଳବର୍ତ୍ତୀ।
ସଙ୍କଳ୍ପଯୋନେରଭିମାନଭୂତମ୍
ଆତ୍ମାନମାଧାୟ ମଧୁର୍ଜଜୃମ୍ଭେ ॥ ୨୪ ॥

ଅନ୍ୱୟ - ତସ୍ମିନ ବନେ ସଂଯମିନାଂ ମୁନିନାଂ ତପଃ ସମାଧେଃ ପ୍ରତିକୂଳବର୍ତୀ ସଙ୍କଳ୍ପଯୋନେଃ ଅଭିମାନଭୂତମ୍ ଆତ୍ମାନମ୍ ଆଧାୟ ଜଜୃମ୍ଭେ ।

ପଦ୍ୟାନୁବାଦ -

ସମାଧିରେ ମଗ୍ନ ମୁନିଙ୍କର ମନ
ବିରୋଧୀ ଋତୁ ବସନ୍ତ
ଶଙ୍କରଙ୍କ ତପୋ- ବନେ ଅପରୂପ
ଶୋଭା କରିଛି ପ୍ରକଟ
ତପୋବନ ଶୋଭା ଅତି ମନଲୋଭା
ହରଇ ସବୁରି ମନ
ଏ ଶୋଭା ଦର୍ଶନେ ମଦନର ମନେ
ଜାଗେ ବଡ ଅଭିମାନ ॥ ୨୪ ॥

**ଶ୍ଳୋକ-୨୫**

କୁବେରଗୁପ୍ତାଂ ଦିଶମୁଷ୍ଣରଶ୍ମୌ
ଗନ୍ତୁଂ ପ୍ରବୃତ୍ତେ ସମୟଂ ବିଲଙ୍ଘ୍ୟ ।
ଦିଗ୍ଦକ୍ଷିଣା ଗନ୍ଧବହଂ ମୁଖେନ
ବ୍ୟଲୀକନିଶ୍ୱାସମିବୋତ୍ସସର୍ଜ ॥ ୨୫ ॥

ଅନ୍ୱୟ - ଉଷ୍ଣରଶ୍ମୌ ସମୟଂ ବିଲଙ୍ଘ୍ୟ କୁବେରଗୁପ୍ତାଂ ଦିଶଂ ଗନ୍ତୁଂ ପ୍ରବୃତ୍ତେ ସତି ଦକ୍ଷିଣା ଦିକ୍ ମୁଖେନ ଗନ୍ଧବହଂ ବ୍ୟଲୀକନିଶ୍ୱାସମ୍ ଇବ ଉତ୍ସସର୍ଜ ।

ପଦ୍ୟାନୁବାଦ

ସମୟ ନିୟମ କରି ବେନିୟମ
ସହସା ଦେବ ତପନ
ଛାଡ଼ି ଦକ୍ଷିଣାଶା କୁବେର ରକ୍ଷିତା
ଉତ୍ତରେ କଲେ ଗମନ

ପ୍ରେମିକ ବଞ୍ଚନ ଦେଖିଣ ଦକ୍ଷିଣ
ଦୁଃଖେ ଛାଡେ ଦୀର୍ଘ ଶ୍ୱାସ
ସେ ନିଶ୍ୱାସ ବାତ ମଳୟ ମରୁତ
ରୂପେ ବହେ ଚତୁଃପାର୍ଶ୍ୱ ॥ ୨୫ ॥

### ଶ୍ଲୋକ-୨୬

ଅସୂତ ସଦ୍ୟଃ କୁସୁମାନ୍ୟଶୋକଃ
ସ୍କନ୍ଧାତ୍‌ପ୍ରଭୃତ୍ୟେବ ସପଲ୍ଲବାନି ।
ପାଦେନ ନାପୈକ୍ଷତ ସୁନ୍ଦରୀଣାଂ
ସମ୍ପର୍କମାସିଞ୍ଜିତନୂପୁରେଣ ॥ ୨୬ ॥

ଅନ୍ୱୟ - ଅଶୋକଃ ସଦ୍ୟଃ ସ୍କନ୍ଧାତ୍ ପ୍ରଭୃତି ଏବ ସପଲ୍ଲବାନି କୁସୁମାନି ଅସୂତ ଅସିଞ୍ଜିତନୂପୁରେଣ ସୁନ୍ଦରୀଣାଂ ପାଦେନ ସମ୍ପର୍କଂ ଅପୈକ୍ଷତ ।

ପଦ୍ୟାନୁବାଦ -

ଅକାଳେ ବସନ୍ତ ହୁଅନ୍ତେ ଆଗତ
ଅଶୋକ ଫୁଲ ହର୍ଷିତ
ତନୁଠାରୁ ଶାଖା ପର୍ଯ୍ୟନ୍ତ ସର୍ବାଙ୍ଗେ
ପୁଷ୍ପ ସହ ପଲ୍ଲବିତ ।
ଏପାଇଁ ଧ୍ୱନିତ ନୂପୁରେ ଭୂଷିତ
ସୁନ୍ଦରୀ ରମଣୀ ପଦ
ସ୍ପର୍ଶ କରିବାକୁ ଅପେକ୍ଷା ନକରି
ବସନ୍ତ ପ୍ରେମେ ଆନନ୍ଦ ॥ ୨୬ ॥

### ଶ୍ଲୋକ-୨୭

ସଦ୍ୟଃ ପ୍ରବାଳୋଦ୍‌ଗମଚାରୁପତ୍ରେ
ନୀତେ ସମାପ୍ତିଂ ନବଚୂତବାଣେ ।
ନିବେଶୟାମାସ ମଧୁର୍ଦ୍ୱିରେଫାନ୍
ନାମାକ୍ଷରାଣୀବ ମନୋଭବସ୍ୟ ॥ ୨୭ ॥

ଅନ୍ୱୟ - ମଧୁଃ ପ୍ରବାଳୋଦ୍ଗମଚାରୁପତ୍ରେ ନବଚୂତବାଣେ ସମାପ୍ତିଂ ନୀତେ ସତୀ
ସଦ୍ୟଃ ମନୋଭବସ୍ୟ ନାମାକ୍ଷରାଣି ଇବ ଦ୍ୱିରେଫାନ୍ ନିବେଶୟାମାସ ।

ପଦ୍ୟାନୁବାଦ

ନବୋଦ୍ଗମ ଚୂତ ପଲ୍ଲବ ସହିତ
ନେଇ ନବୀନ ମଞ୍ଜରୀ
ମନ୍ମଥର ମିତ୍ର ଋତୁ ସେ ବସନ୍ତ
କରିଛି ତୀର ତିଆରି ।
ନବୀନ ପଲ୍ଲବ ପକ୍ଷ ରୂପେ ଶୋଭା
ପାଉଛନ୍ତି ସେ ତୀରର
ଭ୍ରମର ରୂପକ ଅକ୍ଷରେ ଲେଖିଛି
ନାମ ତହିଁରେ ସ୍ମରର ॥ ୨୭ ॥

**ଶ୍ଳୋକ-୨୮**

ବର୍ଣ୍ଣପ୍ରକର୍ଷେ ସତି କର୍ଣ୍ଣିକାରେ
ଦୁନୋତି ନିର୍ଗନ୍ଧତୟା ସ୍ମ ଚେତଃ ।
ପ୍ରାୟେଣ ସାମଗ୍ର୍ୟବିଧୌ ଗୁଣାନାଂ
ପରାଙ୍-ମୁଖୀ ବିଶ୍ୱସୃଜଃ ପ୍ରବୃତ୍ତିଃ ॥ ୨୮ ॥

ଅନ୍ୱୟ - କର୍ଣ୍ଣିକାରଂ ବର୍ଣ୍ଣପ୍ରକର୍ଷେ ସତି ନିର୍ଗନ୍ଧତୟା ଚେତଃ ଦୁନୋତି ସ୍ମ ।
ପ୍ରାୟେଣ ବିଶ୍ୱସୃଜଃ ପ୍ରବୃତ୍ତିଃ ଗୁଣାନାଂ ସାମଗ୍ର୍ୟବିଧୌ ପରାଙ୍ମୁଖୀ ଭବତି ।

ପଦ୍ୟାନୁବାଦ -

କର୍ଣ୍ଣିକାର ପୁଷ୍ପ ରଙ୍ଗ ଅପରୂପ
ହେଲେ ନାହିଁ ତା ସୁଗନ୍ଧ
ତେଣୁ ସହୃଦୟ ଦର୍ଶକ ମନରେ
ଭରି ଦେଇଥାଏ ଖେଦ ।

ବିଧାତା ବିଚିତ୍ର କରେନି ଏକତ୍ର
ଏକସ୍ଥାନେ ସର୍ବଗୁଣ
ସୃଷ୍ଟିରେ ସେ ପାଇଁ ନାହାନ୍ତି ବି କେହି
ସର୍ବଗୁଣରେ ସମ୍ପନ୍ନ ॥ ୨୮ ॥

## ଶ୍ଳୋକ-୨୯

ବାଲେନ୍ଦୁବକ୍ରାଣ୍ୟବିକାସଭାବାତ୍
ବଭୁଃ ପଳାଶାନ୍ୟତିଲୋହିତାନି ।
ସଦ୍ୟୋ ବସନ୍ତେନ ସମାଗତାନାଂ
ନଖକ୍ଷତାନୀବ ବନସ୍ଥଳୀନାମ୍ ॥ ୨୯ ॥

ଅନ୍ୱୟ - ଅବିକାସଭାବାତ୍ ବାଲେନ୍ଦୁବକ୍ରାଣି ଅତିଲୋହିତାନି ପଳାଶାନି ବସନ୍ତେନ ସମାଗତାନାଂ ବନସ୍ଥଳୀନାଂ ସଦ୍ୟଃ ନଖକ୍ଷତାନି ଇବ ବଭୁଃ ।

ପଦ୍ୟାନୁବାଦ -

ଅର୍ଦ୍ଧ-ବିକଶିତ ଅତ୍ୟନ୍ତ ଲୋହିତ
ପଳାଶ ପୁଷ୍ପ ଆକୃତି
ଦିଶୁଥିଲେ ବକ୍ର ଦିଶଇ ଯେମନ୍ତ
ଚନ୍ଦ୍ରମା ଦ୍ୱିତୀୟା ତିଥି ।
ଲାଗେ ଏହି ଦୃଶ୍ୟ ବସନ୍ତ-ପୁରୁଷ
ରମିଛି ସ୍ତ୍ରୀ-ରୂପୀ ବନ
ସେ ପାଇଁ ତା ଅଙ୍ଗେ ଦିଶେ ସ୍ଥାନେ ସ୍ଥାନେ
ସଦ୍ୟ ନଖ କ୍ଷତ ଚିହ୍ନ ॥ ୨୯ ॥

## ଶ୍ଳୋକ -୩୦

ଲଗ୍ନଦ୍ୱିରେଫାଞ୍ଜନଭକ୍ତିଚିତ୍ରଂ
ମୁଖେ ମଧୁଶ୍ରୀସ୍ତିଳକଂ ପ୍ରକାଶ୍ୟ ।
ରାଗେଣ ବାଳାଽରୁଣକୋମଳେନ
ଚୂତପ୍ରବାଳୋଷ୍ଠମଳଞ୍ଚକାର ॥ ୩୦ ॥

ଅନ୍ୱୟ -  ମଧୁଶ୍ରୀଃ ଲଗ୍ନଦ୍ୱିରେଫାଞ୍ଜନଭକ୍ତିଚିତ୍ରଂ ତିଳକଂ ମୁଖେ ପ୍ରକାଶ୍ୟ
ବାଳାଽରୁଣକୋମଳେନ ରାଗେଣ ଚୂତପ୍ରବାଳୋଽଷ୍ଠ ଅଳଙ୍କାର।

ପଦ୍ୟାନୁବାଦ

ବସନ୍ତର ଶୋଭା          ସାଜିଛି ନାୟିକା
ମୁଖଲଗ୍ନା ଅଳିକୁଳ
ଅଳି ରୂପୀ କଳା          ଅଞ୍ଜନେ ରଞ୍ଜିତ
ହୋଇଛି ତିଳକ ଫୁଲ।
ସେ ତିଳକ ଫୁଲ          ତା ମଥା ତିଳକ
ରୂପେ ପାଉଅଛି ଶୋଭା
ତାମ୍ର ବର୍ଣ୍ଣ କମ୍ର          ନବ ଆମ୍ର ପତ୍ର
ଓଷ୍ଠ ପ୍ରାୟ ମନଲୋଭା ॥ ୩୦ ॥

**ଶ୍ଳୋକ-୩୧**

ମୃଗାଃ ପ୍ରିୟାଳଦ୍ରୁମମଞ୍ଜରୀଣାଂ
ରଜଃକଣୈର୍ବିଘ୍ନିତଦୃଷ୍ଟିପାତାଃ।
ମଦୋଦ୍ଧତାଃ ପ୍ରତ୍ୟନିଳଂ ବିଚେରୁଃ
ବନସ୍ଥଳୀର୍ମର୍ମରପତ୍ରମୋକ୍ଷାଃ ॥ ୩୧ ॥

ଅନ୍ୱୟ -  ପ୍ରିୟାଳଦ୍ରୁମମଞ୍ଜରୀଣାଂ ରଜଃକଣୈଃ ବିଘ୍ନିତଦୃଷ୍ଟିପାତାଃ ମଦୋଦ୍ଧତାଃ
ମୃଗାଃ ପ୍ରତ୍ୟନିଳଂ ମର୍ମରପତ୍ରମୋକ୍ଷାଃ ବନସ୍ଥଳୀଃ ବିଚେରୁଃ।

ପଦ୍ୟାନୁବାଦ -

ଚରକୋଳି ବୃକ୍ଷ          ପୁଷ୍ପର ପରାଗ
ପବନରେ ଉଡି ଉଡି
ମୃଗମାନଙ୍କର          ଦୃଷ୍ଟିରେ ବ୍ୟାଘାତ
କରୁଥିଲା ନେତ୍ରେ ପଡି।

ଦୃଷ୍ଟିରେ ବ୍ୟାଘାତ ହେତୁ ମୃଗଯୂଥ
ବାୟୁ ବିପରୀତ ଦିଗେ
ମଦମତ୍ତ ହୋଇ ଧାଉଁଥିଲେ ଭୟେ
ସେହି ଉପବନଭାଗେ।
ଭୂମିରେ ପତିତ ବୃକ୍ଷ ଶୁଷ୍କପତ୍ର
ମୃଗଯୂଥ ପଦସ୍ପର୍ଶେ
ମର୍ମର ଶବଦ ହେଉଥିଲା ଜାତ
ସମଗ୍ର ବନ ପ୍ରଦେଶେ ।। ୩୧ ।।

## ଶ୍ଳୋକ-୩୨

ଚୂତାଙ୍କୁରାସ୍ୱାଦକଷାୟକଣ୍ଠଃ
ପୁଂସ୍କୋକିଳୋ ଯନ୍ମଧୁରଂ ଚୂକୂଜ।
ମନସ୍ୱିନୀମାନବିଘାତଦକ୍ଷଂ
ତଦେବ ଜାତଂ ବଚନଂ ସ୍ମରସ୍ୟ ।। ୩୨ ।।

ଅନ୍ୱୟ - ଚୂତାଙ୍କୁରାସ୍ୱାଦକଷାୟକଣ୍ଠଃ ପୁଂସ୍କୋକିଳଃ ଯତ୍ ମଧୁରଂ ଚୂକୂଜ, ତଦ୍ ଏବ ମନସ୍ୱିନୀମାନବିଘାତଦକ୍ଷଂ ସ୍ମରସ୍ୟ ବଚନଂ ଜାତମ୍।

ପଦ୍ୟାନୁବାଦ -

ରସାଳ ମୁକୁଳ ଭକ୍ଷି ପୁଂସ୍କୋକିଳ
କଷାୟ ତାହାର କଣ୍ଠ
ତା'ର କୁହୁ ସ୍ୱର କରଇ ଅଧୀର
ଭାଙ୍ଗେ ମାନିନୀଙ୍କ ଆଣ୍ଠ।
ମାନିନୀଙ୍କ ମାନ ଭଞ୍ଜନେ ନିପୁଣ
କାମଦେବଙ୍କ ବଚନ
ପରି ଶୁଭୁଥିଲା କୋକିଳର ତାନ
ହରି ମାନିନୀଙ୍କ ମନ ।। ୩୨ ।।

### ଶ୍ଳୋକ-୩୩

ହିମବ୍ୟପାୟାଦ୍ୱିଶଦାଽଧରାଣାମ୍
ଆପାଣ୍ଡରୀଭୂତମୁଖଚ୍ଛବୀନାମ୍ ।
ସ୍ୱେଦୋଦ୍ଗମଃ କିମ୍ପୁରୁଷାଙ୍ଗନାନାଂ
ଚକ୍ରେ ପଦଂ ପତ୍ରାବିଶେଷକେଷୁ ।। ୩୩ ।।

ଅନ୍ୱୟ - ହିମବ୍ୟପାୟାତ୍ ବିଶଦାଽଧରାଣାମ୍ ଆପାଣ୍ଡରୀଭୂତମୁଖଚ୍ଛବୀନାମ୍ କିମ୍ପୁରୁଷାଽଙ୍ଗନାନାଂ ପତ୍ରବିଶେଷକେଷୁ ସ୍ୱେଦୋଦ୍ଗମଃ ପଦଂ ଚକ୍ରେ ।

ପଦ୍ୟାନୁବାଦ -

ଶୀତଋତୁ ଅତି- ବାହିତ ହୁଅନ୍ତେ
କିନ୍ନରୀ ରମଣୀଙ୍କର
କୋମଳ ନିର୍ମଳ ଅଧର ସହିତ
ମୁଖ ଦିଶେ ମନୋହର ।
ଉତ୍ତାପ ଜନିତ ଶରୀରୁ ନିସୃତ
ସ୍ୱେଦବିନ୍ଦୁମାନ ବହି
କପୋଳେ ଅଙ୍କିତ ପତ୍ରଲେଖ ଚିତ୍ର
ରଙ୍ଗକୁ ନେଇଛି ବୋହି ।। ୩୩ ।।

### ଶ୍ଳୋକ-୩୪

ତପସ୍ୱିନଃ ସ୍ଥାଣୁବନୌକସ୍ତାମ୍
ଆକାଳିକୀଂ ବୀକ୍ଷ୍ୟ ମଧୁପ୍ରବୃତ୍ତିମ୍ ।
ପ୍ରଯତ୍ନସଂସ୍ତଭିତବିକ୍ରିୟାଣାଂ
କଥଞ୍ଚିଦୀଶା ମନସାଂ ବଭୂବୁଃ ।। ୩୪ ।।

ଅନ୍ୱୟ - ସ୍ଥାଣୁବନୌକସ୍ତାମାକାଳିକୀଂ ମଧୁପ୍ରବୃତ୍ତି ବୀକ୍ଷ୍ୟ ପ୍ରଯତ୍ନସଂସ୍ତଭିତବିକ୍ରିୟାଣାଂ ମନସାଂ କଥଞ୍ଚିତ୍ ଈଶାଃ ବଭୂବୁଃ ।

ପଦ୍ୟାନୁବାଦ -

ଶିବାଶ୍ରମେ ସ୍ଥିତ ତପସ୍ୱୀ ସମସ୍ତ
ଅକାଳେ ଦେଖି ବସନ୍ତ
ମନରେ ଉଦ୍ଭୂତ ବିକାର ସମସ୍ତ
କଷ୍ଟେ କଲେ ବଶୀଭୂତ ॥ ୩୪ ॥

## ଶ୍ଳୋକ-୩୫

ତଂ ଦେଶମାରୋପିତପୁଷ୍ପଚାପେ
ରତିଦ୍ୱିତୀୟେ ମଦନେ ପ୍ରପନ୍ନେ।
କାଷ୍ଠାଗତସ୍ନେହରସାଽନୁବିଦ୍ଧଂ
ଦ୍ୱନ୍ଦ୍ୱାନି ଭାବଂ କ୍ରିୟୟା ବିବବ୍ରୁଃ ॥ ୩୫ ॥

ଅନ୍ୱୟ - ଆରୋପିତପୁଷ୍ପଚାପେ ରତିଦ୍ୱିତୀୟେ ମଦନେ ତଂ ଦେଶଂ ପ୍ରପନ୍ନେ ସତି ଦ୍ୱନ୍ଦ୍ୱାନି କାଷ୍ଠାଗତସ୍ନେହରସାଽନୁବିଦ୍ଧଂ ଭାବଂ କ୍ରିୟୟା ବିବବ୍ରୁଃ। ୩୫

ପଦ୍ୟାନୁବାଦ -

ଯେ କାଳେ ଅତନୁ ଧରି ପୁଷ୍ପଧନୁ
ରତି ଓ ବସନ୍ତ ସଙ୍ଗେ
ଶିବଙ୍କ ଆଶ୍ରମେ ପ୍ରବେଶ କରିଲେ
ପ୍ରେମାପ୍ଳୁତ ଅନୁରାଗେ।
ସେକାଳେ ସମସ୍ତ ଆଶ୍ରମରେ ସ୍ଥିତ
ପ୍ରାଣୀ ଯୁଗଳଙ୍କ ମନ
ପ୍ରେମରସେ ପୂର୍ଣ୍ଣ ହୋଇବାରୁ ରତି
କ୍ରୀଡାରେ ହୋଇଲେ ମଗ୍ନ ॥ ୩୫ ॥

## ଶ୍ଳୋକ-୩୬

ମଧୁ ଦ୍ୱିରେଫଃ କୁସୁମୈକପାତ୍ରେ
ପପୌ ପ୍ରିୟାଂ ସ୍ୱାମନୁବର୍ତ୍ତମାନଃ।

ଶୃଙ୍ଗେଣ ଚ ସ୍ପର୍ଶନିମୀଳିତାକ୍ଷୀଂ
ମୃଗୀମକଣ୍ଡୂୟତ କୃଷ୍ଣସାରଃ ॥ ୩୬ ॥

ଅନ୍ୱୟ - ଦ୍ୱିରେଫଃ କୁସୁମୈକପାତ୍ରେ ମଧୁ ସ୍ୱାଂ ପ୍ରିୟାମ୍ ଅନୁବର୍ତ୍ତମାନଃ ସନ୍ ପପୌ।
କୃଷ୍ଣସାରଃ ଚ ସ୍ପର୍ଶନିମୀଳିତାକ୍ଷୀଂ ମୃଗୀଂ ଶୃଙ୍ଗେଣ ଅକଣ୍ଡୂୟତ।

ପଦ୍ୟାନୁବାଦ -

ସ୍ୱ ପ୍ରିୟା ଭ୍ରମରୀ ପଥ ଅନୁସରି
ଏକ ଫୁଲେ ଦୁହେଁ ବସି
ସେ ଫୁଲରୁ ମଧୁ ପାନକଲେ ଦୁହେଁ
ଏକ ସଙ୍ଗେ ଶୋଷି ଶୋଷି।
ପ୍ରିୟ ଅଙ୍ଗ ସ୍ପର୍ଶ ପାଇ ମୃଗୀ ହର୍ଷ
ଠିଆ ନିମୀଳିତ ନେତ୍ର
ମୃଗ କୃଷ୍ଣସାର ଶିଙ୍ଗରେ ମୃଗୀର
କୁଣ୍ଡାଉଥିଲା ଶରୀର ॥ ୩୬ ॥

### ଶ୍ଳୋକ-୩୭

ଦଦୌ ରସାତ୍ପଙ୍କଜରେଣୁଗନ୍ଧି
ଗଜାୟ ଗଣ୍ଡୂଷଜଳଂ କରେଣୁଃ।
ଅର୍ଦ୍ଧୋପଭୁକ୍ତେନ ବିସେନ ଜାୟାଂ
ସମ୍ଭାବୟାମାସ ରଥାଙ୍ଗନାମା ॥ ୩୭ ॥

ଅନ୍ୱୟ - ରସାତ୍ କରେଣୁଃ ପଙ୍କଜରେଣୁଗନ୍ଧି ଗଣ୍ଡୂଷଜଳଂ ଗଜାୟ ଦଦୌ।
ରଥାଙ୍ଗନାମା ଅର୍ଦ୍ଧୋପଭୁକ୍ତେନ ବିସେନ ଜାୟାଂ ସମ୍ଭାବୟାମାସ।

ପଦ୍ୟାନୁବାଦ -

ସ୍ନେହରସାପ୍ଲୁତ ହସ୍ତିନୀ ସମସ୍ତ
ଶୁଣ୍ଢରେ ନେଇଣ ନୀର

ପିଆଇଲେ ନିଜ ପ୍ରିୟତମ ହସ୍ତୀ
ମାନଙ୍କୁ ହୋଇ ବିଭୋର ।
ସେ ଜଳ କମଳ ପରାଗ ରେଣୁରେ
ହୋଇଗଲା ସୁଗନ୍ଧିତ
ବସନ୍ତ ଆଗମ ଦେଖି ହସ୍ତିନୀଏ
ହୋଇଗଲେ ପ୍ରେମାପ୍ଲୁତ ।
ଚକ୍ରବାକ ନିଜ ପ୍ରିୟା ଚକ୍ରବାକୀ
ପାଇଁ ପଦ୍ମନାଡମାନ
ଚାଖି ଚାଖି ଦେଉ- ଥିଲା ତା ପ୍ରିୟାକୁ
କରିବା ପାଇଁ ପ୍ରସନ୍ନ ॥ ୩୭ ॥

## ଶ୍ଳୋକ- ୩୮

ଗୀତାନ୍ତରେଷୁ ଶ୍ରମବାରିଲେଶୈଃ
କିଞ୍ଚିତ୍ସମୁଚ୍ଛ୍ୱାସିତପତ୍ରଲେଖମ୍ ।
ପୁଷ୍ପାସବାଘୂର୍ଣ୍ଣିତନେତ୍ରଶୋଭି
ପ୍ରିୟାମୁଖଂ କିମ୍ପୁରୁଷଶ୍ଚୁଚୁମ୍ବେ ॥ ୩୮ ॥

ଅନ୍ୱୟ - କିମ୍ପୁରୁଷଃ ଗୀତାନ୍ତରେଷୁଃ ଶ୍ରମବାରିଲେଶୈଃ କିଞ୍ଚିତ୍ସମୁଚ୍ଛ୍ୱାସିତପତ୍ରଲେଖମ୍ ପୁଷ୍ପାସବାଘୂର୍ଣ୍ଣିତନେତ୍ରଶୋଭି ପ୍ରିୟାମୁଖଂ ଚୁଚୁମ୍ବେ ।

ପଦ୍ୟାନୁବାଦ -

କିନ୍ନରୀଙ୍କ ମୁଖେ ଥିବୁ ଚିତ୍ରଲେଖି
ଘର୍ମୋଦକେ ବିଘଟିତ
ପୁଷ୍ପାସବ ପାନ ହେତୁ ଲାଲବର୍ଣ୍ଣ
ନେତ୍ର ଦିଶେ ସୁଶୋଭିତ ।
ସୁଶୋଭିତ ମୁଖ ଦେଖି କିଂପୁରୁଷ
ମଝିରୁ ଛାଡି ଗାୟନ
ନିଜ ନିଜ ପ୍ରିୟ- ତମା କିନ୍ନରୀଙ୍କ
ମୁଖେ ଆଙ୍କିଲେ ଚୁମ୍ବନ ॥ ୩୮ ॥

## ଶ୍ଳୋକ-୩୯

ପର୍ଯାପ୍ତପୁଷ୍ପସ୍ତବକସ୍ତନାଭ୍ୟଃ
ସ୍ଫୁରତ୍‌ପ୍ରବାଳୋଷ୍ଠମନୋହରାଭ୍ୟଃ ।
ଲତାବଧୂଭ୍ୟସ୍ତରବୋଽପ୍ୟବାପୁଃ
ବିନମ୍ର ଶାଖାଭୁଜବନ୍ଧନାନି ॥ ୩୯ ॥

ଅନ୍ୱୟ - ତରବଃ ଅପି ପର୍ଯାପ୍ତପୁଷ୍ପସ୍ତବକସ୍ତନାଭ୍ୟଃ ସ୍ଫୁରତ୍‌ପ୍ରବାଳୋଷ୍ଠମନୋହରାଭ୍ୟଃ ଲତାବଧୂଭ୍ୟଃ ବିନମ୍ର ଶାଖାଭୁଜବନ୍ଧନାନି ଅବାପୁଃ ।

ପଦ୍ୟାନୁବାଦ -

ଲତିକାବଧୂଙ୍କ ପେନ୍ଥା ପେନ୍ଥା ଫୁଲ
ଦିଶୁଥିଲା ସ୍ତନ ପରି
ସ୍ଫୁରିତ ପ୍ରବାଳ ଦିଶୁଥିଲା ସତେ
ଓଷ୍ଠ ଅତି ମନୋହାରୀ ।
ଭୁଜ ରୂପୀ ନିଜ ବିନମ୍ର ଶାଖାକୁ
ପ୍ରସାରି ପାଦପଗଣ
ମନୋହାରୀ ସେହି ଲତିକା ବଧୂଙ୍କୁ
କରୁଥିଲେ ଆଲିଙ୍ଗନ ॥ ୩୯ ॥

## ଶ୍ଳୋକ-୪୦

ଶ୍ରୁତାପ୍ସରୋଗୀତିରପି କ୍ଷଣେଽସ୍ମିନ୍
ହରଃ ପ୍ରସଂଖ୍ୟାନପରୋ ବଭୂବ ।
ଆତ୍ମେଶ୍ୱରାଣାଂ ନ ହି ଜାତୁ ବିଘ୍ନାଃ
ସମାଧିଭେଦପ୍ରଭବୋ ଭବନ୍ତି ॥ ୪୦ ॥

ଅନ୍ୱୟ - ଅସ୍ମିନ୍ କ୍ଷଣେ ହରଃ ଶ୍ରୁତାପ୍ସରୋଗୀତିଃ ଅପି ପ୍ରସଂଖ୍ୟାନପରୋ ବଭୂବ । ଆତ୍ମେଶ୍ୱରାଣାଂ ବିଘ୍ନାଃ ଜାତୁ ସମାଧିଭେଦପ୍ରଭବଃ ନ ଭବନ୍ତି ।

ପଦ୍ୟାନୁବାଦ -

ଅପ୍ସରାଙ୍କ ଗୀତ ଶିବଙ୍କର ଚିତ୍ତ
କଲାନାହିଁ ପ୍ରଭାବିତ
ଗୀତ ଶୁଣି ମଧ୍ୟ ତପସ୍ୟାରେ ଶିବ
ରହିଥିଲେ ସମାଧିସ୍ଥ ।
ଇନ୍ଦ୍ରିୟଙ୍କୁ ବଶ କରେ ଯେ ପୁରୁଷ
ସଦା ସ୍ଥିର ତାଙ୍କ ଚିତ୍ତ
ଚିତ୍ତକ୍ଷୋଭକାରୀ ବସ୍ତୁମାନେ କରି
ପାରନ୍ତିନି ବିଚଳିତ ॥ ୪୦ ॥

### ଶ୍ଳୋକ-୪୧

ଲତାଗୃହଦ୍ୱାରଗତୋଽଥ ନନ୍ଦୀ
ବାମପ୍ରକୋଷ୍ଠାର୍ପିତହେମବେତ୍ରଃ ।
ମୁଖାର୍ପିତୈକାଙ୍ଗୁଳିସଂଜ୍ଞୟୈବ ମା
ଚାପଳାୟେତି ଗଣାନ୍ ବ୍ୟନୈଷୀତ୍ ॥ ୪୧ ॥

ଅନ୍ୱୟ - ଅଥ ଲତାଗୃହଦ୍ୱାରଗତଃ ବାମପ୍ରକୋଷ୍ଠାର୍ପିତହେମବେତ୍ରଃ ନନ୍ଦୀ ମୁଖାର୍ପିତୈକାଙ୍ଗୁଳିସଂଜ୍ଞୟା ଏବ ଗଣାନ୍ 'ଚାପଳାୟ ମା ଭବତ' ଇତି ବ୍ୟନୈଷୀତ୍ ।

ପଦ୍ୟାନୁବାଦ -

ବାମ ହସ୍ତେ ସ୍ୱର୍ଣ୍ଣ ଦଣ୍ଡକୁ ଧାରଣ
କରି ଶିବଗଣ ନନ୍ଦୀ
ଲତାମଣ୍ଡପର ଦ୍ୱାର ପାଶେ ରହି
ସୂଚନ୍ତି ଗଣେ ସମ୍ବୋଧି ।
ମୁଖରେ ଅଙ୍ଗୁଳି ରଖିକରି ନନ୍ଦୀ
ଦେଲେ ଗଣଙ୍କୁ ସୂଚନା
ଅନ୍ୟ ପ୍ରାଣୀ ସମ ଚପଳ ହେବାକୁ
ତୁରିତ କରିଲେ ମନା ॥ ୪୧ ॥

## ଶ୍ଲୋକ-୪୨

ନିଷ୍କମ୍ପବୃକ୍ଷଂ ନିଭୃତଦ୍ୱିରେଫଂ
ମୂକାଣ୍ଡଜଂ ଶାନ୍ତମୃଗପ୍ରଚାରମ୍।
ତଚ୍ଛାସନାତ୍କାନନମେବ ସର୍ବଂ
ଚିତ୍ରାର୍ପିତାରମ୍ଭମିବାବତସ୍ଥେ ॥ ୪୨ ॥

ଅନ୍ୱୟ - ନିଷ୍କମ୍ପବୃକ୍ଷଂ ନିଭୃତଦ୍ୱିରେଫଂ ମୂକାଣ୍ଡଜଂ ଶାନ୍ତମୃଗପ୍ରଚାରମ୍ ସର୍ବଂ ଏବ କାନନଂ ତଚ୍ଛାସନାତ୍ ଚିତ୍ରାର୍ପିତାରମ୍ଭମ୍ ଇବ ଅବତସ୍ଥେ।

ପଦ୍ୟାନୁବାଦ -

ଆଦେଶେ ସଂକେତ ପାଇ ବୃକ୍ଷ ପତ୍ର
ହେଲେନାହିଁ ଆନ୍ଦୋଳିତ
ଭ୍ରମର ତତ୍-କ୍ଷଣ ତେଜିଲେ ଗୁଞ୍ଜନ
କୂଜନୁ ପକ୍ଷୀ ବିରତ।
ବନ୍ୟ ପଶୁଗଣ ବନେ ବିଚରଣ
କରିବାରୁ ହେଲେ କ୍ଷାନ୍ତ
ନିରବ ନିଶ୍ଚଳ ସାରା ବନସ୍ଥଳ
ଚିତ୍ର ପ୍ରାୟ ପ୍ରତିଭାତ ॥ ୪୨ ॥

## ଶ୍ଲୋକ-୪୩

ଦୃଷ୍ଟିପ୍ରପାତଂ ପରିହୃତ୍ୟ ତସ୍ୟ
କାମଃ ପୁରଃଶୁକ୍ରମିବ ପ୍ରୟାଣେ।
ପ୍ରାନ୍ତେଷୁ ସଂସକ୍ତନମେରୁଶାଖଂ
ଧ୍ୟାନାସ୍ପଦଂ ଭୂତପତେର୍ବିବେଶ ॥ ୪୩ ॥

ଅନ୍ୱୟ - କାମଃ ପ୍ରୟାଣେ ପୁରଃଶୁକ୍ରଂ(ଦେଶମ୍) ଇବ ତସ୍ୟ ଦୃଷ୍ଟିପ୍ରପାତଂ ପରିହୃତ୍ୟ ପ୍ରାନ୍ତେଷୁ ସଂସକ୍ତନମେରୁଶାଖଂ ଭୂତପତେଃ ଧ୍ୟାନାସ୍ପଦଂ ବିବେଶ।

ପଦ୍ୟାନୁବାଦ -

ନାଗେଶ୍ୱର ବୃକ୍ଷ- ରାଜି ଦ୍ୱାରା ଘେରା
ଶିବ ସମାଧି-ମଣ୍ଡପ
ନନ୍ଦୀଙ୍କ ଦୃଷ୍ଟିକୁ ଏଡାଇ ସେଠାରେ
ପହଞ୍ଚିଗଲେ କନ୍ଦର୍ପ ।
ଯାତ୍ରାକାଳେ ଯାତ୍ରୀ ଯାଆନ୍ତି ଯେପରି
ଶୁକ୍ର ଦୃଷ୍ଟିକୁ ଏଡାଇ
କନ୍ଦର୍ପ ସେପରି ପହଞ୍ଚିଲେ ତହିଁ
ନନ୍ଦୀ ଦୃଷ୍ଟିକୁ ଏଡାଇ ॥ ୪୩ ॥

## ଶ୍ଳୋକ-୪୪

ସ ଦେବଦାରୁଦ୍ରୁମବେଦିକାୟାଂ
ଶାର୍ଦ୍ଦୂଳଚର୍ମବ୍ୟବଧାନବତ୍ୟାମ୍ ।
ଆସୀନମାସନ୍ନଶରୀରପାତଃ
ତ୍ରିୟମ୍ବକଂ ସଂଯମିନଂ ଦଦର୍ଶ ॥ ୪୪ ॥

ଅନ୍ୱୟ - ଆସନ୍ନଶରୀରପାତଃ ସ ଶାର୍ଦ୍ଦୂଳଚର୍ମବ୍ୟବଧାନବତ୍ୟାମ୍ ଦେବଦାରୁଦ୍ରୁମ-ବେଦିକାୟାମ୍ ଆସୀନଂ ସଂଯମିନଂ ତ୍ରିୟମ୍ବକ ଦଦର୍ଶ ।

ପଦ୍ୟାନୁବାଦ -

ଦେବଦାରୁ ବୃକ୍ଷ ଛାୟା ତଳେ ସ୍ଥିତ
ବେଦୀ ପରେ ତ୍ରିଲୋଚନ
ବ୍ୟାଘ୍ରଚର୍ମ ପାତି ଗଭୀର ତପରେ
ହୋଇଅଛନ୍ତି ସେ ମଗ୍ନ
ଅଳ୍ପ କିଛି କ୍ଷଣ ପରେ ଯା ମରଣ
ହେବ ସେହି କାମଦେବ
ଦେଖିଲେ ଗଭୀର ତପସ୍ୟାରେ ମଗ୍ନ
ରହିଛନ୍ତି ମହାଦେବ ॥ ୪୪ ॥

## ଶ୍ଳୋକ -୪୫

ପର୍ଯ୍ୟଙ୍କବନ୍ଧସ୍ଥିରପୂର୍ବକାୟମ୍
ଋଜ୍ୱାୟତଂ ସନ୍ନମିତୋଭୟାଂସମ୍ ।
ଉତ୍ତାନପାଣିଦ୍ୱୟସନ୍ନିବେଶାତ୍
ପ୍ରଫୁଲ୍ଲରାଜୀବମିବାଙ୍କମଧ୍ୟେ ।। ୪୫ ।।

ଅନ୍ୱୟ - ପର୍ଯ୍ୟଙ୍କବନ୍ଧସ୍ଥିରପୂର୍ବକାୟମ୍ ଋଜ୍ୱାୟତଂ ସନ୍ନମିତୋଭୟାଂସମ୍ ଉତ୍ତାନପାଣିଦ୍ୱୟ ସନ୍ନିବେଶାତ୍ ଅଙ୍କମଧ୍ୟେ ପ୍ରଫୁଲ୍ଲରାଜୀବମ୍ ଇବ ସ୍ଥିତଂ ଦଦର୍ଶେତି ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

ପୂର୍ବାର୍ଦ୍ଧ ଶରୀର — କରି ସିଧା ସ୍ଥିର
ବୀରାସନେ ତ୍ରିଲୋଚନ
ସ୍କନ୍ଧ ସ୍ୱଳ୍ପାନତ — କୋଳେ ରଖି ହସ୍ତ
କରିଥିଲେ ଅବସ୍ଥାନ ।
କୋଳେସ୍ଥିତ ହସ୍ତ — ଅଙ୍ଗୁଳିର ଅଗ୍ର
କରିଥିଲେ ଉର୍ଦ୍ଧ୍ୱମୁଖ
ପ୍ରସ୍ଫୁଟିତ ପଦ୍ମ — ପ୍ରାୟ ଦିଶୁଥିଲା
ନୟନ ସୁଖଦାୟକ ।। ୪୫ ।।

## ଶ୍ଳୋକ-୪୬

ଭୁଜଙ୍ଗମୋନ୍ନଦ୍ଧଜଟାକଳାପଂ
କର୍ଣ୍ଣାବସକ୍ତଦ୍ୱିଗୁଣାକ୍ଷସୂତ୍ରମ୍ ।
କଣ୍ଠପ୍ରଭାସଙ୍ଗବିଶେଷନୀଳାଂ
କୃଷ୍ଣତ୍ୱଚଂ ଗ୍ରନ୍ଥିମତୀଂ ଦଧାନମ୍ ।। ୪୬ ।।

ଅନ୍ୱୟ - ଭୁଜଙ୍ଗମୋନ୍ନଦ୍ଧଜଟାକଳାପଂ କର୍ଣ୍ଣାବସକ୍ତଦ୍ୱିଗୁଣାକ୍ଷସୂତ୍ରମ୍ କଣ୍ଠପ୍ରଭାସଙ୍ଗବିଶେଷନୀଳାଂ ଗ୍ରନ୍ଥିମତୀଂ କୃଷ୍ଣତ୍ୱଚଂ ତଂ ଦଦର୍ଶତି ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

ଶିବଙ୍କର ଜଟା ସର୍ପ ଦ୍ୱାରା ବନ୍ଧା
ହୋଇ ଥିଲା ଉର୍ଦ୍ଧ୍ୱମୁଖ
କର୍ଣ୍ଣ ଯୁଗଳରୁ ଝୁଲି ରହିଥିଲା
ଦ୍ୱିଗୁଣ ମାଳା ରୁଦ୍ରାକ୍ଷ।
କଟିଦେଶେ ଗଣ୍ଠି ଦେଇ ପିନ୍ଧିଥିଲେ
ବସ୍ତ୍ର ରୂପେ ମୃଗଛାଲ
କଣ୍ଠୁ ନୀଳ ରଙ୍ଗ ପ୍ରତିଫଳନରେ
ମୃଗଚର୍ମ ଦିଶେ ନୀଳ ॥ ୪୬ ॥

## ଶ୍ଳୋକ-୪୭

କିଞ୍ଚିତ୍‌ପ୍ରକାଶସ୍ତିମିତୋଗ୍ରତାରୈଃ
ଭ୍ରୂବିକ୍ରିୟାୟାଂ ବିରତପ୍ରସଙ୍ଗୈଃ।
ନେତ୍ରୈରବିସ୍ପନ୍ଦିତପକ୍ଷ୍ମମାଳୈଃ
ଲକ୍ଷ୍ୟୀକୃତଘ୍ରାଣମଧୋମୟୂଖୈଃ ॥ ୪୭ ॥

ଅନ୍ୱୟ - କିଞ୍ଚିତ୍‌ପ୍ରକାଶସ୍ତିମିତୋଗ୍ରତାରୈଃ ଭ୍ରୂବିକ୍ରିୟାୟାଂ ବିରତପ୍ରସଙ୍ଗୈଃ ଅବିସ୍ପନ୍ଦିତପକ୍ଷ୍ମମାଳୈଃ ଅଧୋମୟୂଖୈଃ ନେତ୍ରୈଃ ଲକ୍ଷ୍ୟୀକୃତଘ୍ରାଣଂ ତଂ ଦଦର୍ଶେତି ପୂର୍ବେଣାନ୍ୱୟଃ।

ପଦ୍ୟାନୁବାଦ -

ଈଷତ୍ ଦୀପ୍ତିଯୁକ୍ତ ତ୍ରିନେତ୍ର ପିତୁଳା
ସ୍ଥିର କରି ତ୍ରିଲୋଚନ
ଭ୍ରୂଲତା ସହିତ ନେତ୍ର ପକ୍ଷ୍ମମାନ
କରିଥିଲେ କ୍ରିୟାହୀନ।
ତ୍ରିନେତ୍ରରୁ ଦୃଷ୍ଟି ନିମ୍ନମୁଖୀ ହୋଇ
ନାସାଗ୍ରେ ଥିଲା ନିବଦ୍ଧ
ନିମ୍ନଭାଗେ ଶୀଘ୍ର ଦୃଷ୍ଟି ଚଳନାରେ
ନେତ୍ରମାନେ ଥିଲେ ସିଦ୍ଧ ॥ ୪୭ ॥

## ଶ୍ଳୋକ-୪୮

ଅବୃଷ୍ଟିସଂରମ୍ଭମିବାମ୍ବୁବାହମ୍
ଅପାମିବାଧାରମନୁତ୍ତରଙ୍ଗମ୍ ।
ଅନ୍ତଶ୍ଚରାଣାଂ ମରୁତାଂ ନିରୋଧାତ୍
ନିବାତନିଷ୍କମ୍ପମିବ ପ୍ରଦୀପମ୍ ॥ ୪୮ ॥

ଅନ୍ୱୟ - ଅନ୍ତଶ୍ଚରାଣାଂ ମରୁତାଂ ନିରୋଧାତ୍ ଅବୃଷ୍ଟିସଂରମ୍ଭମ୍ ଅମ୍ବୁବାହମ୍ ଇବ (ସ୍ଥିତମ୍) ଅନୁତ୍ତରଙ୍ଗମ୍ ଅପାମ୍ ଆଧାରମ୍ ଇବ (ସ୍ଥିତମ୍) ନିବାତନିଷ୍କମ୍ପମ୍ ପ୍ରଦୀପମ୍ ଇବ(ସ୍ଥିତମ୍) ତଂ ଦଦର୍ଶେତି ପୂର୍ବଶ୍ଳୋକେନାନ୍ୱୟଃ ।

ପଦ୍ୟାନୁବାଦ -

ଯେପରି କେ ଅଭ୍ର- ଖଣ୍ଡ ନୁହେଁ ବ୍ୟଗ୍ର
ବରଷିବାକୁ ଚଞ୍ଚଳ
ଯେପରି ସାଗର ନଥିଲେ ଲହର
ଶାନ୍ତ ଥାଏ ତାର ଜଳ ।
ଯେପରି ପ୍ରଦୀପ ଦିଶଇ ନିଷ୍କମ୍ପ
ଶୂନ୍ୟ ଥିଲେ ତହିଁ ବାତ
ଶଙ୍କର ସେପରି ସ୍ଥିର ଥିଲେ କରି
ପ୍ରାଣବାୟୁକୁ ଆୟତ୍ତ ॥ ୪୮ ॥

## ଶ୍ଳୋକ-୪୯

କପାଳନେତ୍ରାନ୍ତରଲବ୍ଧମାର୍ଗୈଃ
ର୍ଜ୍ୟୋତିଃ ପ୍ରରୋହୈରୁଦିତୈଃ ଶିରସ୍ତଃ ।
ମୃଣାଳସୂତ୍ରାଧିକସୌକୁମାର୍ଯ୍ୟା
ବାଳସ୍ୟ ଲକ୍ଷ୍ମୀଂ ଗ୍ଳପୟନ୍ତମିନ୍ଦୋଃ ॥ ୪୯ ॥

ଅନ୍ୱୟ - କପାଳନେତ୍ରାନ୍ତରଲବ୍ଧମାର୍ଗୈଃ ଶିରସ୍ତଃ ଉଦିତୈଃ ର୍ଜ୍ୟୋତିଃ ପ୍ରରୋହୈଃ ମୃଣାଳସୂତ୍ରାଧିକସୌକୁମାର୍ଯ୍ୟା ବାଳସ୍ୟ ଇନ୍ଦୋଃ ଲକ୍ଷ୍ମୀଂ ଗ୍ଳପୟନ୍ତମ୍ ଦଦର୍ଶେତି ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

କପାଳ ଓ ନେତ୍ର ମଧ୍ୟଭାଗେ ସ୍ଥିତ
ବ୍ରହ୍ମରନ୍ଧ୍ର ଜ୍ୟୋତିରାଶି
ଶିବଙ୍କର ଶିରୋ- ପରି ସ୍ଥିତ ଜଟା
ପରେ ପଡୁଥିଲା ଆସି।
ପଦ୍ମନାଡ ତନ୍ତୁ ଠାରୁ ସୁକୋମଳ
ଥିଲା ସେହି ଜଟାରାଶି
ସେ ଜଟା ଉପରେ ଶୋଭା ପାଉଥିଲେ
ଦ୍ୱିତୀୟା ତିଥିର ଶଶୀ।
ଜଟାପରେ ସ୍ଥିତ ଦ୍ୱିତୀୟା ଶଶୀର
କ୍ଷୀଣ କୋମଳ କିରଣ
ବ୍ରହ୍ମରନ୍ଧ୍ର ଜ୍ୟୋତି ରଶ୍ମି ତୁଳନାରେ
ଥିଲା ତା ଅତି ନଗଣ୍ୟ ॥ ୪୯ ॥

### ଶ୍ଳୋକ-୫୦

ମନୋନବଦ୍ୱାରନିଷିଦ୍ଧବୃତ୍ତି
ହୃଦି ବ୍ୟବସ୍ଥାପ୍ୟ ସମାଧିବଶ୍ୟମ୍।
ଯମକ୍ଷରଂ କ୍ଷେତ୍ରବିଦୋ ବିଦୁସ୍ତମ୍
ଆତ୍ମାନମାତ୍ମନ୍ୟବଲୋକୟନ୍ତମ୍ ॥ ୫୦ ॥

ଅନ୍ୱୟ - ନବଦ୍ୱାରନିଷିଦ୍ଧବୃତ୍ତି ସମାଧିବଶ୍ୟମ୍ ମନଃ ହୃଦି ବ୍ୟବସ୍ଥାପ୍ୟ କ୍ଷେତ୍ରବିଦଃ ଯମ୍ ଅକ୍ଷରଂ ବିଦୁଃ ତମ୍ ଆତ୍ମାନମ୍ ଆତ୍ମନି ଅବଲୋକୟନ୍ତଂ ତଂ ଦଦର୍ଶେତି ପୂର୍ବେଣାନ୍ୱୟଃ।

ପଦ୍ୟାନୁବାଦ -

ଶରୀରର ସର୍ବ ନଅଟି ଦ୍ୱାରକୁ
ବୃତ୍ତିରୁ କରି ନିବୃତ୍ତ
ମନକୁ ସମାଧି ଦ୍ୱାରା କରି ବଶ
ହୃଦୟେ କରି ସ୍ଥାପିତ।

ଯେଉଁ ବ୍ରହ୍ମଜ୍ଞାନୀ                    ଦର୍ଶନ କରନ୍ତି
ସନାତନ ଶିବ ତତ୍ତ୍ୱ
ସେହି ଶିବ ନିଜ                    ଭିତରେ ନିଜକୁ
କରୁଥିଲେ ଦୃଷ୍ଟିପାତ ॥ ୫୦ ॥

## ଶ୍ଳୋକ-୫୧

ସ୍ମରସ୍ତଥାଭୂତମଯୁଗ୍ମନେତ୍ରଂ
ପଶ୍ୟନ୍ନଦୂରାନ୍ମନସାପ୍ୟଧୃଷ୍ୟମ୍ ।
ନାଲକ୍ଷୟତ୍ସାଧ୍ୱସସନ୍ନହସ୍ତଃ
ସ୍ରସ୍ତଂ ଶରଂ ଚାପମପି ସ୍ୱହସ୍ତାତ୍ ॥ ୫୧ ॥

ଅନ୍ୱୟ - ସ୍ମରଃ, ତଥାଭୂତଂ ମନସା ଅପି ଅଧୃଷ୍ୟମ୍ ଅଯୁଗ୍ମନେତ୍ରମ୍ ଅଦୂରାତ୍ ପଶ୍ୟନ୍ ସାଧ୍ୱସସନ୍ନହସ୍ତଃ ସନ୍ ସ୍ୱହସ୍ତାତ୍ ସ୍ରସ୍ତଂ ଶରଂ ଚାପମ୍ ଅପି ନ ଅଲକ୍ଷୟତ୍ ।

ପଦ୍ୟାନୁବାଦ -

ତପସ୍ୟାରେ ମଗ୍ନ                    ଯେଉଁ ତ୍ରିଲୋଚନ
ମାନସ ନେତ୍ରେ ଅଦୃଶ୍ୟ
ନିକଟରୁ ସ୍ମର                    ଦେଖି ଥରହର
ଅଙ୍ଗ ହୋଇଲା ବିବଶ ।
କମ୍ପିତ ହସ୍ତରୁ                    ଧନୁର୍ବାଣ ତା'ର
କେବେ ହୋଇଛି ବିଚ୍ୟୁତ
ଭୟ କାରଣରୁ                    ଜାଣିବାକୁ ତାହା
ହୋଇପାରିନି ସମର୍ଥ ॥ ୫୧ ॥

## ଶ୍ଳୋକ- ୫୨

ନିର୍ବାଣଭୂୟିଷ୍ଠମଥାସ୍ୟ ବୀର୍ଯ୍ୟ
ସନ୍ଧୁକ୍ଷୟନ୍ତୀବ ବପୁର୍ଗୁଣେନ ।
ଅନୁପ୍ରୟାତା ବନଦେବତାଭ୍ୟାମ୍
ଅଦୃଶ୍ୟତ ସ୍ଥାବରରାଜକନ୍ୟା ॥ ୫୨ ॥

ଅନ୍ୱୟ -  ଅଥ ନିର୍ବାଣଭୂୟିଷ୍ଠମ୍ ଅସ୍ୟ ବୀର୍ଯ ବପୁର୍ଗୁଣେନ ସନ୍ଧୁକ୍ଷୟନ୍ତୀ ଇବ ସ୍ଥିତା ବନଦେବତାଭ୍ୟାମ୍ ଅନୁପ୍ରୟାତା ସ୍ଥାବରରାଜକନ୍ୟା ଅଦୃଶ୍ୟତ୍ ।

ପଦ୍ୟାନୁବାଦ -

ଭୟ କାରଣରୁ                ସ୍ମରଙ୍କ ଶରୀରୁ
ବଳ ପ୍ରାୟ ନଷ୍ଟପ୍ରାପ୍ତ
ସ୍ୱ ସୌନ୍ଦର୍ଯ୍ୟ ଦ୍ୱାରା             ଗିରିରାଜ କନ୍ୟା
କଲେ ପୁନରୁଜ୍ଜୀବିତ ।
ପୁନରୁଜ୍ଜୀବିତ                 କରିଣ ପାର୍ବତୀ
ସେ ଆଡକୁ ଆଗମନ
କରନ୍ତେ ଦିଶିଲା              ଥିଲେ ତାଙ୍କ ପଛେ
ବନଦେବୀ ଦୁଇଜଣ ॥ ୫୨ ॥

## ଶ୍ଳୋକ-୫୩

ଅଶୋକନିର୍ଭର୍ତ୍ସିତପଦ୍ମରାଗମ୍
ଆକୃଷ୍ଟହେମଦ୍ୟୁତିକର୍ଣ୍ଣିକାରମ୍ ।
ମୁକ୍ତାକଳାପୀକୃତସିନ୍ଧୁବାରଂ
ବସନ୍ତପୁଷ୍ପାଭରଣଂ ବହନ୍ତି ॥

ଅନ୍ୱୟ-   ଅଶୋକନିର୍ଭର୍ତ୍ସିତପଦ୍ମରାଗମ୍ ଆକୃଷ୍ଟହେମଦ୍ୟୁତିକର୍ଣ୍ଣିକାରମ୍ ମୁକ୍ତାକଳାପୀକୃତ-ସିନ୍ଧୁବାରଂ ବସନ୍ତପୁଷ୍ପାଭରଣଂ ବହନ୍ତି ସ୍ଥାବରରାଜକନ୍ୟା ଅଦୃଶ୍ୟତେତି ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

ପଦ୍ମରାଗ ମଣି                ଲାଲ କାନ୍ତି ଜିଣି
ଲାଲ ଅଶୋକ ପ୍ରସୂନ
କର୍ଣ୍ଣିକାର ପୁଷ୍ପ                 କି ସୁନ୍ଦର ରୂପ
ରଙ୍ଗରେ ଜିଣି ସୁବର୍ଣ୍ଣ ।

ମୁକ୍ତାଠୁ ଧବଳ ସିନ୍ଧୁବାର ଆଦି
ବସନ୍ତ କାଳୀନ ପୁଷ୍ପ
ଆଭୂଷଣ ରୂପେ ଭୂଷିତା ପାର୍ବତୀ
ଦିଶୁଥିଲେ ଅପରୂପ ॥ ୫୩ ॥

**ଶ୍ଳୋକ-୫୪**

ଆବର୍ଜିତା କିଞ୍ଚିଦିବ ସ୍ତନାଭ୍ୟାମ୍
ବାସୋ ବସାନା ତରୁଣାର୍କରାଗମ୍ ।
ପର୍ଯାପ୍ତପୁଷ୍ପସ୍ତବକାବନମ୍ରା
ସଞ୍ଚାରିଣୀ ପଲ୍ଲବିନୀ ଲତେବ ॥ ୫୪ ॥

ଅନ୍ୱୟ - ସ୍ତନାଭ୍ୟାମ୍ କିଞ୍ଚିତ୍ ଆବର୍ଜିତା ଇବ ତରୁଣାର୍କରାଗମ୍ ବାସଃ ବସାନା, ଅତଏବ, ପର୍ଯାପ୍ତପୁଷ୍ପସ୍ତବକାଽବନମ୍ରା ପଲ୍ଲବିନୀ ସଞ୍ଚାରିଣୀ ଲତା ଇବ (ଉତ୍ପ୍ରେକ୍ଷ୍ୟମାଣା) ପାର୍ବତୀ ଅଦୃଶ୍ୟତେତି ପୂର୍ବେଣାନ୍ୱୟ ।

ପଦ୍ୟାନୁବାଦ -

ଉଦିତ ତପନ ରଙ୍ଗର ବସନ
ପରିହିତା ଗିରିସୁତା
ସ୍ତନଯୁଗ ଭାର କାରଣୁ ଶରୀର
ହୋଇଅଛି ସ୍ୱଳ୍ପାନତା ।
ପେନ୍ଥା ପେନ୍ଥା ଫୁଲ ପଲ୍ଲବର ଭାରେ
ଦିଶେ ଯେପରି କେ ଲତା
ସେହିପରି ସଂଚରିଣୀ ଲତା ପ୍ରାୟ
ଦିଶୁଥିଲେ ଗିରିସୁତା ॥ ୫୪ ॥

**ଶ୍ଳୋକ-୫୫**

ସ୍ରସ୍ତାଂ ନିତମ୍ବାଦବଲମ୍ବମାନା
ପୁନଃ ପୁନଃ କେସରଦାମକାଞ୍ଚୀଂ ।

ନ୍ୟାସୀକୃତାଂ ସ୍ଥାନବିଦା ସ୍ମରେଣ
ମୌର୍ବୀଂ ଦ୍ୱିତୀୟାମିବକାର୍ମୁକସ୍ୟ ॥ ୫୫ ॥

ଅନ୍ୱୟ - ସ୍ଥାନବିଦା ସ୍ମରେଣ ନ୍ୟାସୀକୃତାଂ କାର୍ମୁକସ୍ୟ ଦ୍ୱିତୀୟାମ୍ ମୌର୍ବୀମ୍ ଇବ (ଉତ୍ପ୍ରେକ୍ଷ୍ୟମାଣାଂ) ନିତମ୍ବାତ୍ ସ୍ରସ୍ତାଂ କେସରଦାମକାଞ୍ଚୀଂ ପୁନଃ ପୁନଃ ଅବଲମ୍ବମାନା 'ପାର୍ବତୀ ଅଦୃଶ୍ୟେତି' ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

ନିତମ୍ବ ଦେଶରେ ମୌଳଶ୍ରୀ ପୁଷ୍ପରେ
ନିର୍ମିତ ଯତ୍ନରୁ ମେଖଳା
ବାନ୍ଧିଥିଲେ ବାଳା ପାର୍ବତୀ ସେ ମାଳା
ବାରମ୍ବାର ଖସୁଥିଲା ।
କାଳେ ଚାଲିବାରେ ଅସୁବିଧା ହେବ
ଟେକି ସେ ମାଳାକୁ ହସ୍ତେ
ଧରି ଚାଲୁଥିଲେ ଗିରିରାଜ ସୁତା
ନିଜର ଗମନ ପଥେ ।
ଲାଗୁଥିଲା ସତେ ଗୁଣଜ୍ଞ ଅନଙ୍ଗ
ଧନୁ ରଖି ଯଥା ସ୍ଥାନେ
ବାନ୍ଧିଛି ଦ୍ୱିତୀୟ ଗୁଣ ରୂପୀ ମାଳା
ଧନୁରେ ଅତି ଯତନେ ॥ ୫୫ ॥

## ଶ୍ଳୋକ -୫୬

ସୁଗନ୍ଧିନିଶ୍ୱାସବିବୃଦ୍ଧତୃଷ୍ଣଂ
ବିମ୍ବାଽଧରାସନ୍ନଚରଂ ଦ୍ୱିରେଫମ୍ ।
ପ୍ରତିକ୍ଷଣଂ ସମ୍ଭ୍ରମଲୋଳଦୃଷ୍ଟିଃ
ଲୀଳାରବିନ୍ଦେନ ନିବାରୟନ୍ତୀ ॥ ୫୬ ॥

ଅନ୍ୱୟ - ସୁଗନ୍ଧିନିଶ୍ୱାସବିବୃଦ୍ଧତୃଷ୍ଣଂ ବିମ୍ବାଧରାସନ୍ନଚରଂ ଦ୍ୱିରେଫମ୍ ପ୍ରତିକ୍ଷଣଂ ସମ୍ଭ୍ରମଲୋଲଦୃଷ୍ଟିଃ ସତି ଲୀଳାରବିନ୍ଦେନ ନିବାରୟନ୍ତୀ 'ପାର୍ବତୀ ଅଦୃଶ୍ୟତେ' ତି ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

ସୁଗନ୍ଧି ନିଶ୍ୱାସ ତୃଷାରେ ମଧୁପ
ଉମାଙ୍କ ବିମ୍ବୋଷ୍ଠ ପାଶେ
ଘୁରିବୁଲୁଥିଲେ ଓଷ୍ଠ ସନ୍ନିକଟେ
ସୁଗନ୍ଧ ଆଘ୍ରାଣ ଆଶେ ।
ସଂଭ୍ରମେ ଅଧୀରା ଚଞ୍ଚଳାକ୍ଷୀ ଉମା
ହସ୍ତସ୍ଥ ଲୀଳାକମଳେ
ବାରମ୍ବାର ଓଷ୍ଠ ପାଶୁ ମଧୁପଙ୍କୁ
ନିବାରଣ କରୁଥିଲେ ॥ ୫୬ ॥

## ଶ୍ଳୋକ-୫୭

ତାଂ ବୀକ୍ଷ୍ୟ ସର୍ବାବୟବାନବଦ୍ୟାଂ
ରତେରପି ହ୍ରୀପଦମାଦଧାନମ୍ ।
ଜିତେନ୍ଦ୍ରିୟେ ଶୂଳିନି ପୁଷ୍ପଚାପଃ
ସ୍ୱକାର୍ଯସିଦ୍ଧିଂ ପୁନରାଶଶଂସେ ॥ ୫୭ ॥

ଅନ୍ୱୟ - ସର୍ବାବୟବାନବଦ୍ୟାଂ ରତେଃ ଅପି ହ୍ରୀପଦଂ ଆଦଧାନାଂ ତାଂ ବୀକ୍ଷ୍ୟ ପୁଷ୍ପଚାପଃ ଜିତେନ୍ଦ୍ରିୟେ ଶୂଳିନି ସ୍ୱକାର୍ଯସିଦ୍ଧିଂ ପୁନଃ ଆଶଶଂସେ ।

ପଦ୍ୟାନୁବାଦ -

ସର୍ବାଙ୍ଗ ସୁନ୍ଦରୀ ଗିରିସୁତା ଗୌରୀ
ଯା ସୌନ୍ଦର୍ଯ୍ୟ ପାଶେ ରତି
ଲଜ୍ଜିତା ହୁଅନ୍ତି ଦେଖି ରତିପତି
ମନେ ମନେ ବିଚାରନ୍ତି ।

ଜିତେନ୍ଦ୍ରିୟ ମହା-          ଦେବଙ୍କ ଉପରେ
ବିଜୟ ତାଙ୍କର ହେବ
କାର୍ଯ୍ୟେ ସେ ସଫଳ     ହେବେ ବୋଲି ଆଶା
ମନେ ହୋଇଲା ଉଭବ ॥ ୫୭ ॥

### ଶ୍ଳୋକ-୫୮

ଭବିଷ୍ୟତଃ ପତ୍ୟୁରୁମା ଚ ଶମ୍ଭୋଃ
ସମାସସାଦ ପ୍ରତିହାରଭୂମିମ୍ ।
ଯୋଗାସ୍ସ ଚ୍ଚନ୍ତଃ ପରମାତ୍ମସଂଜ୍ଞଂ
ଦୃଷ୍ଟ୍ୱା ପରଂ ଜ୍ୟୋତିରୁପାରରାମ ॥ ୫୮ ॥

ଅନ୍ୱୟ - ଉମା ଚ ଭବିଷ୍ୟତଃ ପତ୍ୟୁଃ ଶମ୍ଭୋଃ ପ୍ରତିହାରଭୂମିଂ ସମାସସାଦ ।
ସ ଚ ଅନ୍ତଃ ପରମାତ୍ମସଂଜ୍ଞଂ ପରଂ ଜ୍ୟୋତିଃ ଦୃଷ୍ଟ୍ୱା ଯୋଗାତ୍ ଉପାରରାମ ।

ପଦ୍ୟାନୁବାଦ -

ଏପଟେ ପାର୍ବତୀ          ଭବିଷ୍ୟତ ପତି
ଶିବଙ୍କର ତପୋବନ
ଦ୍ୱାରଦେଶେ ଆସି          ପହଞ୍ଚିଲେ ଯହିଁ
ଶିବ ଥିଲେ ତପମଗ୍ନ ।
ତେଣେ ତ୍ରିଲୋଚନ          ଅନ୍ତରେ ଦର୍ଶନ
କରି ଅଲୌକିକ ଜ୍ୟୋତି
ତପ ସାଧନାରୁ          ହୋଇଲେ ବିରତ
ସମାଧିର ହେଲା ଇତି ॥ ୫୮ ॥

### ଶ୍ଳୋକ -୫୯

ତତୋ ଭୁଜଙ୍ଗାଧିପତେଃ ଫଣାଗ୍ରୈଃ
ଅଧଃ କଥଞ୍ଚିଦ୍ଧୃତଭୂମିଭାଗଃ ।
ଶନୈଃ କୃତପ୍ରାଣବିମୁକ୍ତିରୀଶଃ
ପର୍ଯ୍ୟଙ୍କବନ୍ଧଂ ନିବିଡଂ ବିଭେଦ ॥ ୫୯ ॥

ଅନ୍ୱୟ - ତତଃ ଭୁଜଙ୍ଗାଧିପତେଃ ଫଣାଗ୍ରୈରଧଃ କଥଞ୍ଚିଦ୍ଧୃତଭୂମିଭାଗଃ ଶନୈଃ କୃତପ୍ରାଣବିମୁକ୍ତିଃ ଈଶଃ ନିବିଡଂ ପର୍ଯ୍ୟଙ୍କବନ୍ଧଂ ବିଭେଦ।

ପଦ୍ୟାନୁବାଦ -

ଧୀରେ ତ୍ରିଲୋଚନ କଲେ ବିସର୍ଜନ
ପ୍ରାଣାୟାମ ବୀରାସନ
ଏଥିପାଇଁ ଅତ୍ୟ- ଧିକ ବୃଦ୍ଧିହେଲା
ତାଙ୍କ ଶରୀର ଓଜନ।
ପୃଥିବୀର ଭାର ସ୍ୱ ଫଣା ଉପର
ଧରିଛନ୍ତି ଶେଷନାଗ
ଅଧିକ ଓଜନ କରିଲେ ବହନ
କରି ବହୁ କଷ୍ଟ ଭୋଗ ॥ ୫୯ ॥

### ଶ୍ଳୋକ-୬୦

ତସ୍ମୈ ଶଶଂସ ପ୍ରଣିପତ୍ୟ ନନ୍ଦୀ
ଶୁଶ୍ରୂଷୟା ଶୈଳସୁତାମୁପେତାମ୍।
ପ୍ରବେଶୟାମାସ ଚ ଭର୍ତ୍ତୁରେନାଂ
ଭ୍ରୂକ୍ଷେପମାତ୍ରାନୁମତପ୍ରବେଶାମ୍ ॥ ୬୦ ॥

ଅନ୍ୱୟ - ଅଥ ନନ୍ଦୀ ତସ୍ମୈ ପ୍ରଣିପତ୍ୟ ଶୁଶ୍ରୂଷୟା ଉପେତାଂ ଶୈଳସୁତାଂ ଶଶଂସ। ଭର୍ତ୍ତୁଃ ଭ୍ରୂକ୍ଷେପମାତ୍ରାନୁମତପ୍ରବେଶାମ୍ ଏନାଂ ପ୍ରବେଶୟାମାସ ଚ।

ପଦ୍ୟାନୁବାଦ -

ଏହାପରେ ନନ୍ଦୀ ଶଙ୍କରଙ୍କ ପାଶେ
ଯାଇକଲେ ପ୍ରଣିପାତ
ନିବେଦନ କଲେ ଗୌରୀ ମାତ ତହିଁ
ସେବା ପାଇଁ ଉପସ୍ଥିତ।

ଭ୍ରୂଭଙ୍ଗୀ ସଂକେତେ ଅନୁମତି ପାଇ
ନନ୍ଦୀ ବାହାରକୁ ଗଲେ
ପାର୍ବତୀଙ୍କୁ ସଙ୍ଗେ ଆଣି ଶିବଙ୍କର
ନିକଟରେ ପହଞ୍ଚିଲେ ॥ ୬୦ ॥

## ଶ୍ଳୋକ-୬୧

ତସ୍ୟା ସଖୀଭ୍ୟାମ୍ ପ୍ରଣିପାତପୂର୍ବଂ
ସ୍ୱହସ୍ତଲୂନଃ ଶିଶିରାତ୍ୟୟସ୍ୟ ।
ବ୍ୟକୀର୍ଯତ ତ୍ର୍ୟମ୍ବକପାଦମୂଳେ
ପୁଷ୍ପୋଚ୍ଚୟଃ ପଲ୍ଲବଭଙ୍ଗଭିନ୍ନଃ ॥ ୬୧ ॥

ଅନ୍ୱୟ - ତସ୍ୟାଃ ସଖୀଭ୍ୟାମ୍ ସ୍ୱହସ୍ତଲୂନଃ ପଲ୍ଲବଭଙ୍ଗଭିନ୍ନଃ ଶିଶିରାତ୍ୟୟସ୍ୟ ପୁଷ୍ପୋଚ୍ଚୟଃ ତ୍ର୍ୟମ୍ବକପାଦମୂଳେ ପ୍ରଣିପାତପୂର୍ବଂ ବ୍ୟକୁର୍ଯତ ।

ପଦ୍ୟାନୁବାଦ -

ତତ୍ପରେ ପାର୍ବତୀ ସଖୀଦ୍ୱୟ ଅତି
ବିନମ୍ରତା ସହକାରେ
ଶଙ୍କରଙ୍କ ପାଶେ ଯାଇ ପ୍ରଣିପାତ
କଲେ ଅତି ଭକ୍ତିଭରେ ।
ନୂଆ ପତ୍ରଖଣ୍ଡ ସହ ନିଜ ହସ୍ତ-
ତୋଳା ବାସନ୍ତୀ ସୁମନେ
ବିନୟ ଓ ଭକ୍ତି- ଭରେ ଅରପିଲେ
ମହାଦେବଙ୍କ ଚରଣେ ॥ ୬୧ ॥

## ଶ୍ଳୋକ-୬୨

ଉମାପି ନୀଳାଳକମଧ୍ୟଶୋଭି
ବିଂସ୍ରଂସୟନ୍ତୀ ନବକର୍ଣ୍ଣିକାରମ୍ ।
ଚକାର କର୍ଣ୍ଣଚ୍ୟୁତପଲ୍ଲବେନ
ମୂର୍ଦ୍ଧ୍ନା ପ୍ରଣାମଂ ବୃଷଭଧ୍ୱଜାୟ ॥ ୬୨ ॥

ଅନ୍ୱୟ - ଉମା ଅପି ନୀଲାଳକମଧ୍ୟଶୋଭି ନବକର୍ଣ୍ଣିକାରଂ ବିସ୍ରଂସୟନ୍ତୀ କର୍ଣ୍ଣଚ୍ୟୁତପଲ୍ଲବେନ ମୂର୍ଦ୍ଧ୍ନା ବୃଷଭଧ୍ୱଜାୟ ପ୍ରଣାମଂ ଚକାର।

ପଦ୍ୟାନୁବାଦ -

କୃଷ୍ଣ ଅଳକକୁ କର୍ଣ୍ଣିକାର ପୁଷ୍ପେ
କରିଥିଲେ ସୁଶୋଭିତ
ନବୀନ ପଲ୍ଲବ- ଖଣ୍ଡମାନ କର୍ଣ୍ଣ
ଉପରେ ଥିଲା ମଣ୍ଡିତ।
ସୁନ୍ଦରୀ ଗଉରୀ ମଥାନତ କରି
ଶିବଙ୍କୁ ପ୍ରଣାମ କଲେ
ପ୍ରଣାମ ସମୟେ ପୁଷ୍ପ ପତ୍ରଖଣ୍ଡ
ତଳକୁ ଖସିପଡିଲେ ॥ ୬୨ ॥

**ଶ୍ଳୋକ-୬୩**

ଅନନ୍ୟଭାଜଂ ପତିମାପ୍ନୁହୀତି
ସା ତଥ୍ୟମେବାଭିହିତା ଭବେନ।
ନହୀଶ୍ୱରବ୍ୟାହତୟଃ କଦାଚିତ୍
ପୁଷ୍ଣନ୍ତି ଲୋକେ ବିପରୀତମର୍ଥମ୍ ॥ ୬୩ ॥

ଅନ୍ୱୟ - ସା ଭବେନ 'ଅନନ୍ୟଭାଜଂ ପତିମ୍ ଆପ୍ନୁହି' ଇତି ତଥ୍ୟମ୍ ଏବ ଅଭିହିତା। ହି ଈଶ୍ୱରବ୍ୟାହୃତୟଃ କଦାଚିତ୍ ଅପି ଲୋକେ ବିପରୀତମ୍ ଅର୍ଥ ନ ପୁଷ୍ଣନ୍ତି।

ପଦ୍ୟାନୁବାଦ -

ଗୌରୀ ପ୍ରଣିପାତ ଶିବେ କଲା ପ୍ରୀତ
ବୋଇଲେ ଆଶୀର୍ବଚନ
ପତ୍ନୀବ୍ରତୀ ପତି ଜୀବନରେ ପ୍ରାପ୍ତି
ହେଉ ତୁମ୍ଭକୁ ଏ ଜାଣ।

ଏ କଥା ଯେ ସତ୍ୟ ସଂସାରରେ ନିତ୍ୟ
ମହାପୁରୁଷଙ୍କ ବାଣୀ
ହୁଏନି ଅନ୍ୟଥା କାଳେ କାଳେ ଏହା
ସରବେ ଅଛନ୍ତି ଜାଣି ॥ ୬୩ ॥

ଶ୍ଳୋକ -୬୪

କାମସ୍ତୁ ବାଣାବସରଂ ପ୍ରତୀକ୍ଷ୍ୟ
ପତଙ୍ଗବଦ୍ୱହ୍ନିମୁଖଂ ବିବିକ୍ଷୁଃ ।
ଉମାସମକ୍ଷଂ ହରବଦ୍ଧଲକ୍ଷ୍ୟଃ
ଶରାସନଜ୍ୟାଂ ମୁହୁରାମମର୍ଶ ॥ ୬୪ ॥

ଅନ୍ୱୟ - କାମସ୍ତୁ ବାଣାବସରଂପ୍ରତୀକ୍ଷ୍ୟ ପତଙ୍ଗବତ୍ ବହ୍ନୀମୁଖଂ ବିବିକ୍ଷୁଃ, ଉମାସମକ୍ଷଂ ହରବଦ୍ଧଲକ୍ଷ୍ୟଃ ସନ୍, ଶରାସନଜ୍ୟାଂ ମୁହୁଃ ଆମମର୍ଶ ।

ପଦ୍ୟାନୁବାଦ -

କାମଦେବ ବାଣ ବିନ୍ଧିବାର କ୍ଷଣ
ଅପେକ୍ଷାରେ ରହିଥିଲେ
ଗୌରୀଙ୍କ ସମ୍ମୁଖେ ଶଂକରଙ୍କୁ ଦେଖି
ସେ ମୁହୂର୍ତ୍ତ ପାଇଗଲେ ।
ହୁତାସନେ ଝାସ ଦେବାକୁ ପ୍ରୟାସ
କରେ ଯେପରି ପତଙ୍ଗ
ସେହିପରି ବାଣ ବିନ୍ଧିବାକୁ ଗୁଣ
ଟଙ୍କାରୁଥିଲେ ଅନଙ୍ଗ ॥ ୬୫ ॥

**ଶ୍ଳୋକ -୬୫**

ଅଥୋପନିନ୍ୟେ ଗିରିଶାୟ ଗୌରୀ
ତପସ୍ୱିନେ ତାମ୍ରରୁଚ୍ଚ କରେଣ ।
ବିଶୋଷିତାଂ ଭାନୁମତୋ ମୟୁଖୈଃ
ମନ୍ଦାକିନୀପୁଷ୍କରବୀଜମାଳାମ୍ ॥ ୬୫ ॥

ଅନ୍ୱୟ - ଅଥ ଗୌରୀ ତପସ୍ୱିନେ ଗିରିଶାୟ ତାମ୍ରରୁଚଃ, କରେଣ ଭାନୁମତଃ ମୟୂଖୈଃ ବିଶୋଷିତାଂ ମନ୍ଦାକିନୀପୁଷ୍କରବୀଜମାଳାମ୍ ଉପନିନ୍ୟେ।

ପଦ୍ୟାନୁବାଦ -

ମନ୍ଦାକିନୀ ପଦ୍ମ ପୁଷ୍କରକୁ ସୂର୍ଯ୍ୟ
ରଶ୍ମିରେ ଶୁଖାଇ କରି
ସେହି ପୁଷ୍କରରେ ଅତି ଯତନରେ
ଗୁନ୍ଥିଛନ୍ତି ମାଳା ଗୌରୀ।
ପ୍ରଣାମୋପରାନ୍ତେ ତାମ୍ରକାନ୍ତି ହସ୍ତେ
ଧରି ସେ ମାଳା ପାର୍ବତୀ
ତପସ୍ୟାରୁ ଉଠି- ଥିବା ଶଂକରଙ୍କୁ
ସଭକ୍ତିରେ ଦେଲେ ଭେଟି ॥ ୬୫ ॥

### ଶ୍ଳୋକ-୬୬

ପ୍ରତିଗ୍ରହୀତୁଂ ପ୍ରଣୟିପ୍ରିୟତ୍ୱାତ୍
ତ୍ରିଲୋଚନସ୍ତାମୁପଚକ୍ରମେ ଚ।
ସମ୍ମୋହନଂ ନାମ ଚ ପୁଷ୍ପଧନ୍ୱା
ଧନୁଷ୍ୟମୋଘଂ ସମଧତ୍ତ ବାଣମ୍ ॥ ୬୬ ॥

ଅନ୍ୱୟ - ତ୍ରିଲୋଚନଶ୍ଚ ପ୍ରଣୟିପ୍ରିୟତ୍ୱାତ୍ ତାଂ ପ୍ରତିଗ୍ରହୀତୁମ୍ ଉପଚକ୍ରମେ। ପୁଷ୍ପଧନ୍ୱା ଚ ସମ୍ମୋହନଂ ନାମ ଅମୋଘଂ ବାଣଂ ଧନୁଷି ସମଧତ୍ତ।

ପଦ୍ୟାନୁବାଦ -

ପ୍ରେମୀଜନେ ଭାବ କାରଣରୁ ଶିବ
ପ୍ରସାରଣ କଲେ ହସ୍ତ
ପାର୍ବତୀଙ୍କ ହସ୍ତୁ ପୁଷ୍କର ମାଳାକୁ
କରିବାକୁ ହସ୍ତଗତ।

ଏହି ମୁହୂର୍ତ୍ତରେ ପ୍ରତୀକ୍ଷାରେ ସ୍ମର
ରହିଥିଲେ ହିଁ ପ୍ରସ୍ତୁତ
ଅବ୍ୟର୍ଥ ସେ ବାଣ ନାମ ସମ୍ମୋହନ
ନିକ୍ଷେପ କଲେ ତୁରିତ ॥ ୬୬ ॥

## ଶ୍ଳୋକ-୬୭

ହରସ୍ତୁ କିଞ୍ଚିତ୍ପରିଲୁପ୍ତଧୈର୍ଯ୍ୟଃ
ଚନ୍ଦ୍ରୋଦୟାରମ୍ଭ ଇବାମ୍ବୁରାଶିଃ ।
ଉମାମୁଖେ ବିମ୍ବଫଳାଧରୋଷ୍ଠେ
ବ୍ୟାପାରୟାମାସ ବିଲୋଚନାନି ॥ ୬୭ ॥

ଅନ୍ୱୟ - ହରସ୍ତୁ ଚନ୍ଦ୍ରୋଦୟାରମ୍ଭେ ଅମ୍ବୁରାଶିଃ ଇବ କିଞ୍ଚିତ୍ ପରିଲୁପ୍ତଧୈର୍ଯ୍ୟଃ ସନ୍ ବିମ୍ବଫଳାଧରୋଷ୍ଠେ ଉମାମୁଖେ ବିଲୋଚନାନି ବ୍ୟାପାରୟାମାସ ।

ପଦ୍ୟାନୁବାଦ -

ଗଭୀର ସାଗର ଯେପରି ଅଧୀର
ହୁଏ ଚନ୍ଦ୍ରୋଦୟ କାଳେ
ସେପରି ଶଂକର ହୋଇଲେ ଅଧୀର
କାମଦେବ ବାଣ ବଳେ ।
ବିମ୍ବଫଳ ପରି ଓଷ୍ଠରୁ ବିମ୍ବାଧରୀ
ପାର୍ବତୀଙ୍କୁ ତ୍ରିଲୋଚନ
ଅଧୀର ହୋଇଣ ନିଜ ତ୍ରିଲୋଚନେ
କରିଲେ ଅବଲୋକନ ॥ ୬୭ ॥

## ଶ୍ଳୋକ- ୬୮

ବିବୃଣ୍ୱତୀ ଶୈଳସୁତାପି ଭାବମ୍
ଅଙ୍ଗୈଃ ସ୍ଫୁରଦ୍-ବାଳକଦମ୍ବକଳ୍ପୈଃ ।
ସାଚୀକୃତା ଚାରୁତରେଣ ତସ୍ଥୌ
ମୁଖେନ ପର୍ଯ୍ୟସ୍ତବିଲୋଚନେନ ॥ ୬୮ ॥

ଅନ୍ୱୟ - ଶୈଳସୁତା ଅପି ସ୍ଫୁରଦ୍-ବାଳକଦମ୍ବକଳ୍ପୈଃ ଅଙ୍ଗୈଃ ଭାବଂ ବିବୃଣ୍ୱତୀ
ଚାରୁତରେଣ ପର୍ଯ୍ୟସ୍ତବିଲୋଚନେନ ମୁଖେନ ସାଚୀକୃତା ତସ୍ଥୌ।

ପଦ୍ୟାନୁବାଦ -

ବିକଶିତ କମ୍ର          କଦମ୍ବର ସମ
ପାର୍ବତୀଙ୍କ ଅବୟବ
ରୋମାଞ୍ଚିତ ହେଲା          ଉଦ୍ରେକ ହୋଇଲା
ଶଂକରଙ୍କ ପ୍ରତି ଭାବ।
ଲଜ୍ଜାରେ ଆନତ          ଗୋରୀ ହେଲେ ସ୍ଥିତ
ତୀର୍ଯ୍ୟକ ଭାବେ ସେ ସ୍ଥାନ
ସେ ସମୟେ ମୁଖ          ଦିଶୁଥିଲା ତାଙ୍କ
ପୂର୍ବାପେକ୍ଷା ଶୋଭମାନ ॥ ୬୮ ॥

**ଶ୍ଳୋକ-୬୯**

ଅଥେନ୍ଦ୍ରିୟକ୍ଷୋଭମଯୁଗ୍ମନେତ୍ରଃ
ପୁନର୍ବଶିତ୍ୱାଦ୍-ବଳବନ୍ନିଗୃହ୍ୟ।
ହେତୁଂସ୍ୱଚେତୋବିକୃତେର୍ଦିଦକ୍ଷୁଃ
ଦିଶାମୁପାନ୍ତେଷୁ ସସର୍ଜ ଦୃଷ୍ଟିମ୍ ॥ ୬୯ ॥

ଅନ୍ୱୟ - ଅଥ ଅଯୁଗ୍ମନେତ୍ରଃ ବଶିତ୍ୱାତ୍ ଇନ୍ଦ୍ରିୟକ୍ଷୋଭଂ ପୁନଃ ବଳବତ୍ ନିଗୃହ୍ୟ
ସ୍ୱଚେତୋବିକୃତେ ହେତୁଂ ଦିଦୃକ୍ଷୁଃ ସନ୍ ଦିଶାମ୍ ଉପାନ୍ତେଷୁ ଦୃଷ୍ଟିମ୍ ସସର୍ଜ।

ପଦ୍ୟାନୁବାଦ -

ଏହାପରେ ଶିବ          କଲେ ଅନୁଭବ
ଇନ୍ଦ୍ରିୟଙ୍କ ଚଞ୍ଚଳତା
ଜିତେନ୍ଦ୍ରିୟ ହେତୁ          ସମସ୍ତ ଇନ୍ଦ୍ରିୟ
ସ୍ୱୀକାର କଲେ ବଶତା।

ତତ୍ପରେ ଶଂକର ସହସା ମନର
ବିକାରଗ୍ରସ୍ତ କାରଣ
ଜାଣିବା ପାଇଁକି ନିଜ ଚତୁଃପାର୍ଶ୍ୱ
କରିଲେ ଅବଲୋକନ ॥ ୬୯ ॥

### ଶ୍ଳୋକ-୭୦

ସ ଦକ୍ଷିଣାପାଙ୍ଗନିବିଷ୍ଟମୁଷ୍ଟିଂ
ନତାଂସମାକୁଞ୍ଚିତସବ୍ୟପାଦମ୍ ।
ଦଦର୍ଶ ଚକ୍ରୀକୃତଚାରୁଚାପଂ
ପ୍ରହର୍ତ୍ତୁମଭ୍ୟୁଦ୍ୟତମାତ୍ମଯୋନିମ୍ ॥ ୭୦ ॥

ଅନ୍ୱୟ - ସଃ ଦକ୍ଷିଣାପାଙ୍ଗନିବିଷ୍ଟମୁଷ୍ଟିଂ ନତାଂସମ୍ ଆକୁଞ୍ଚିତସବ୍ୟପାଦମ୍ ଚକ୍ରୀକୃତଚାରୁଚାପଂ ପ୍ରହର୍ତ୍ତୁମ୍ ଅଭ୍ୟୁଦତମ୍ ଆତ୍ମଯୋନିଂ ଦଦର୍ଶ ।

ପଦ୍ୟାନୁବାଦ -

ସେ ସ୍ଥାନେ ମନ୍ମଥ ପୁଷ୍ପଧନୁ ହସ୍ତ
ଶର ସନ୍ଧାନରେ ବ୍ୟସ୍ତ
ଦକ୍ଷିଣ ନୟନ- କୋଣ ପାଶେ ତାର
ହସ୍ତମୁଷ୍ଟି ସନ୍ସ୍ଥାପିତ ।
ସ୍କନ୍ଧ ସ୍ୱଳ୍ପାନତ ବାମ ଆଣ୍ଠୁ ବକ୍ର
ଭଙ୍ଗୀରେ ରହିଛି ତାର
ଧନୁର୍ଗୁଣ ଟାଣି ପ୍ରସ୍ତୁତ ରହିଛି
ଦେଖିଲେ ତାଙ୍କୁ ଶଂକର ॥ ୭୦ ॥

### ଶ୍ଳୋକ-୭୧

ତପଃ ପରାମର୍ଶବିବୃଦ୍ଧମନ୍ୟୋଃ
ଭ୍ରୂଭଙ୍ଗଦୁଷ୍ପ୍ରେକ୍ଷ୍ୟମୁଖସ୍ୟ ତସ୍ୟ ।
ସ୍ଫୁରନ୍ନୁଦର୍ଚ୍ଚିଃ ସହସା ତୃତୀୟାତ୍
ଅକ୍ଷ୍ଣଃ କୃଶାନୁଃ କିଳ ନିଷ୍ପପାତ ॥ ୭୧ ॥

ଅନ୍ୱୟ -  ତପଃ ପରାମର୍ଶବିବୃଦ୍ଧମନ୍ୟୋଃ ଭ୍ରୂଭଙ୍ଗଦୁଷ୍ପ୍ରେକ୍ଷ୍ୟମୁଖସ୍ୟ ତସ୍ୟ ତୃତୀୟାତ୍
ଅକ୍ଷ୍ଣଃ ସ୍ଫୁରନ୍ ଉଦର୍ଚ୍ଚିଃ କୃଶାନୁଃ ସହସା ନିଷ୍ପପାତ କିଳ।

ପଦ୍ୟାନୁବାଦ -

ତପସ୍ୟାରେ ବିଘ୍ନ ହେତୁ ତ୍ରିଲୋଚନ
ହୋଇଲେ ଅତ୍ୟନ୍ତ କ୍ରୁଦ୍ଧ
ଭ୍ରୂ ହୋଇଲା ବକ୍ର ମୁଖ ଭୟଙ୍କର
ଦେଖିବାକୁ କଷ୍ଟସାଧ୍ୟ।
ତୃତୀୟ ନୟନ କଲା ଉଦ୍ଗୀରଣ
ଅଗ୍ନିର ସ୍ଫୁଲିଙ୍ଗମାନ
ସେ ସ୍ଫୁଲିଙ୍ଗରାଶି ସୃଷ୍ଟିକଲେ ମିଶି
ଅଗ୍ନିଶିଖା ଲେଲିହାନ ॥ ୭୧ ॥

### ଶ୍ଳୋକ -୭୨

କ୍ରୋଧଂ ପ୍ରଭୋ ସଂହର ସଂହରେତି
ଯାବଦ୍ ଗିରଃ ଖେ ମରୁତାଂ ଚରନ୍ତି।
ତାବତ୍ ସ ବହ୍ନିର୍ଭବନେତ୍ରଜନ୍ମା
ଭସ୍ମାଽବଶେଷଂ ମଦନଂ ଚକାର ॥ ୭୨ ॥

ଅନ୍ୱୟ -  ପ୍ରଭୋ ! କ୍ରୋଧଂ ସଂହର ସଂହର, ଇତି ମରୁତାଂ ଗିରଃ ଖେ ଯାବତ୍ ଚରନ୍ତି
ତାବତ୍ ଭବନେତ୍ରଜନ୍ମା ସ ବହ୍ନିଃ ମଦନଂ ଭସ୍ମାଽବଶେଷଂ ଚକାର।

ପଦ୍ୟାନୁବାଦ -

କ୍ରୋଧ ସମ୍ବରଣ ପାଇଁ ଦେବଗଣ
କଲେ ଶିବେ ନିବେଦନ
ଦେବ ନିବେଦନ ନଭ ମଣ୍ଡଳରେ
ସୃଷ୍ଟି କଲା ଗୁଞ୍ଜରଣ।

ସେହି ଗୁଞ୍ଜରଣ ପହଞ୍ଚି ପାରିଲା
ନାହିଁ ତାଙ୍କ କର୍ଣ୍ଣ ପାଶ
ଲେଲିହାନ ଅଗ୍ନି ଶିଖା ମନ୍ମଥକୁ
ପୋଡି କରିଲା ପାଉଁଶ ॥ ୭୨ ॥

## ଶ୍ଳୋକ-୭୩

ତୀବ୍ରାଭିସଙ୍ଗପ୍ରଭବେଣ ବୃତ୍ତିଂ
ମୋହେନ ସଂସ୍ତମ୍ଭୟତେନ୍ଦ୍ରିୟାଣାଂ ।
ଅଜ୍ଞାତଭର୍ତ୍ତୃ ବ୍ୟସନା ମୁହୂର୍ତ୍ତମ୍
କୃତୋପକାରେବ ରତିର୍ବଭୂବ ॥ ୭୩ ॥

ଅନ୍ୱୟ - ତୀବ୍ରାଭିସଙ୍ଗପ୍ରଭବେଣ ଇନ୍ଦ୍ରିୟାଣାଂ ବୃତ୍ତିଂ ସଂସ୍ତମ୍ଭୟତା ମୋହେନ ରତିଃ ମୁହୂର୍ତ୍ତଂ ଅଜ୍ଞାତଭର୍ତ୍ତୃ ବ୍ୟସନା ସତୀ କୃତୋପକାରା ଇବ ବଭୂବ ।

ପଦ୍ୟାନୁବାଦ -

ଅସହ୍ୟ ବିପତ୍ତି କାରଣରୁ ରତି
ହୋଇଗଲେ ଚେତାଶୂନ୍ୟ
ଶରୀରର ସର୍ବ ଇନ୍ଦ୍ରିୟଗଣ ବି
ହୋଇଗଲେ କ୍ରିୟାହୀନ ।
ଗୋଟିଏ ଦୃଷ୍ଟିରୁ ଏ ଯାହା ଘଟିଲା
ତାଙ୍କପାଇଁ ଭଲ ହେଲା
ଅଳ୍ପକ୍ଷଣ ପାଇଁ ହେଉ ପଛେ ପତି
ମରଣ ଅଜ୍ଞାତ ଥିଲା ॥ ୭୩ ॥

## ଶ୍ଳୋକ-୭୪

ତମାଶୁ ବିଘ୍ନଂ ତପସସ୍ତପସ୍ୱୀ
ବନସ୍ପତିଂ ବଜ୍ର ଇବାବଭଜ୍ୟ ।
ସ୍ତ୍ରୀସନ୍ନିକର୍ଷ ପରିହର୍ତ୍ତୁମିଛନ୍
ଅନ୍ତର୍ଦଧେ ଭୂତପତିଃ ସଭୂତଃ ॥ ୭୪ ॥

ଅନ୍ୱୟ - ତପସ୍ୱୀ ଭୂତପତିଃ ତପସଃ ବିଘ୍ନଂ ତମ୍ ଆଶୁ ବଜ୍ରଃ ବନସ୍ପତିମ୍ ଇବ ଅବଭଜ୍ୟ ସ୍ତ୍ରୀସନ୍ନିକର୍ଷ ପରିହର୍ତ୍ତୁମ୍ ଇଛନ୍ ସନ୍ ସଭୂତଃ ଅନ୍ତର୍ଦଧେ।

ପଦ୍ୟାନୁବାଦ -

ଯେପରି ବିଜୁଳି ଆକାଶରୁ ଗଳି
ଭାଙ୍ଗି ବିଶାଳ ପାଦପ
ଅନ୍ତର୍ଦ୍ଧାନ ହୋଇ ଯାଏ ସେ ସ୍ଥାନରୁ
ଦିଶେନାହିଁ ତା'ର ରୂପ।
ସେହିପରି ତପ ବିଘ୍ନର ସ୍ୱରୂପ
ସ୍ତ୍ରୀ-ସାମୀପ୍ୟଠୁ ଦୂରେ
ରହିବାକୁ ଶିବ ହେଲେ ଅନ୍ତର୍ଦ୍ଧାନ
ଅନୁଚର ସହିତରେ ॥ ୭୪ ॥

### ଶ୍ଳୋକ-୭୫

ଶୈଳାତ୍ମଜାପି ପିତୁରୁଚ୍ଛିରସୋଽଭିଲାଷଂ
ବ୍ୟର୍ଥ ସମର୍ଥ୍ୟ ଲଳିତଂ ବପୁରାତ୍ମନଶ୍ଚ।
ସଖ୍ୟୋଃ ସମକ୍ଷମିତି ଚାଧିକଜାତଲଜ୍ଜା
ଶୂନ୍ୟା ଯଗାମ ଭବନାଭିମୁଖୀ କଥଞ୍ଚିତ୍ ॥ ୭୫ ॥

ଅନ୍ୱୟ - ଶୈଳାତ୍ମଜା ଅପି ଉଚ୍ଛିରସଃ ପିତୁଃ ଅଭିଲାଷମ୍, ଲଳିତମ୍ ଆତ୍ମନଃ ବପୁଶ୍ଚ ବ୍ୟର୍ଥ ସମର୍ଥ୍ୟ ସଖ୍ୟୋଃ ସମକ୍ଷମ୍ ଇତି ଚ ଅଧିକଜାତଲଜ୍ଜା ଶୂନ୍ୟା ସତୀ କଥଞ୍ଚିତ୍ ଭବନାଭିମୁଖୀ ଯଗାମ।

ପଦ୍ୟାନୁବାଦ -

ମନସ୍ୱୀ ପିତାଙ୍କ ଇଚ୍ଛା ତଥା ନିଜ
ସୌନ୍ଦର୍ଯ୍ୟର ବିଫଳତା
ଦେଖି ଗିରିସୁତା ସଖୀଙ୍କ ସମ୍ମୁଖେ
ମନେ ହୋଇଲେ ଲଜ୍ଜିତା।
କୌଣସି ପ୍ରକାରେ ମନକୁ ନିଜର
କଲେ ସିଏ ନିୟନ୍ତ୍ରଣ

ସଖୀଙ୍କ ଅଗ୍ରତେ ଭଙ୍ଗାମନ ସାଥେ
ଚଳିଲେ ପିତୃଭବନ ॥ ୭୫ ॥

### ଶ୍ଳୋକ-୭୬

ସପଦି ମୁକୁଳିତାକ୍ଷୀଂ ରୁଦ୍ରସଂରମ୍ଭଭୀତ୍ୟା
ଦୁହିତରମନୁକମ୍ପ୍ୟାମଦ୍ରିରାଦାୟ ଦୋର୍ଭ୍ୟାମ୍ ।
ସୁରଗଜ ଇବ ବିଭ୍ରତ୍ପଦ୍ମିନୀଂ ଦନ୍ତଲଗ୍ନାଂ
ପ୍ରତିପଥଗତିରାସୀଦ୍ ବେଗଦୀର୍ଘୀକୃତାଙ୍ଗଃ ॥ ୭୬ ॥

ଅନ୍ୱୟ - ସପଦି ଅଦ୍ରିଃ ରୁଦ୍ରସଂରମ୍ଭଭୀତ୍ୟା ମୁକୁଳିତାକ୍ଷୀଂ ଅନୁକମ୍ପ୍ୟାଂ ଦୁହିତରଂ ଦୋର୍ଭ୍ୟାମ୍ ଆଦାୟ ଦନ୍ତଲଗ୍ନାଂ ପଦ୍ମିନୀଂ ବିଭ୍ରତ୍ ସୁରଗଜ ଇବ ବେଗଦୀର୍ଘୀକୃତାଙ୍ଗଃ ସନ୍ ପ୍ରତିପଥଗତିଃ ଆସୀତ୍ ।

ପଦ୍ୟାନୁବାଦ -

ଶୀଘ୍ର ହିମବାନ ପହଞ୍ଚି ସେ ସ୍ଥାନ
ଦେଖିଲେ କନ୍ୟା ପାର୍ବତୀ
ଶିବଭୟେ ତ୍ରସ୍ତ ନେତ୍ର ନିମିଳିତ
ସତେକି ଦୟାର ପାତ୍ରୀ ।
ବାହୁଦ୍ୱୟେ ଟେକି ନେଲେ ସେ କନ୍ୟାକୁ
ତୀବ୍ର ପଦପାତେ ଯାଇ
ସୁଦୀର୍ଘ ଶରୀର ବାହୁଯୁଗେ କନ୍ୟା
ଧରି ଠିଆହେଲେ ତହିଁ ।
ସ୍ୱର୍ଗ ଐରାବତ ଶୁଣ୍ଢେ ତା'ର ଏକ
ଝାଉଁଳା କମଳ ଧରି
ଠିଆହେଲା ପ୍ରାୟ ଦିଶୁଥିଲେ ଗିରି-
ରାଜ ସହ କନ୍ୟା ଗୌରୀ ॥ ୭୬ ॥

***

(ଦ୍ୱିତୀୟ ସର୍ଗଃ ଶେଷ)

# ଚତୁର୍ଥ ସର୍ଗଃ

### ଶ୍ଳୋକ- ୧

ଅଥ ମୋହପରାୟଣା ସତୀ
ବିବଶା କାମବଧୂର୍ବିବୋଧିତା ।
ବିଧିନା ପ୍ରତିପାଦୟିଷ୍ୟତା
ନବବୈଧବ୍ୟମସହ୍ୟବେଦନମ୍ ॥ ୧ ॥

ଅନ୍ୱୟ - ଅଥ ମୋହପରାୟଣା ସତୀ ବିବଶା କାମବଧୂଃ ଅସହ୍ୟବେଦନଂ ନବବୈଧବ୍ୟଂ ପ୍ରତିପାଦୟିଷ୍ୟତା ବିଧିନା ବିବୋଧିତା ।

ପଦ୍ୟାନୁବାଦ -

କାମପତ୍ନୀ ରତି ପତି ମୃତ୍ୟୁ ଦେଖି
ଅଚେତରେ ପଡିଥିଲେ
ବୈଧବ ଯାତନା ସହିବା ପାଇଁକି
ବିଧି ଚେତା ଫେରାଇଲେ ॥ ୧ ॥

### ଶ୍ଳୋକ- ୨

ଅବଧାନପରେ ଚକାର ସା
ପ୍ରଳୟାନ୍ତୋନ୍ମିଷିତେ ବିଲୋଚନେ ।
ନ ବିବେଦ ତୟୋରତୃପ୍ତୟୋଃ
ପ୍ରିୟମତ୍ୟନ୍ତବିଲୁପ୍ତଦର୍ଶନମ୍ ॥ ୨ ॥

ଅନ୍ୱୟ - ସା ପ୍ରଳୟାନ୍ତୋନ୍ମିଷିତେ ବିଲୋଚନେ ଅବଧାନପରେ ଚକାର।
କିନ୍ତୁ ପ୍ରିୟମ୍ ଅତୃପ୍ତୟୋଃ ତୟୋଃ ଅତ୍ୟନ୍ତବିଲୁପ୍ତଦର୍ଶନମ୍ ନ ବିବେଦ।

ପଦ୍ୟାନୁବାଦ -

ଶଙ୍କରଙ୍କ ନେତ୍ରୁ ଉଦ୍ଗୀର୍ଣ୍ଣ ଅଗ୍ନିକୁ
ଦେଖି ହେଲେ ଚେତାଶୂନ୍ୟ
ତେଣୁ ପତିଙ୍କର ମୃତ୍ୟୁ ବିଷୟରେ
ନଥିଲା ତାଙ୍କର ଜ୍ଞାନ।
ଚେତା ଫେରିପାଇ ଖୋଲି ନେତ୍ର ଦୁଇ
ଦେଖିଲେ ସେ ଦେଇ ଧ୍ୟାନ
ଅତୃପ୍ତ ଲୋଚନ ପତିଙ୍କ ଦର୍ଶନ
ପାଇବା ହେଲା ସପନ ॥ ୨ ॥

### ଶ୍ଳୋକ- ୩

ଅୟି ଜୀବିତନାଥ ! ଜୀବସୀତି
ଅଭିଧାୟୋତ୍ଥିତୟା ତୟା ପୁରଃ।
ଦଦୃଶେ ପୁରୁଷାକୃତି କ୍ଷିତୌ
ହରକୋପାଽନଳଭସ୍ମ କେବଳମ୍ ॥ ୩ ॥

ଅନ୍ୱୟ - ଅୟି ଜୀବିତନାଥ ! ଜୀବସି ? ଇତି ଅଭିଧାୟ ଉତ୍ଥିତୟା ତୟା ପୁରଃ କ୍ଷିତୌ
ପୁରୁଷାକୃତି କେବଳମ୍ ହରକୋପାଽନଳଭସ୍ମ ଦଦୃଶେ।

ପଦ୍ୟାନୁବାଦ -

ଆହେ ପ୍ରାଣନାଥ ! ଅଛକି ଜୀବିତ
କହିଣ ଉଠିଲେ ରତି
ଦେଖିଲେ ସମ୍ମୁଖେ ପଡିଅଛି ଭସ୍ମ
ଏକ ପୁରୁଷ ଆକୃତି।
ସେ ପୁରୁଷାକୃତି ଭସ୍ମ ଥିଲା ତାଙ୍କ
ପତି କାମଦେବଙ୍କର
ଅତ୍ୟନ୍ତ କ୍ରୋଧିତ ହୋଇ ଭସ୍ମୀଭୂତ
କରିଥିଲେ ତାଙ୍କୁ ହର ॥ ୩ ॥

## ଶ୍ଲୋକ- ୪

ଅଥ ସା ପୁନରେବ ବିହ୍ୱଳା
ବସୁଧାଲିଙ୍ଗନଧୂସରସ୍ତନୀ ।
ବିଲଲାପ ବିକୀର୍ଣ୍ଣମୂର୍ଦ୍ଧଜା
ସମଦୁଃଖାମିବ କୁର୍ବତୀ ସ୍ଥଳୀମ୍ ॥ ୪ ॥

ଅନ୍ୱୟ - ଅଥ ପୁନଃ ଏବ ବିହ୍ୱଳା ବସୁଧାଲିଙ୍ଗନଧୂସରସ୍ତନୀ ବିକୀର୍ଣ୍ଣମୂର୍ଦ୍ଧଜା ସା ସ୍ଥଳୀଂ ସମଦୁଃଖା କୁର୍ବତୀ ଇବ ବିଲଲାପ ।

ପଦ୍ୟାନୁବାଦ -

ପତିଙ୍କ ମରଣ ହୋଇଛି ଜାଣିଣ
ହେଲେ ଅତ୍ୟନ୍ତ ବିକଳ
ଭୂମି ପରେ ଲୋଟି ଖୋଲିଗଲା ଚୁଟି
ଧୂସରିତ କୁଚସ୍ଥଳ ।
ବିକଳେ ରୋଦନ ହେତୁ ତପୋବନ
ଗୁଞ୍ଜରିତ ସେ ରୋଦନେ ।
ସାରା ତପୋବନ ସମଦୁଃଖୀ ପରି
ପ୍ରତେ ହେଉଥିଲା ମନେ ॥ ୪ ॥

## ଶ୍ଲୋକ- ୫

ଉପମାନମଭୂଦ୍ୱିଳାସିନାଂ
କରଣଂଯତ୍ତବ କାନ୍ତିମତ୍ତୟା ।
ତଦିଦଂ ଗତମୀଦୃଶୀଂ ଦଶାଂ
ନ ବିଦୀର୍ଯ୍ୟେ କଠିନାଃ ଖଲୁ ସ୍ତ୍ରିୟଃ ॥ ୫ ॥

ଅନ୍ୱୟ - ତବ ଯତ୍ କରଣଂ କାନ୍ତିମତ୍ତୟା ବିଳାସିନାମ୍ ଉପମାନମ୍ ଅଭୂତ୍; ତତ୍ ଇଦମ୍ ଈଦୃଶୀଂ ଦଶାଂ ଗତଂ, ତଥାପି ଅହଂ ନ ବିଦୀର୍ଯ୍ୟେ, ହି ସ୍ତ୍ରିୟଃ କଠିନାଃ ଖଲୁ ।

ପଦ୍ୟାନୁବାଦ –

ଆହେ ପ୍ରିୟ ମୋର ଶରୀର ତୁମର
ସୁନ୍ଦର ଜାଣେ ଜଗତ
ବିଳାସୀ ପୁରୁଷ ପାଇଁ ଉପମାନ
ରୂପେ ଥିଲ ଆହେ ନାଥ ।
ଆଜି ତୁମ ଦଶା ଦେଖିକରି କିମ୍ପା
ଫାଟି ଯାଉନି ମୋ ଛାତି
ଏଥିପାଇଁ ଲୋକ କହନ୍ତି ନାରୀଙ୍କ
ହୃଦୟ କଠୋର ଅତି ॥ ୫ ॥

## ଶ୍ଳୋକ- ୬

କ୍ୱ ନୁ ମାଂ ତ୍ୱଦଧୀନଜୀବିତାଂ
ବିନିକୀର୍ଯ୍ୟ କ୍ଷଣଭିନ୍ନସୌହୃଦଃ ।
ନଳିନୀଂ କ୍ଷତସେତୁବନ୍ଧନୋ
ଜଳସଙ୍ଘାତ ଇବାଽସି ବିଦ୍ରୁତ ଅସି ॥ ୬ ॥

ଅନ୍ୱୟ – ହେ ପ୍ରିୟ ! କ୍ଷତସେତୁବନ୍ଧନଃ ଜଳସଙ୍ଘାତଃ ନଳିନୀଂ ଇବ ତ୍ୱଦଧୀନଜୀବିତାଂ ମାଂ ବିନିକୀର୍ଯ୍ୟ କ୍ଷଣଭିନ୍ନସୌହୃଦଃ ସନ୍ କ୍ୱ ନୁ ବିଦ୍ରୁତଃ ଅସି ।

ପଦ୍ୟାନୁବାଦ –

ବନ୍ଧ ଗଲେ ଭାଙ୍ଗି ଜଳ ଯେଉଁପରି
କମଳକୁ ଛାଡିଦେଇ
ନ ଭାବି ତା କଥା ବହିଯାଏ ବେଗେ
ଅନ୍ୟସ୍ଥାନେ ରହେ ଯାଇ ।
ସେହପରି ମୋର ଜୀବନ ତୁମର
ଆଶରାରେ ଥିଲା ରହି
ନିମିଷକେ ଛାଡି ସମ୍ପର୍କ ତୁଟାଇ
ରହିଲ କେଉଁଠି ଯାଇ ॥ ୬ ॥

### ଶ୍ଳୋକ- ୭

କୃତବାନସି ବିପ୍ରିୟଂ ନ ମେ
ପ୍ରତିକୂଳଂ ନ ଚ ତେ ମୟା କୃତମ୍।
କିମକାରଣମେବ ଦର୍ଶନଂ
ବିଳପନ୍ତ୍ୟୈ ରତୟେ ନ ଦୀୟତେ ॥ ୭ ॥

ଅନ୍ୱୟ - ହେ ପ୍ରିୟ ! ତ୍ୱଂ ମେ ବିପ୍ରିୟଂ କୃତବାନ୍ ନ ଅସି, ମୟା ଚ ତେ ପ୍ରତିକୂଳଂ ନ କୃତମ୍; ଅକାରଣମ୍ ଏବ ବିଳପନ୍ତ୍ୟୈ ରତୟେ କିଂ ଦର୍ଶନଂ ନ ଦୀୟତେ।

ପଦ୍ୟାନୁବାଦ -

କେବେ ବି ଅପ୍ରିୟ କୌଣସି ବି କାର୍ଯ୍ୟ
କରିତ ନାହିଁ ମୋ ପାଇଁ
ତୁମକୁ ଅପ୍ରିୟ ହେଲାପରି କିଛି
ମୋ ଦ୍ୱାରା ବି ହୋଇନାହିଁ।
ତେବେ କାହିଁ ପାଇଁ ଗଲ ଛାଡିଦେଇ
ଅଛି କି କିଛି କାରଣ
ବିଳାପିକା ଏହି ରତିକୁ କାହିଁକି
ଦିଅ ନାହିଁ ଦରଶନ ॥ ୭ ॥

### ଶ୍ଳୋକ- ୮

ସ୍ମରସି ସ୍ମର ! ମେଖଳାଗୁଣୈରୁତ
ଗୋତ୍ରସ୍ଖଳିତେଷୁ ବନ୍ଧନମ୍।
ଚ୍ୟୁତକେଶରଦୂଷିତେକ୍ଷଣାନି
ଅବନ୍ତସୋତ୍ପଳତାଡନାନି ॥ ୮ ॥

ଅନ୍ୱୟ - ହେ ସ୍ମର ! ଗୋତ୍ରସ୍ଖଳିତେଷୁ ମେଖଳାଗୁଣୈଃ ବନ୍ଧନଂ ସ୍ମରସି ଉତ ? ଚ୍ୟୁତକେଶରଦୂଷିତେକ୍ଷଣାନି ଅବନ୍ତସୋତ୍ପଳତାଡନାନି ବା ସ୍ମରସି।

ପଦ୍ୟାନୁବାଦ -

ସ୍ମର ତୁମେ ଥରେ ମୋହରି ଆଗରେ
କୌଣସି ପ୍ରେମିକା ନାମ
ନେଇଥିଲ ବୋଲି ପ୍ରଣୟ କୋପରେ
ରାଗେ ହୋଇ ତମତମ।
ନିଜ ମେଖଳାରେ ବାନ୍ଧି ମୁଁ ତୁମକୁ
କର୍ଣ୍ଣ ଭୂଷଣ କମଳେ
ମାରନ୍ତେ ମୁଖକୁ କମଳ ପରାଗ
ପଡିଥିଲା ନେତ୍ରଡୋଳେ।
ସେ କଥା ସ୍ମରଣ କରି ଆଜି କଣ
ହୋଇଅଛ ତୁମେ ରୁଷ୍ଟ
ସେଥିପାଇଁ ଯେତେ ଡାକିଲେ ମୁଁ ତୁମେ
ବୁଝୁନାହଁ ମୋର କଷ୍ଟ ॥ ୮ ॥

### ଶ୍ଳୋକ- ୯

ହୃଦୟେ ବସସୀତି ମତ୍ପ୍ରିୟଂ
ଯଦବୋଚସ୍ତଦବୈମି କୈତବଂ।
ଉପଚାରପଦଂ ନ ଚେଦିଦଂ
ତ୍ୱମନଙ୍ଗଃ କଥମକ୍ଷତା ରତିଃ ॥ ୯ ॥

ଅନ୍ୱୟ - 'ହୃଦୟେ ବସସି' ଇତି ମତ୍ପ୍ରିୟଂ ଯତ୍ ଅବୋଚଃ ତତ୍ କୈତବମ୍ ଅବୈମି; ଇଦମ୍ ଉପଚାରପଦଂ ନ ଚେତ୍ ତ୍ୱମ୍ ଅନଙ୍ଗଃ, କଥମ୍ ରତିଃ ଅକ୍ଷତା।

ପଦ୍ୟାନୁବାଦ -

ତୁମେ ପରା ସ୍ମର କହିଥିଲ ମୋର
ହୃଦୟରେ ତୁମେ ଅଛ
ତୁମର ଏ କଥା ନାହିଁ ତା ସତ୍ୟତା
ଛଳନାରେ କହିଅଛ।

ନହେଲେ ତୁମର ସର୍ବାଙ୍ଗ ଶରୀର
ହୋଇଗଲା ଭସ୍ମୀଭୂତ
ତୁମ ହୃଦେ ଥାଇ କିପରି ଯେ ମୁହିଁ
ରହିଛି ଏବେ ଜୀବିତ ॥ ୯ ॥

**ଶ୍ଲୋକ- ୧୦**

ପରଲୋକନବପ୍ରବାସିନଃ
ପ୍ରତିପତ୍ସ୍ୟେ ପଦବୀମହଂ ତବ ।
ବିଧିନା ଜନ ଏଷ ବଞ୍ଚିତଃ
ତ୍ୱଦଧୀନଂ ଖଲୁ ଦେହିନାଂ ସୁଖମ୍ ॥ ୧୦ ॥

ଅନ୍ୱୟ - ପରଲୋକନବପ୍ରବାସିନଃ ତବ ପଦବୀଂ ପ୍ରତିପତ୍ସ୍ୟେ, ବିଧିନା ଏଷ ଜନଃ ବଞ୍ଚିତଃ, ଦେହିନା ସୁଖମ୍ ତ୍ୱଦଧୀନ ଖଲୁ ।

ପଦ୍ୟାନୁବାଦ -

ଆହେ ପ୍ରିୟତମ ଏବେ ଏବେ ତୁମେ
ଯାଇଅଛ ପରଲୋକ
ଏବେ ମଧ୍ୟ ମୁହିଁ ସେହି ପଥେ ଯାଇ
ପହଞ୍ଚିବି ସେହି ଲୋକ ।
ତୁମ୍ଭ ମୃତ୍ୟୁ ଦ୍ୱାରା ସମସ୍ତ ପ୍ରାଣୀଙ୍କୁ
ବିଧାତା କଲେ ବଞ୍ଚିତ
କାରଣ ସମସ୍ତ ପ୍ରାଣୀଙ୍କର ସୁଖ
ତୁମ ପାଶେ ହିଁ ଗଚ୍ଛିତ ॥ ୧୦ ॥

**ଶ୍ଲୋକ- ୧୧**

ରଜନୀତିମିରାବଗୁଣ୍ଠିତେ
ପୁରମାର୍ଗେ ଘନଶବ୍ଦବିକ୍ଳବାଃ ।
ବସତିଂ ପ୍ରିୟ ! କାମିନାଂ ପ୍ରିୟାଃ
ତ୍ୱଦୃତେ ପ୍ରାପୟିତୁଂ କ ଈଶ୍ୱରଃ ॥ ୧୧ ॥

ଅନ୍ୱୟ - ହେ ପ୍ରିୟ ! ରଜନୀତିମିରାବଗୁଣ୍ଠିତେ ପୁରମାର୍ଗେ ଘନଶବ୍ଦବିକ୍ଳବାଃ
ପ୍ରିୟାଃ କାମିନାଂ ବସତିଂ ପ୍ରାପୟିତୁଂ ତ୍ୱତ୍ ଋତେ କଃ ଈଶ୍ୱରଃ ।

ପଦ୍ୟାନୁବାଦ -

ଘନ ଅନ୍ଧକାରେ ନଗର ପଥରେ
ଅଭିସାରେ ପୁରନାରୀ
ଗମନ କାଳରେ ମେଘ ଗରଜନ
ଶୁଣି ଯାଇଥାନ୍ତି ଡରି ।
ପ୍ରିୟତମ ଘରେ ପହଞ୍ଚାଇବାରେ
କରୁଥିଲ ସହାୟତା
ତୁମେ ନାହଁ ଏବେ କିଏସେ ବୁଝିବ
ସେମାନଙ୍କ ଦୁଃଖ କଥା ॥ ୧୧ ॥

**ଶ୍ଳୋକ- ୧୨**

ନୟନାନ୍ୟରୁଣାନି ଘୂର୍ଣ୍ଣୟନ୍
ବଚନାନି ସ୍ଖଳୟନ୍ ପଦେ ପଦେ ।
ଅସତି ତ୍ୱୟି ବାରୁଣୀମଦଃ
ପ୍ରମଦାନାମଧୁନା ବିଡମ୍ବନା ॥ ୧୨ ॥

ଅନ୍ୱୟ - ଅରୁଣାନି ନୟନାନି ଘୂର୍ଣ୍ଣୟନ୍ ପଦେ-ପଦେ ବଚନାନି ସ୍ଖଳୟନ୍
ପ୍ରମଦାନାଂ ବାରୁଣୀମଦଃ ଅଧୁନା ତ୍ୱୟି ଅସତି ବିଡମ୍ବନା ।

ପଦ୍ୟାନୁବାଦ-

ଯେଉଁ ସବୁ ନାରୀ ମଦ୍ୟ ପାନକରି
ଆରକ୍ତ ନେତ୍ର ଘୂରାଇ
କହିବାକୁ ଚାହିଁ ସ୍ପଷ୍ଟ ଉଚ୍ଚାରଣ
କରି ପାରନ୍ତିନି କହି ।
ତୁମ ଅଭାବରେ ସେମାନଙ୍କ ଦ୍ୱାରା
ଏ କାର୍ଯ୍ୟ ନୁହେଁ ସମ୍ଭବ
ଏ ମଦିରା ପାନ ସେମାନଙ୍କ ପାଇଁ
ବିଡମ୍ବନା ହୋଇଯିବ ॥ ୧୨ ॥

### ଶ୍ଳୋକ- ୧୩

ଅବଗମ୍ୟ କଥୀକୃତଂ ବପୁଃ
ପ୍ରିୟବନ୍ଧୋସ୍ତବ ନିଷ୍ଫଳୋଦୟଃ।
ବହୁଳେଽପି ଗତେ ନିଶାକରଃ
ତନୁତାଂ ଦୁଃଖମନଙ୍ଗ ! ମୋକ୍ଷ୍ୟତି ॥ ୧୩ ॥

ଅନ୍ୱୟ - ହେ ଅନଙ୍ଗ ! ପ୍ରିୟବନ୍ଧୋଃ ତବ ବପୁଃ କଥୀକୃତମ୍ ଅବଗମ୍ୟ ନିଷ୍ଫଳୋଦୟଃ, ନିଶାକରଃ ବହୁଳ ଗତେ ଅପି ତନୁତା ଦୁଃଖଂ ମୋକ୍ଷ୍ୟତି ॥

ପଦ୍ୟାନୁବାଦ -

ହେ ପ୍ରିୟ ଅନଙ୍ଗ ଚନ୍ଦ୍ର ତୁମ ସାଙ୍ଗ
କାଣି ତୁମର ଦେହାନ୍ତ
ନିଜର ଉଦୟ ହେବା ପାଇଁ ଏବେ
ଭାବୁଅଛି ଅଟେ ବ୍ୟର୍ଥ।
ଏଣୁ କୃଷ୍ଣପକ୍ଷ ବିତିଥିଲେ ମଧ୍ୟ
ନିଜ ଶରୀର କ୍ଷୀଣତା
ଛାଡିବା ପାଇଁକି ନିଶ୍ଚୟ ତା ପକ୍ଷେ
ଏକ ବଡ କଠିନତା ॥ ୧୩ ॥

### ଶ୍ଳୋକ- ୧୪

ହରିତାରୁଣଚାରୁବନ୍ଧନଃ
କଳପୁଂସ୍କୋକିଳଶବ୍ଦସୂଚିତଃ।
ବଦ ସମ୍ପ୍ରତି କସ୍ୟ ବାଣତାଂ
ନବଚୂତପ୍ରସବୋ ଗମିଷ୍ୟତି ॥ ୧୪ ॥

ଅନ୍ୱୟ - ହରିତାରୁଣଚାରୁବନ୍ଧନଃ କଳପୁଂସ୍କୋକିଳଶବ୍ଦସୂଚିତଃ ନବଚୂତପ୍ରସବଃ ସମ୍ପ୍ରତି କସ୍ୟ ବାଣତାଂ ଗମିଷ୍ୟତି ? ବଦ।

ପଦ୍ୟାନୁବାଦ -

ହେ ପ୍ରିୟ ମଦନ ! ନୀଳ ଲାଲ ବର୍ଣ୍ଣ
ନବୀନ ଆମ୍ର ମୁକୁଳ
କୋକିଳ କୂଜନ ଶୁଣି ଫୁଟିବାକୁ
ହୁଅନ୍ତି ମନେ ବ୍ୟାକୁଳ ।
ତୁମର ଅଭାବ କରେ ଅନୁଭବ
ନବୀନ ଆମ୍ର ମଞ୍ଜରୀ
କିଏ ସେ ମଞ୍ଜରୀ ଫୁଲଶର କରି
ବିନ୍ଧିବ ତୁମରି ପରି ॥ ୧୪ ॥

**ଶ୍ଳୋକ- ୧୫**

ଅଳିପଂକ୍ତିରନେକଶସ୍ତ୍ୱୟା
ଗୁଣକୃତ୍ୟେ ଧନୁଷୋ ନିୟୋଜିତା ।
ବିରୁତୈଃ କରୁଣସ୍ୱନୈରିୟଂ
ଗୁରୁଶୋକାମନୁରୋଦିତୀବ ମାମ୍ ॥ ୧୫ ॥

ଅନ୍ୱୟ - ତ୍ୱୟା ଅନେକଶଃ ଧନୁଷଃ ଗୁଣକୃତ୍ୟେ ନିୟୋଜିତା ଇୟମ୍ ଅଳିପଂକ୍ତିଃ କରୁଣସ୍ୱନୈଃ ବିରୁତୈଃ ଗୁରୁଶୋକାଂ ମାମ୍ ଅନୁରୋଦିତି ଇବ ।

ପଦ୍ୟାନୁବାଦ -

ପୂର୍ବେ କେତେବାର ଧନୁରେ ତୁମର
କୃଷ୍ଣ ଅଳି ପଂକ୍ତି ନେଇ
ଧନୁ ଗୁଣ ସ୍ଥାନେ ଗୁଣ ରୂପେ ତୁମେ
ବାନ୍ଧିଛ ଧନୁରେ ନେଇ ।
ତୁମ ଅଭାବରେ କରୁଣ ସ୍ୱରରେ
ତୋଳନ୍ତି ଆଜି ଗୁଞ୍ଜନ
ମୁଁ ଯେ ଅଭାଗିନୀ ମୋ ସହିତ କାନ୍ଦି
ଶୋକରେ ହୁଅନ୍ତି ମଗ୍ନ ॥ ୧୫ ॥

### ଶ୍ଲୋକ- ୧୬

ପ୍ରତିପଦ୍ୟ ମନୋହରଂ ବପୁଃ
ପୁନରପ୍ୟାଦିଶ ତାବଦୁତ୍ଥିତଃ ।
ରତିଦୂତିପଦେଷୁ କୋକିଳାଂ
ମଧୁରାଳାପନିସର୍ଗପଣ୍ଡିତାମ୍ ॥ ୧୬ ॥

ଅନ୍ୱୟ - ତାବତ୍ ପୁନଃ ଅପି ମନୋହରଂ ବପୁଃ ପ୍ରତିପଦ୍ୟ ଉତ୍ଥିତଃ ସନ୍ ମଧୁରାଳାପନିସର୍ଗପଣ୍ଡିତାମ୍ କୋକିଳାଂ ରତିଦୂତିପଦେଷୁ ଆଦିଶ ।

ପଦ୍ୟାନୁବାଦ -

ଆହେ ପ୍ରିୟ ମୋର ଉଠ ପୁନର୍ବାର
ଧରି ସୁନ୍ଦର ଶରୀର
ମଧୁର କୂଜନ କଳାରେ ନିପୁଣ
କୋକିଳାକୁ ଆଜ୍ଞା କର ।
ନିଜକୁ ସେ ରତି- ସମ୍ପର୍କର ଦୂତୀ
ଭାବେ କରି ନିୟୋଜିତ
କାମୀ ଓ କାମିନୀ ମଧ୍ୟେ ରତିକ୍ରୀଡା
କରୁ ସାଫଲ୍ୟମଣ୍ଡିତ ॥ ୧୬ ॥

### ଶ୍ଲୋକ- ୧୭

ଶିରସା ପ୍ରଣିପତ୍ୟ ଯାଚିତାନି
ଉପଗୁଢାନି ସବେପଥୂନି ଚ ।
ସୁରତାନି ଚ ତାନି ତେ ରହଃ
ସ୍ମର ! ସଂସ୍ମୃତ୍ୟ ନ ଶାନ୍ତିରସ୍ତି ମେ ॥ ୧୭ ॥

ଅନ୍ୱୟ - ହେ ସ୍ମର ! ତେ ଶିରସା ପ୍ରଣିପତ୍ୟ ଯାଚିତାନି ସବେପଥୂନି ଉପଗୂଢାନି ଚ, ତାନି ରହଃ ସୁରତାନି ଚ ସଂସ୍ମୃତ୍ୟ ମେ ଶାନ୍ତିଃ ନ ଅସ୍ତି ।

ପଦ୍ୟାନୁବାଦ -

ମୋ ଚରଣେ ଶିର ରଖି ଆହେ ସ୍ମର !
ପ୍ରେମ ଭିକ୍ଷା କରୁଥିଲ
ସ୍ପନ୍ଦିତ ଶରୀରେ ଦେଇ କଣ୍ଠାଶ୍ଳେଷ
ରତି ସୁଖ ଦେଉଥିଲ ।
ସେଇ ସ୍ମୃତି ମୋର ହେଲେ ଉଜାଗର
ଛାତି ମୋ ହୁଏ କରତୀ
ଯେତେ ପରକାରେ ବୁଝାଇଲେ ମନ
ମିଳେନାହିଁ ମୋତେ ଶାନ୍ତି ॥ ୧୭ ॥

### ଶ୍ଳୋକ- ୧୮

ରଚିତଂ ରତିପଣ୍ଡିତ ! ତ୍ୱୟା
ସ୍ୱୟମଙ୍ଗେଷୁ ମମେଦମାର୍ତବମ୍ ।
ଧ୍ରିୟତେ କୁସମପ୍ରସାଧନଂ
ତବ ତଚ୍ଚାରୁବପୁର୍ନ ଦୃଶ୍ୟତେ ॥ ୧୮ ॥

ଅନ୍ୱୟ - ହେ ରତିପଣ୍ଡିତ ! ତ୍ୱୟା ମମ ଅଙ୍ଗେଷୁ ସ୍ୱୟଂ ରଚିତମାର୍ତବଂ କୁସମପ୍ରସାଧନମ୍ ଇଦଂ ଧ୍ରିୟତେ, ତବ ତତ୍ ଚାରୁ ବପୁଃ ନ ଦୃଶ୍ୟତେ ।

ପଦ୍ୟାନୁବାଦ -

ହେ ରତି ପ୍ରବୀଣ ବସନ୍ତ ସୁମନ
ନେଇ ମୋ ଅଙ୍ଗ ଶୃଙ୍ଗାର
କରିଥିଲ ନିଜ ହସ୍ତେ ଯାହା ଆଜ
ରହିଛି ସେ ପୁଷ୍ପହାର ।
ଏବେ ବି ମୁଁ ସେହି ପୁଷ୍ପ ଆଭୂଷଣ
କରିଛି ଅଙ୍ଗେ ଧାରଣ
ହେଲେ ତୁମ ସେହି ସୁନ୍ଦର ଶରୀର
କରି ପାରୁନି ଦର୍ଶନ ॥ ୧୮ ॥

## ଶ୍ଳୋକ- ୧୯

ବିବୁଧୈରସି ଯସ୍ୟ ଦାରୁଣୈଃ
ଅସମାପ୍ତେ ପରିକର୍ମଣି ସ୍ମୃତଃ ।
ତମିମଂ କୁରୁ ଦକ୍ଷିଣେତରଂ
ଚରଣଂ ନିର୍ମିତରାଗମେହି ମେ ॥ ୧୯ ॥

ଅନ୍ୱୟ - ଦାରୁଣୈଃ ବିବୁଧୈଃ ଯସ୍ୟ ପରିକର୍ମଣି ଅସମାପ୍ତେ ସ୍ମୃତଃ ଅସି,
ତମ୍ ଇମଂ ଦକ୍ଷିଣେତରଂ ମେ ଚରଣଂ ନିର୍ମିତରାଗଂ କୁରୁ, ଏହି ।

ପଦ୍ୟାନୁବାଦ -

ମୋ ଦକ୍ଷିଣ ପଦ ଲାଲ ଲାକ୍ଷା ରସେ
ରଙ୍ଗାଇ ହିଁ ପାରିଥିଲ
ଦୁଷ୍ଟ ଦେବଗଣ କରନ୍ତେ ସ୍ମରଣ
ଛାଡିଦେଇ ଚଳିଗଲ ।
ମୋ ବାମ ଚରଣ ଲାକ୍ଷାରେ ରଞ୍ଜନ
ହୋଇନାହିଁ ଏପର୍ଯ୍ୟନ୍ତ
ଆସି ଏବେ ବାରେ ସେ ପାଦକୁ ଥରେ
କର ସେ ରଙ୍ଗେ ରଞ୍ଜିତ ॥ ୧୯ ॥

## ଶ୍ଳୋକ- ୨୦

ଅହମେତ୍ୟ ପତଙ୍ଗବର୍ମ୍ମନା
ପୁନରଙ୍କାଶ୍ରୟଣୀ ଭବାମି ତେ ।
ଚତୁରୈଃ ସୁରକାମିନୀଜନୈଃ
ପ୍ରିୟ ! ଯାବନ୍ନ ବିଲୋଭ୍ୟସେ ଦିବି ॥ ୨୦ ॥

ଅନ୍ୱୟ - ଅହଂ ପତଙ୍ଗବର୍ମ୍ମନା ଏତ୍ୟ ପୁନଃ ତେ, ଅଙ୍କାଶ୍ରୟଣୀ ଭବାମି, ହେ ପ୍ରିୟ !
ଦିବି ଚତୁରୈଃ ସୁରକାମିନୀଜନୈଃ ଯାବତ୍ ନ ବିଲୋଭ୍ୟସେ ।

ପଦ୍ୟାନୁବାଦ -

ସ୍ୱର୍ଗର ଚତୁରୀ ସୁନ୍ଦରୀ ଅପ୍ସରୀ
ତୁମକୁ ନେବେ ମନେଇ
ତା ପୂର୍ବରୁ ତେଣୁ ପତଙ୍ଗ ପରାୟେ
ଭସ୍ମ ହୋଇଯିବି ମୁହିଁ ।
ଭସ୍ମ ହେଲା ପରେ ଯିବି ସ୍ୱର୍ଗପୁରେ
ପହଞ୍ଚି ପାଶେ ତୁମର
କୋଳକୁ ତୁମର କରିବି ମଣ୍ଡନ
ପ୍ରିୟ ମୋର ପୁନର୍ବାର ॥ ୨୦ ॥

**ଶ୍ଳୋକ- ୨୧**

ମଦନେନ ବିନାକୃତା ରତିଃ
କ୍ଷଣମାତ୍ରଂ କିଳ ଜୀବତେତି ମେ ।
ବଚନୀୟମିଦଂ ବ୍ୟବସ୍ଥିତଂ
ରମଣ ! ତ୍ୱାମନୁଯାମି ଯଦ୍ୟପି ॥ ୨୧ ॥

ଅନ୍ୱୟ - ହେ ରମଣ ! ତ୍ୱାମ୍ ଅନୁଯାମି ଯଦ୍ୟପି, କିନ୍ତୁ ରତିଃ ମଦନେନ ବିନାକୃତା କ୍ଷଣମାତ୍ରଂ ଜୀବିତା କିଳ ଇତି ଇଦଂବଚନୀୟଂ ମେ ବ୍ୟବସ୍ଥିତମ୍ ।

ପଦ୍ୟାନୁବାଦ -

ଆହେ ପ୍ରିୟ ମୋର ଯଦ୍ୟପି ତୁମର
ପଛେ ପଛେ ଯାଇ ମୁହିଁ
ନିକଟେ ତୁମର ପହଞ୍ଚିବି ଶୀଘ୍ର
ଅପବାଦ ଗଲା ରହି ।
ହେଲେ ମଧ୍ୟ ଅତି ଅଳ୍ପକ୍ଷଣ ରତି
ମଦନ ବିନା ଜୀବିତ
ଥିଲା ବୋଲି ନିଶ୍ଚେ ସବୁଦିନ ପାଇଁ
କହିବ ଏହି ଜଗତ ॥ ୨୧ ॥

### ଶ୍ଳୋକ- ୨୨

କ୍ରିୟତାଂ କଥମନ୍ତ୍ୟମଣ୍ଡନଂ
ପରଲୋକାନ୍ତରିତସ୍ୟ ତେ ମୟା ।
ସମମେବ ଗତୋଽସ୍ୟତର୍କିତାଂ
ଗତିମଙ୍ଗେନ ଚ ଜୀବିତେନ ଚ ॥ ୨୨ ॥

ଅନ୍ୱୟ - ପରଲୋକାନ୍ତରିତସ୍ୟ ତେ ମୟା ଅନ୍ତ୍ୟମଣ୍ଡନଂ କଥଂ କ୍ରିୟତାମ୍ ?
ଅଙ୍ଗେନଜୀବିତେନ ଚ ସମମ୍ ଏବ ଅତର୍କିତାଂ ଗତିଂ ଗତଃ ଅସି ।

ପଦ୍ୟାନୁବାଦ -

ତୁମ ଭସ୍ମୀଭୂତ ଶରୀର ସହିତ
ଆହେ ପ୍ରିୟତମ ମୁହିଁ
ଅନ୍ତିମ ଶୃଙ୍ଗାର କିପରି କରିବି
ବୁଝି ମୁଁ ତା ପାରୁନାହିଁ ।
କାରଣ ତୁମର ପ୍ରାଣ ଓ ଶରୀର
ଏକ ସଙ୍ଗରେ ଉଭୟ
ଏପରି ବିଚିତ୍ର ସ୍ଥିତିରେ ରହିଛି
କରି ପାରେନି ମୁଁ ତୟ ॥ ୨୨ ॥

### ଶ୍ଳୋକ- ୨୩

ଋଜୁତାଂ ନୟତଃ ସ୍ମରାମି ତେ
ଶରମୁତ୍ସଙ୍ଗନିଷଣ୍ଣଧନ୍ୱନଃ ।
ମଧୁନା ସହ ସସ୍ମିତାଂ କଥାଂ
ନୟନୋପାନ୍ତବିଲୋକିତଞ୍ଚ ଯତ୍ ॥ ୨୩ ॥

ଅନ୍ୱୟ - ଶରମ୍ ଋଜୁତାଂ ନୟତଃ ଉତ୍ସଙ୍ଗନିଷଣ୍ଣଧନ୍ୱନଃ ତେ ମଧୁନା ସହ ସସ୍ମିତାଂ କଥାଂ,
ନୟନୋପାନ୍ତବିଲୋକିତଂ ଚ, ତଚ୍ଚ ସ୍ମରାମି ।

ପଦ୍ୟାନୁବାଦ -

ନିଜ ଅଙ୍କ ପରେ ଧନୁ ରଖି ଧୀରେ
ଶର ସଳଖିବା କାଳେ
ବସନ୍ତ ସହିତ କଥାହୋଇ ମୋତେ
ଉହୁଁଥିଲ ବେଳେବେଳେ ।
ସେହି ଦୃଶ୍ୟପଟ୍ଟ ମନ ମଧ୍ୟେ ମୋର
ହୁଏ ଏବେ ଉଦ୍-ଜୀବିତ
ଯେତେ ଚେଷ୍ଟାକଲେ କୋଣସି ପ୍ରକାରେ
ଭୁଲି ପାରେନା ସେ ଚିତ୍ର ॥ ୨୩ ॥

### ଶ୍ଳୋକ- ୨୪

କ୍ୱ ନୁ ତେ ହୃଦୟଙ୍ଗମଃ ସଖା
କୁସୁମାଯୋଜିତକାର୍ମୁକୋ ମଧୁଃ ।
ନ ଖଳୂଗ୍ରରୁଷା ପିନାକିନା ଗମିତଃ
ସୋଽପି ସୁହୃଦ୍-ଗତାଂ ଗତିମ୍ ॥ ୨୪ ॥

ଅନ୍ୱୟ - ହୃଦୟଙ୍ଗମଃ ତେ ସଖା କୁସୁମାଯୋଜିତକାର୍ମୁକଃ ମଧୁ କ୍ୱ ନୁ । ଅଥବା ସଃ ଅପି ଉଗ୍ରରୁଷା ପିନାକିନା ସୁହୃଦ୍-ଗତାଂ ଗତିଂ ନ ଗମିତଃ ଖଳୁ ।

ପଦ୍ୟାନୁବାଦ -

ହେ ସଖା ଅତନୁ ତୁମ ପାଇଁ ଧନୁ
ନିଜ ପୁଷ୍ପରେ ତିଆରି
କରୁଥିଲେ ମିତ୍ର ତୁମର ବସନ୍ତ
ଦେଖା ମିଳେନା ତାଙ୍କରି ।
କ୍ରୋଧରେ ମହେଶ କରିଲେ କି ଭସ୍ମ
ବସନ୍ତକୁ ତୁମ ପରି
ସେ ପାଇଁ ସେ ଦୃଶ୍ୟ ହୁଅନ୍ତିନି ଏଠି
ଦିଶେ ସବୁ ହତଶିରୀ ॥ ୨୪ ॥

### ଶ୍ଳୋକ- ୨୫

ଅଥ ତୈଃ ପରିଦେବିତାକ୍ଷରୈଃ
ହୃଦୟେ ଦିଗ୍ଧଶରୈରିବାହତଃ।
ରତିମଭ୍ୟୁପପତ୍ତୁମାତୁରାଂ
ମଧୁରାତ୍ମାନମଦର୍ଶୟତ୍‌ପୁରଃ ॥ ୨୫ ॥

ଅନ୍ୱୟ - ଅଥ ତୈଃ ପରିଦେବିତାକ୍ଷରୈଃ ହୃଦୟେ ଦିଗ୍ଧଶରୈଃ ଇବ ଆହତଃ ମଧୁଃ ଆତୁରାଂ ରତିମ୍ ଅଭ୍ୟୁପପତ୍ତୁମ୍ ଆତ୍ମାନଂ ପୁରଃ ଅଦର୍ଶୟତ୍।

ପଦ୍ୟାନୁବାଦ

ମଦନଙ୍କ ମିତ୍ର ଅଟେ ସେ ବସନ୍ତ
ଶୁଣି ରତିଙ୍କ ରୋଦନ
ବିଷବୃକ୍ଷେ ବାଣ ବିଦ୍ଧ ହେଲା ପ୍ରାୟ
ହୃଦୟ ହେଲା ବିଦୀର୍ଣ୍ଣ।
ସେ କ୍ରନ୍ଦନ ଶବ୍ଦ ଶୁଣିଣ ବସନ୍ତ
ଆହତ ପ୍ରାୟେଣ ହୋଇ
ରତିକୁ ସାନ୍ତ୍ୱନା ପ୍ରଦାନ ପାଇଁକି
ଉପସ୍ଥିତ ହେଲେ ତହିଁ ॥ ୨୫ ॥

### ଶ୍ଳୋକ- ୨୬

ତମବେକ୍ଷ୍ୟ ରୁରୋଦ ସା ଭୃଶଂ
ସ୍ତନସମ୍ବାଧମୁରୋ ଜଘାନ ଚ।
ସ୍ୱଜନସ୍ୟ ହି ଦୁଃଖମଗ୍ରତୋ
ବିବୃତଦ୍ୱାରମିବୋପଜାୟତେ ॥ ୨୬ ॥

ଅନ୍ୱୟ - ସା ତମ୍ ଅବେକ୍ଷ୍ୟ ଭୃଶଂ ରୁରୋଦ, ସ୍ତନସମ୍ବାଧମ୍ ଉରୋ ଜଘାନ ଚ; ହି ସ୍ୱଜନସ୍ୟ ଅଗ୍ରତଃ ଦୁଃଖଂ ବିବୃତଦ୍ୱାରମ୍ ଇବ ଉପଜାୟତେ।

ପଦ୍ୟାନୁବାଦ -

ମଦନଙ୍କ ମିତ୍ର ବସନ୍ତକୁ ରତି
ନିଜ ପାଖରେ ଦେଖିଣ
ବକ୍ଷକୁ ଆଘାତ କରି ବାରମ୍ବାର
କଲେ ଅଧିକ ରୋଦନ ।
ଦୁଃଖ ସମୟରେ ନିଜ ସମ୍ମୁଖରେ
ଦେଖିଲେ ଆପଣା ଜନ
ଏକ ପରେ ଆନ ଦୁଃଖର କାରଣ
ଦ୍ୱାର ହୁଏ ଉନ୍ମୋଚନ ॥ ୨୬ ॥

**ଶ୍ଳୋକ- ୨୭**

ଇତି ଚୈନମୁବାଚ ଦୁଃଖିତା
ସୁହୃଦଃ ପଶ୍ୟ ବସନ୍ତ କିଂ ସ୍ଥିତମ ।
ତଦିଦଂ କଣଶୋ ବିକୀର୍ଯତେ
ପବନୈର୍ଭସ୍ମ କପୋତକର୍ବୁରମ୍ ॥ ୨୭ ॥

ଅନ୍ୱୟ - ଦୁଃଖିତାଃ ସା ଏନମ୍ ଇତି ଉବାଚହେ ବସନ୍ତ ! ପଶ୍ୟ, ସୁହୃଦଃ କିଂ ସ୍ଥିତମ୍ ?
ତତ୍ ଇଦଂ କପୋତକର୍ବୁରଂ ଭସ୍ମ ପବନୈଃ କଣସଃ ବିକୀର୍ଯତେ ।

ପଦ୍ୟାନୁବାଦ -

ଅତି ଦୁଃଖେ ରତି ପାଗଳୀ ପରାୟେ
କହନ୍ତି ବସନ୍ତ ଦେଖ
ତୁମ ପ୍ରିୟ ମିତ୍ର ମନ୍ମଥଙ୍କ ଦଶା
କିପରି ଅଛି ନିରେଖ ।
କପୋତର ବର୍ଣ୍ଣ ପରାୟ ସମାନ
ତୁମ ମିତ୍ର ଭସ୍ମକଣ
ଏଣେତେଣେ ନେଇ ପକାଏ ଉଡାଇ
ବହିକରି ଏ ପବନ ॥ ୨୭ ॥

### ଶ୍ଲୋକ- ୨୮

ଅୟି ସମ୍ପ୍ରତି ଦେହି ଦର୍ଶନଂ ସ୍ମର !
ପର୍ଯ୍ୟୁତ୍ସୁକ ଏଷ ସାଧବଃ ।
ଦୟିତାସ୍ୱନବସ୍ଥିତଂ ନୃଣାଂ
ନ ଖଲୁ ପ୍ରେମ ଚଳଂ ସୁହୃଜ୍ଜନେ ॥ ୨୮ ॥

ଅନ୍ୱୟ - ଅୟି ସ୍ମର ! ସମ୍ପ୍ରତି ଦର୍ଶନଂ ଦେହି, ଏଷ ମାଧବଃ ପର୍ଯ୍ୟୁତ୍ସୁକଃ ଅସ୍ତି, ନୃଣାଂ ଦୟିତାସୁ ପ୍ରେମ ଅନବସ୍ଥିତଂ, ସୁହୃଜ୍ଜନେ ପ୍ରେମ ତୁ ନ ଚଳଂ ଖଲୁ ।

ପଦ୍ୟାନୁବାଦ -

ହେ ପ୍ରିୟ ମନ୍ମଥ ତୁମ ପ୍ରିୟ ମିତ୍ର
ବସନ୍ତ ଉତ୍କଣ୍ଠାଭରେ
ତୁମ୍ଭଙ୍କୁ ଦେଖିବା ପାଇଁ ଏଠି ଉଭା
ଦେଖାଦିଅ ତାଙ୍କୁ ବାରେ ।
ପୁରୁଷଙ୍କ ପ୍ରୀତି ନିଜ ସ୍ତ୍ରୀ ପ୍ରତି
ନହୋଇ ପାରେ ସୁଦୃଢ
ହେଲେ ବନ୍ଧୁ ପ୍ରୀତି ସ୍ତ୍ରୀ ପ୍ରୀତିଠାରୁ
ଅଟଇ ଅଚଳ ଦୃଢ ॥ ୨୮ ॥

### ଶ୍ଲୋକ- ୨୯

ଅମୁନା ନନୁ ପାର୍ଶ୍ୱବର୍ତ୍ତିନା
ଯଗଦାଜ୍ଞାଂ ସସୁରାସୁରଂ ତବ ।
ବିସନ୍ତଗୁଣସ୍ୟ କାରିତଂ
ଧନୁଷଃ ପେଲବପୁଷ୍ପପତ୍ରିଣଃ ॥ ୨୯ ॥

ଅନ୍ୱୟ - ପାର୍ଶ୍ୱବର୍ତ୍ତିନା ଅମୁନା ସସୁରାସୁରଂ ଜଗତ୍ ବିସନ୍ତଗୁଣସ୍ୟ ପେଲବପୁଷ୍ପପତ୍ରିଣଃ ତବ ଧନୁଷଃ ଆଜ୍ଞାଂ କାରିତଂ ନନୁ ।

ପଦ୍ୟାନୁବାଦ -

ମୃଣାଳର ସୂତ୍ର ଗୁଣ ଯେ ଧନୁର
କୋମଳ ପୁଷ୍ପ ଯା ତୀର
ସେ ଧନୁର ଦିନେ ଅଧିକାରୀ ଥିଲ
ତୁମେ ସ୍ମର ପ୍ରିୟ ମୋର ।
ତୁମ ପ୍ରିୟ ମିତ୍ର ବସନ୍ତଙ୍କ ଦ୍ୱାରା
ଥିଲା ଏ ସମ୍ଭବପର
ସାରା ସଂସାରକୁ କରାଇଥିଲେ ସେ
ଆଜ୍ଞାକାରୀ ସେ ଧନୁର ॥ ୨୯ ॥

### ଶ୍ଳୋକ- ୩୦

ଗତ ଏବ ନ ତେ ନିବର୍ତ୍ତତେ
ସ ସଖା ଦୀପ ଇବାନୀଳାହତଃ ।
ଅହମସ୍ୟ ଦଶେବ ପଶ୍ୟ ମାମ୍
ଅବିଷହ୍ୟବ୍ୟସନେନ ଧୂମିତାମ୍ ॥ ୩୦ ॥

ଅନ୍ୱୟ - ସ ତେ ସଖା ଅନିଳାହତଃ ଦୀପଃ ଇବ ଗତଃ ଏବ, ନ ନିବର୍ତ୍ତତେ, ଅହମ୍ ଅସ୍ୟ ଦଶା ଇବ 'ତିଷ୍ଠାମି' ଅବିଷହ୍ୟବ୍ୟସନେନ ଧୂମିତାଂ ମାଂ ପଶ୍ୟ ।

ପଦ୍ୟାନୁବାଦ -

ପବନ ଚଳନେ ଦୀପକ ଯେସନେ
ହୋଇଥାଏ ନିର୍ବାପିତ
ସେପରି ମନ୍ମଥ ତୁମ ପ୍ରିୟ ମିତ୍ର
ହୋଇଛନ୍ତି ଭସ୍ମୀଭୂତ ।
ନୁହେଁ ଏ ସମ୍ଭବ ଆଉ କାମଦେବ
କରିବେ ପ୍ରତ୍ୟାବର୍ତ୍ତନ
ତେଣୁ ହେ ବସନ୍ତ ମୋ ଅବସ୍ଥା ଦେଖ
ଫେଡି ତୁମର ଲୋଚନ ।

ବିପତ୍ତି କାଳରେ          ନିର୍ବାପିତ ସେହି
ଦୀପକର ବତୀ ପରି
ନିର୍ଗତ କରୁଛି          ଶୋକ ରୂପୀ ଧୂମ୍ର
ରହିଛି ବଞ୍ଚି ନ ମରି ॥ ୩୦ ॥

**ଶ୍ଲୋକ- ୩୧**

ବିଧିନା କୃତମର୍ଧବୈଶସଂ ନନୁ
ମାଂ କାମବଧେ ବିମୁଞ୍ଚତା ।
ଅନପାୟିନି ସଂଶ୍ରୟଦ୍ରୁମେ
ଗଜଭଗ୍ନେ ପତନାୟ ବଲ୍ଲରୀ ॥ ୩୧ ॥

ଅନ୍ୱୟ - ନନୁ କାମବଧେ ମାଂ ବିମୁଞ୍ଚତା ବିଧିନା ଅର୍ଧବୈଶସଂ; ଅନପାୟିନି ସଂଶ୍ରୟଦ୍ରୁମେ ଗଜଭଗ୍ନେ ସତି ବଲ୍ଲରୀ ପତନାୟ 'ଭବତି' ।

ପଦ୍ୟାନୁବାଦ -

ମୁଁ ଥାଇ ଜୀବିତ          କାମଦେବ ବଧ
ନୁହଇଁ କେବେ ସମ୍ପୂର୍ଣ୍ଣ
ବିଧି ଦ୍ୱାରା ବଧ          ଘୋଷିତ ହେଲେ ବି
ସେ ଅଟେ ଅଧା ମରଣ ।
ଲତାକୁ ଆଶ୍ରୟ          ପ୍ରଦାୟୀ ବୃକ୍ଷକୁ
ଯଦି ଭାଙ୍ଗିଦିଏ ହସ୍ତୀ
ବୃକ୍ଷ ସହ ଲତା          ଉଭୟେ ହୁଅନ୍ତି
ମରଣପଥର ଯାତ୍ରୀ ।
ମୋ ପତି ଅନଙ୍ଗ          ମୁଁ ତାଙ୍କ ଅର୍ଦ୍ଧାଙ୍ଗ
ସେ ମୋର ଆଶ୍ରୟ ଦାତା
ମୁଁ ଅଛି ଜୀବିତ          ସେ ମୃତ ଘୋଷିତ
ନୁହେଁ ଏହା ସତ କଥା ॥ ୩୧ ॥

## ଶ୍ଳୋକ- ୩୨

ତଦିଦଂ କ୍ରିୟତାମନନ୍ତରମ୍
ଭବତା ବନ୍ଧୁଜନପ୍ରୟୋଜନମ୍ ।
ବିଧୁରାଂ ଜ୍ୱଳନାତିସର୍ଜନ୍ନାନୁ
ମାଂ ପ୍ରାପୟ ପତ୍ୟୁରନ୍ତିକମ୍ ॥ ୩୨ ॥

ଅନ୍ୱୟ - ତତ୍ ଅନନ୍ତରଂ ଭବତା ଇଦଂ ବନ୍ଧୁଜନପ୍ରୟୋଜନମ୍ କ୍ରିୟତାମ୍ । ନନୁ ବିଧୁରାଂ ମାଂ ଜ୍ୱଳନାଽତିସର୍ଜନାତ୍ ପତ୍ୟୁଃ ଅନ୍ତିକଂ ପ୍ରାପୟ ।

ପଦ୍ୟାନୁବାଦ -

ଯଦି ମୋର ମୃତ୍ୟୁ ସେହି ସମୟରେ
ନହୋଇ ପାରିଲା ନାହିଁ
ହେ ବସନ୍ତ ତୁମେ ବନ୍ଧୁତା ଦୃଷ୍ଟିରୁ
କର ଏହା ବନ୍ଧୁ ପାଇଁ ।
ମୋ ଯିବା ନିମିତ୍ତ ଚିତା ପ୍ରଜ୍ୱଳିତ
କର ହେ ମିତ୍ର ବସନ୍ତ
ନ କରି ବିଳମ୍ବ ପହଞ୍ଚାଅ ମୋତେ
ପତିଙ୍କ ପାଶେ ତୁରିତ ॥ ୩୨ ॥

## ଶ୍ଳୋକ- ୩୩

ଶଶିନା ସହଯାତି କୌମୁଦୀ
ସହ ମେଘେନ ତଡିତ୍‌ପ୍ରଲୀୟତେ ।
ପ୍ରମଦା ପତିବର୍ତ୍ମଗା ଇତି
ପ୍ରତିପନ୍ନଂ ହି ବିଚେତନୈରପି ॥ ୩୩ ॥

ଅନ୍ୱୟ - କୌମୁଦୀ ଶଶିନା ସହ ଯାତି, ତଡିତ୍ ମେଘେନ ସହ ପ୍ରଲୀୟତେ; ପ୍ରମଦାଃ ପତିବର୍ତ୍ମଗାଃ ଇତି ବିଚେତନୈଃ ଅପି ପ୍ରତିପନ୍ନମ୍ ।

ପଦ୍ୟାନୁବାଦ -

ଚନ୍ଦ୍ରମା ସହିତ ଚନ୍ଦ୍ରିକାର ଅସ୍ତ
ଜଳଦ ସହ ବିଦ୍ୟୁତ
ପତି ଅନୁଗାମୀ ହେବା କଥା ପତ୍ନୀ
ବୁଝନ୍ତି ଜଡ ପଦାର୍ଥ ।
ମୁଁ ଥାଇ ଜୀବିତ ଅବଶ୍ୟ ନିଶ୍ଚିତ
ପତିଙ୍କ ଅନୁଗମନ
କରିବା ଉଚିତ ଏଥିରେ ସନ୍ଦେହ
ନାହିଁ କିଛି ଏହା ଜାଣ ॥ ୩୩ ॥

**ଶ୍ଳୋକ- ୩୪**

ଅମୁନୈବ କଷାୟିତସ୍ତନୀ
ସୁଭଗେନ ପ୍ରିୟଗାତ୍ରଭସ୍ମନା ।
ନବପଲ୍ଲବସଂସ୍ତରେ ଯଥା
ରଚୟିଷ୍ୟାମି ତନୁଂ ବିଭାବସୌ ॥ ୩୪ ॥
କୁସୁମାସ୍ତରେଣ ସହାୟତାଂ
ବହୁଶଃ ସୌମ୍ୟ ! ଗତସ୍ତ୍ୱମାବୟୋଃ ।
କୁରୁ ସମ୍ପ୍ରତି ତାବଦାଶୁ ମେ
ପ୍ରଣିପାତାଞ୍ଜଳିଯାଚିତଶ୍ଚିତାମ୍ ॥ ୩୫ ॥

ଅନ୍ୱୟ - ଅମୁନା, ସୁଭଗେନ ପ୍ରିୟଗାତ୍ରଭସ୍ମନା ଏବ କଷାୟିତସ୍ତନୀ ନବପଲ୍ଲବସଂସ୍ତରେ ଯଥା ବିଭାବସୌ ତନୁଂ ରଚୟିଷ୍ୟାମି ॥ ୩୪ ॥
ହେ ସୋମ୍ୟ ! ତ୍ୱମ୍ ଆବୟୋଃ ବହୁଶଃ କୁସୁମାସ୍ତରେଣ ସହାୟତାଂ ଗତଃ ଅସି, ସମ୍ପ୍ରତି ପ୍ରଣିପାତାଞ୍ଜଳିଯାଚିତଃ ତାବତ୍ ଆଶୁ ମେ ଚିତାମ୍ କୁରୁ ॥ ୩୫ ॥

ପଦ୍ୟାନୁବାଦ -

ମୋ ସମ୍ମୁଖେ ସ୍ଥିତ ପତିଙ୍କ ପବିତ୍ର
ଭସ୍ମରେ ସ୍ତନ ରଙ୍ଗାଇ
ନବୀନ ପଲ୍ଲବ ଶଯ୍ୟା ସମ ଚିତା
ଅଗ୍ନିରେ ମୁଁ ଯିବି ଶୋଇ ॥ ୩୪ ॥

ମନ୍ମଥଙ୍କ ମିତ୍ର ହେ ସୌମ୍ୟ ବସନ୍ତ
ଅତୀତରେ କେତେ ବାର
ଫୁଲ ଶଯ୍ୟା ଆମ ପାଇଁ ପ୍ରସ୍ତୁତିରେ
ଥିଲା ସାହାଯ୍ୟ ତୁମର ।
ଆଜି ହେ ବସନ୍ତ ଯୋଡି ମୁହିଁ ହସ୍ତ
କରେ ତୁମକୁ ପ୍ରାର୍ଥନା
ମୋ ନିମିତ୍ତ ଏକ ଶଯ୍ୟା ସମ ଚିତା
କରନ୍ତୁ ଶୀଘ୍ର ରଚନା ॥ ୩୫ ॥

## ଶ୍ଳୋକ- ୩୬

ତଦନୁ ଜ୍ୱଳନଂ ମଦର୍ପିତଂ
ତ୍ୱରୟେର୍ଦକ୍ଷିଣବାତବିଜନୈଃ ।
ବିଦିତଂ ଖଲୁ ତେ ଯଥା ସ୍ମରଃ
କ୍ଷଣମପ୍ୟୁତ୍ସହତେ ନ ମାଂ ବିନା ॥ ୩୬ ॥

ଅନ୍ୱୟ - ତଦନୁ ମଦର୍ପିତଂ ଜ୍ୱଳନଂ ଦକ୍ଷିଣବାତବିଜନୈଃ ତ୍ୱରୟେଃ । ବିଦିତଂ ଖଲୁ, ଯଥା ସ୍ମରଃ ମାଂ ବିନା କ୍ଷଣଂ ଅପି ନ ଉତ୍ସହତେ ।

ପଦ୍ୟାନୁବାଦ -

ଯେବେ ମୋର ଏହି ଶରୀରକୁ ମୁହିଁ
ଚିତାରେ ଦେବି ଶୁଆଇ
ଦକ୍ଷିଣା ମରୁତ ଚଳାଇ ତୁରିତ
ଅଗ୍ନି ଦେବ ତହକାଇ ।
କାରଣ ତୁମେ ତ ଜାଣିଛ ବସନ୍ତ
ମୋ ବିନା କ୍ଷଣକ ପାଇଁ
ବନ୍ଧୁ ତୁମ କେବେ ରହି ପାରିବେନି
ସେଠି ଏକୁଟିଆ ହୋଇ ॥ ୩୬ ॥

### ଶ୍ଳୋକ- ୩୭

ଇତି ଚାପି ବିଧାୟ ଦୀୟତାଂ
ସଲିଳସ୍ୟାଞ୍ଜଳିରେକ ଏବ ନୌ।
ଅବିଭଜ୍ୟ ପରତ୍ର ତଂ ମୟା
ସହିତଃ ପାସ୍ୟତି ତେ ସ ବାନ୍ଧବଃ ॥ ୩୭ ॥

ଅନ୍ୱୟ - ଅପି ଚ, ଇତି ବିଧାୟ ନୌ ଏକ ଏବ ସଲିଳସ୍ୟ ଅଞ୍ଜଳିଃ ଦୀୟତାମ୍; ତଂ ସ ତେ ବାନ୍ଧବଃ ପରତ୍ର ମୟା ସହିତଃ ଅବିଭଜ୍ୟ ପାସ୍ୟତି।

ପଦ୍ୟାନୁବାଦ -

ଏ ସବୁର ଅନ୍ତ ହୁଅନ୍ତେ ବସନ୍ତ
ଆମ ଦୁଇଜଣ ପାଇଁ
ଜଳାଞ୍ଜଳି ଏକ ଅର୍ପଣ କରିବ
ପ୍ରେତ ତରପଣ ପାଇଁ।
ଯଦ୍ୱାରା ତୁମର ବନ୍ଧୁ ସାଥେ ମୋର
ସେ ଜଳ କରିବୁ ପାନ
ନ ହେଲେ ସେ ଜଳ ପିଇବାକୁ ଲୋଡା
ହୋଇଥାନ୍ତା ବିଭାଜନ ॥ ୩୭ ॥

### ଶ୍ଳୋକ- ୩୮

ପରଲୋକବିଧୌ ଚ ମାଧବ!
ସ୍ମରମୁଦ୍ଦିଶ୍ୟ ବିଲ୍ଲୋଳପଲ୍ଲବାଃ।
ନିବପେଃ ସହକାରମଞ୍ଜରୀଃ
ପ୍ରିୟଚୂତପ୍ରସବୋ ହି ତେ ସଖା ॥ ୩୮ ॥

ଅନ୍ୱୟ - ହେ ମାଧବ! ପରଲୋକବିଧୌ ଚ ସ୍ମରମ୍ ଉଦ୍ଦିଶ୍ୟ ବିଲ୍ଲୋଳପଲ୍ଲବାଃ ସହକାରମଞ୍ଜରୀଃ ନିବପେଃ, ହି ତେ ସଖା ପ୍ରିୟଚୂତପ୍ରସବଃ 'ଅସ୍ତି'।

ପଦ୍ୟାନୁବାଦ -

ହେ ବସନ୍ତ ତମେ ପିଣ୍ଡଦାନ କର୍ମ
କରୁଥିବା ସମୟରେ
ମନ୍ମଥଙ୍କ ପାଇଁ ପତ୍ରଯୁକ୍ତ ଆମ୍ର
ମଞ୍ଜରୀ ଦେବ ଅର୍ଘ୍ୟରେ ।
କାରଣ ତୁମର ପ୍ରିୟ ବନ୍ଧୁ ସ୍ମର
ଆମ୍ର ମଞ୍ଜରୀର ପ୍ରିୟ
ସେ ଅର୍ଘ୍ୟ ପାଇଲେ ବନ୍ଧୁଙ୍କ ଆତ୍ମାକୁ
ମିଳିବ ଶାନ୍ତି ନିଶ୍ଚୟ ॥ ୩୮ ॥

### ଶ୍ଳୋକ- ୩୯

ଇତି ଦେହବିମୁକ୍ତୟେ ସ୍ଥିତାଂ
ରତିମାକାଶଭବା ସରସ୍ୱତୀ ।
ସଫରୀଂ ହ୍ରଦଶୋଷବିକ୍ଲବାଂ
ପ୍ରଥମା ବୃଷ୍ଟିରିବାନ୍ୱକମ୍ପୟତ୍ ॥ ୩୯ ॥

ଅନ୍ୱୟ - ଇତି ଦେହବିମୁକ୍ତୟେ ସ୍ଥିତାଂ ରତିମ୍ ଆକାଶଭବା ସରସ୍ୱତୀ ହ୍ରଦଶୋଷବିକ୍ଲବାଂ ସଫରୀଂ ପ୍ରଥମା ବୃଷ୍ଟି ଇବ ଅନ୍ୱକମ୍ପୟତ୍ ।

ପଦ୍ୟାନୁବାଦ -

ଯେପରି ସହସା ହୁଅନ୍ତେ ବରଷା
ଶୁଷ୍କପ୍ରାୟ ସରୋବରେ
ଅର୍ଦ୍ଧମୃତ ମତ୍ସ୍ୟ ମାନଙ୍କର ଅଙ୍ଗେ
ନୂତନ ପ୍ରାଣ ସଞ୍ଚରେ ।
ସେହିପରି ରତି ଶରୀରକୁ ତ୍ୟାଗ
କରିବା ପାଇଁ ପ୍ରସ୍ତୁତ
ହୁଅନ୍ତେ ହଠାତ୍ ଶୂନ୍ୟବାଣୀ ଶୁଣି
ମନହେଲା ତାଙ୍କ ଶାନ୍ତ ॥

## ଶ୍ଳୋକ- ୪୦

କୁସୁମାୟୁଧପତ୍ନି ! ଦୁର୍ଲଭସ୍ତବ
ଭର୍ତା ନ ଚିରାଦ୍ଭବିଷ୍ୟତି ।
ଶୃଣୁ ଯେନ ସ କର୍ମଣା ଗତଃ
ଶଲଭତ୍ୱଂ ହରଲୋଚନାର୍ଚିଷି ॥ ୪୦ ॥

ଅନ୍ୱୟ - ହେ କୁସୁମାୟୁଧପତ୍ନି ! ତବ ଭର୍ତା ଚିରାତ୍ ଦୁର୍ଲଭଃ ନ ଭବିଷ୍ୟତି । ଶୃଣୁ, ଯେନ କର୍ମଣା ସଃ ହରଲୋଚନାର୍ଚିଷି ଶଲଭତ୍ୱଂ ଗତଃ ।

ପଦ୍ୟାନୁବାଦ -

ଶୁଣ ଆହେ ରତି ! ତୁମ ପ୍ରିୟ ପତି
ତୁମ ପାଇଁ ଦୀର୍ଘଦିନ
ହେବେନି ଦୁର୍ଲଭ ହେବେ ଆବିର୍ଭାବ
ଏ କଥା ହିଁ ତୁମେ ଜାଣ ।
କେଉଁ କାରଣରୁ ଶଙ୍କରଙ୍କ ନେତ୍ର
ବହ୍ନିରେ ହେଲେ ସେ ମୃତ
ସେ ସବୁ କାରଣ ଆହେ ରତି ଶୁଣ
ଦେଇ କର୍ଣ୍ଣ ଆଉ ଚିତ୍ତ ॥ ୪୦ ॥

## ଶ୍ଳୋକ- ୪୧

ଅଭିଳାଷମୁଦୀରିତେନ୍ଦ୍ରିୟଃ
ସ୍ୱସୁତାୟାମକରୋତ୍ପ୍ରଜାପତିଃ ।
ଅଥ ତେନ ନିଗୃହ୍ୟ ବିକ୍ରିୟାଂ
ଅଭିଶପ୍ତଃ ଫଳମେତଦନ୍ୱଭୂତ୍ ॥ ୪୧ ॥

ଅନ୍ୱୟ - ଉଦୀରିତେନ୍ଦ୍ରିୟଃ ପ୍ରଜାପତିଃ ସ୍ୱସୁତାୟାମ୍ ଅଭିଳାଷମ୍ ଅକୋରତ୍ । ଅଥ ତେନ ବିକ୍ରିୟାଂ ନିଗୃହ୍ୟ ଅଭିଶପ୍ତଃ ସନ୍ ଏତତ୍ ଫଳମ୍ ଅନ୍ୱଭୂତ୍ ।

ପଦ୍ୟାନୁବାଦ -

ଏକଦା ମନ୍ମଥ ବ୍ରହ୍ମାଙ୍କୁ ବିବ୍ରତ
କରିଲେ କାମ ଭାବରେ
ଅତିଶୟ କାମ ଭାବରୁ ବିକୃତି
ଜାତ ହୋଇଲା ମନରେ ।
ସେଥିପାଇଁ ବ୍ରହ୍ମା ନିଜ ପୁତ୍ରୀ ପ୍ରତି
ହୋଇଥିଲେ ଆକର୍ଷିତ
ବିକୃତିରୁ ମୁକ୍ତି ପାଇଁ ପ୍ରଜାପତି
ମନ୍ମଥ ପ୍ରତି କ୍ରୋଧିତ ।
ବ୍ରହ୍ମା କ୍ରୋଧଭରେ ସେହି ସମୟରେ
ଦେଇଥିଲେ ଅଭିଶାପ
ସେହି ଅଭିଶାପ ଫଳ ସ୍ୱରୂପ ଏ
ଦଶା ଭୋଗିଲା କନ୍ଦର୍ପ ॥ ୪୧ ॥

### ଶ୍ଳୋକ- ୪୨-୪୩

ପରିଣେଷ୍ୟତି ପାର୍ବତୀ ଯଦା
ତପସା ତତ୍‌ପ୍ରବଣୀକୃତୋ ହରଃ ।
ଉପଲବ୍ଧସୁଖସ୍ତଦା ସ୍ମରଂ
ବପୁଷା ସ୍ୱେନ ନିୟୋଜୟିଷ୍ୟତି ॥ ୪୨ ॥
ଇତି ଚାହ ସ ଧର୍ମଯାଚିତଃ
ସ୍ମରଶାପାବଧିଦାଂ ସରସ୍ୱତୀମ୍ ।
ଅଶନେରମୃତସ୍ୟ ଚୋଭୟୋଃ
ବଶିନଶ୍ଚାମ୍ବୁଧରାଶ୍ଚ ଯୋନୟଃ ॥ ୪୩ ॥

ଅନ୍ୱୟ - ଧର୍ମଯାଚିତଃ ସ 'ତପସା ତତ୍‌ପ୍ରବଣୀକୃତଃ ହରଃ ଯଦା ପାର୍ବତୀଂ ପରିଣେଷ୍ୟତି, ତଦା ଉପଲବ୍ଧସୁଖଃ ସନ୍ ସ୍ମରଂ ସ୍ୱେନ ବପୁଷା ନିୟୋଜୟିଷ୍ୟତି' ଇତି ସ୍ମରଶାପାବଧିଦାଂ ସରସ୍ୱତୀଂ ଚ ଆହ । ବଶିନଃ ଅମ୍ବୁଧରାଶ୍ଚ ଅଶନେଃ ଅମୃତସ୍ୟ ଉଭୟୋଃ ଯୋନୟଃ 'ଭବନ୍ତି' ।

ପଦ୍ୟାନୁବାଦ -

କନ୍ଦର୍ପକୁ ଦେଇ- ଥିବା ଅଭିଶାପ
ଲେଉଟେଇ ନେବାପାଇଁ
ଯେବେ ଧର୍ମଦେବ କରିଲେ ପ୍ରାର୍ଥନା
ବ୍ରହ୍ମଦେବ ପାଶେ ଯାଇ
ସେ ସମୟେ ବ୍ରହ୍ମା ଶାପର ଅବଧି
ବଢେଇବା ପାଇଁ ଯାଇ
କହିଲେ ଯେ କାଳେ ପାର୍ବତୀଙ୍କ ତପେ
ଶଙ୍କର ସନ୍ତୁଷ୍ଟ ହୋଇ
ବିବାହ ବନ୍ଧନେ ବାନ୍ଧି ହୋଇଯିବେ
ଦେବୀ ପାର୍ବତୀଙ୍କ ସହ
ସେକାଳେ ଖୁସିରେ ଲେଉଟାଇ ଦେବେ
ଅତନୁଙ୍କ ପୂର୍ବ ଦେହ।
ଯେପରି ଜଳଦ ମଧ୍ୟେ ଥାଏ ରହି
ବଜ୍ର ସହିତ ପୀୟୁଷ
ସେପରି ସଂଯମୀ ପୁରୁଷ ହୃଦୟେ
ରହେ ଦୟା ସହ ରୋଷ ॥ ୪୨-୪୩ ॥

**ଶ୍ଳୋକ- ୪୪**

ତଦିଦଂ ପରିରକ୍ଷ ଶୋଭନେ !
ଭବିତବ୍ୟପ୍ରିୟସଙ୍ଗମ୍ ବପୁଃ।
ରବିପୀତଜଳା ତପାତ୍ୟୟେ
ପୁନରୋଘେଣ ହି ଯୁଜ୍ୟତେ ନଦୀ ॥ ୪୪ ॥

ଅନ୍ୱୟ - ହେ ଶୋଭନେ ! ତତ୍ ଭବିତବ୍ୟପ୍ରିୟସଙ୍ଗମ୍ ଇଦଂ ପରିରକ୍ଷ। ହି ରବିପୀତଜଳା ନଦୀ ତପାତ୍ୟୟେ ପୁନଃ ଓଘେଣ ଯୁଜ୍ୟତେ।

ପଦ୍ୟାନୁବାଦ -

ଶୁଣ ହେ ସୁନ୍ଦରୀ ସୁରକ୍ଷିତ କରି
ରଖ ଏ ଶରୀର ତୁମ
ଭବିଷ୍ୟତରେ ଏ ଶରୀର ତୁମର
ପ୍ରାପ୍ତ ହେବ ପ୍ରିୟତମ ।
ନିଦାଘେ ସମସ୍ତ ରବିକରେ ତପ୍ତ
ନଦୀଜଳ ହୁଏ ଶୂନ୍ୟ
ବର୍ଷା ଆଗମନ ହେଲାପରେ ପୁନଃ
ଜଳ ଦ୍ୱାରା ହୁଏ ପୂର୍ଣ୍ଣ ॥ ୪୪ ॥

**ଶ୍ଳୋକ- ୪୫**

ଇତ୍ଥଂ ରତେଃ କିମପି ଭୂତମଦୃଶ୍ୟରୂପଂ
ମନ୍ଦୀଚକାର ମରଣବ୍ୟବସାୟବୁଦ୍ଧିମ୍ ।
ତତ୍‌ପ୍ରତ୍ୟୟାଚ୍ଚ କୁସୁମାୟୁଧବନ୍ଧୁରେନାମ୍
ଆଶ୍ୱାସୟତ୍ସୁଚରିତାର୍ଥପଦୈର୍ବଚୋଭିଃ ॥ ୪୫ ॥

ଅନ୍ୱୟ - ଇତ୍ଥମ୍ ଅଦୃଶ୍ୟରୂପଂ କିମପି ଭୂତଂ ରତେଃ ମରଣବ୍ୟବସାୟବୁଦ୍ଧିଂ ମନ୍ଦୀଚକାର । ଅଥ କୁସୁମାୟୁଧବନ୍ଧୁଶ୍ଚ ତତ୍‌ପ୍ରତ୍ୟୟାତ୍ ଏନାମଂସୁଚରିତାର୍ଥପଦୈଃ ବଚୋଭିଃ ଆଶ୍ୱାସୟତ୍ ।

ପଦ୍ୟାନୁବାଦ

ଏପରି କୌଣସି ଅଦୃଶ୍ୟ ଶକତି
ହେଲା ଆସି ଉପସ୍ଥିତ
ରତିଙ୍କ ଶରୀର ତ୍ୟାଗ ଅବସ୍ଥାକୁ
କରିଲା ଶିଥିଳୀକୃତ ।
ଅଦୃଶ୍ୟ ଶକ୍ତିର ସହାୟତା ପାଇଁ
ମନ୍ମଥ ମିତ୍ର ବସନ୍ତ
ବୁଝାଇ ସୁଝାଇ ରତିଦେବୀଙ୍କର
ମନକୁ କରିଲେ ଶାନ୍ତ ॥ ୪୫ ॥

### ଶ୍ଲୋକ- ୪୬

ଅଥ ମଦନବଧୂରୁପପ୍ଳବାନ୍ତଂ
ବ୍ୟସନକୃଶା ପରିପାଳୟାମ୍ବଭୁବ ।
ଶଶିନ ଇବ ଦିବାତନସ୍ୟ ଲେଖା
କିରଣପରିକ୍ଷୟଧୂସରା ପ୍ରଦୋଷମ୍ ॥ ୪୬ ॥

ଅନ୍ୱୟ - ଅୟ ବ୍ୟସନକୃଶା ମଦନବଧୂଃ ଉପପ୍ଳବାନ୍ତଂ କିରଣପରିକ୍ଷୟଧୂସରା ଦିବାତନସ୍ୟ ଶଶିନଃ ଲେଖା ପ୍ରଦୋଷମ୍ ଇବ ପରିପାଳୟାମ୍ବଭୁବ ।

ପଦ୍ୟାନୁବାଦ -

ଏହା ପରେ ରତି ପତି ଶୋକେ ଅତି
କ୍ଷୀଣ ଶରୀରକୁ ଧରି
ଶାପର ଅବଧି ଶେଷ ହେବାଯାଏ
ରହିଲେ ଅପେକ୍ଷା କରି ।
ଯେପରି ଦିବସେ ତେଜହୀନ ଶଶି
ଅପେକ୍ଷା କରେ ରାତ୍ରିକୁ
ସେହିପରି ରତି ପ୍ରତୀକ୍ଷା କରିଲେ
ଶାପ ଶେଷ ମୁହୂର୍ତ୍ତକୁ ॥ ୪୬ ॥

***

(ଚତୁର୍ଥ ସର୍ଗଃ ଶେଷ)

# ପଞ୍ଚମ ସର୍ଗଃ

**ଶ୍ଳୋକ- ୧**

ତଥା ସମକ୍ଷଂ ଦହତା ମନୋଭବଂ
ପିନାକିନା ଭଗ୍ନମନୋରଥା ସତୀ ।
ନିନିନ୍ଦ ରୂପଂ ହୃଦୟେନ ପାର୍ବତୀ
ପ୍ରିୟେଷୁ ସୌଭାଗ୍ୟଫଳା ହି ଚାରୁତା ॥ ୧ ॥

ଅନ୍ୱୟ - ତଥା ସମକ୍ଷଂ ମନୋଭବଂ ଦହତା ପିନାକିନା ଭଗ୍ନମନୋରଥା ସତୀ ହୃଦୟେନ ରୂପଂ ନିନିନ୍ଦ । ହି, ଚାରୁତା ପ୍ରିୟେଷୁ ସୌଭାଗ୍ୟଫଳା (ଭବତି) ।

ପଦ୍ୟାନୁବାଦ -

ଶଙ୍କରଙ୍କ ଦ୍ୱାରା ମଦନ ଦହନ
ସମ୍ମୁଖେ ଦେଖି ପାର୍ବତୀ
ସବୁ ମନୋରଥ ହୋଇଲା ସମାପ୍ତ
ଭାବି ହେଲେ ଦୁଃଖୀ ଅତି ।
ନିଜ ସୌନ୍ଦର୍ଯ୍ୟର ନିନ୍ଦା ବାରମ୍ବାର
କରି ବସିଲେ ପାର୍ବତୀ
ଯେଉଁ ରୂପ କାନ୍ତି ପ୍ରେମିକକୁ ପ୍ରୀତି
ନଦିଏ ନିଷ୍ଫଳ ପ୍ରାପ୍ତି ॥ ୧ ॥

## ଶ୍ଲୋକ- ୨

ଇୟେଷ ସା କର୍ତ୍ତୁମବନ୍ଧ୍ୟରୂପତାଂ
ସମାଧିମାସ୍ଥାୟ ତପୋଭିରାତ୍ମନଃ ।
ଅବାପ୍ୟତେ ବା କଥମନ୍ୟଥା ଦ୍ୱୟଂ
ତଥାବିଧଂ ପ୍ରେମ ପତିଶ୍ଚ ତାଦୃଶଃ ॥ ୨

ଅନ୍ୱୟ - ସା ସମାଧିମାସ୍ଥାୟ ତପୋଭିଃ ଆତ୍ମନଃ ଅବନ୍ଧ୍ୟରୂପତାଂ କର୍ତ୍ତୁମ୍ ଇୟେଷ । ଅନ୍ୟଥା ତଥାବିଧଂ ପ୍ରେମ ତାଦୃଶଃ ପତିଶ୍ଚ ଦ୍ୱୟଂ କଥଂ ବା ଅବାପ୍ୟତେ ?

ପଦ୍ୟାନୁବାଦ -

ସମାଧିସ୍ଥା ହୋଇ ବସିଲେ ପାର୍ବତୀ
କଲେ କଠିନ ତପସ୍ୟା
ନିଜ ସୌନ୍ଦର୍ଯ୍ୟକୁ ସଫଳ କରିବା
ଥିଲା ମନେ ଅଭିଳାଷା ।
ନୋହିଲେ ସେମିତି ପ୍ରେମ ସଙ୍ଗେ ପତି
ହୋଇ ଥାଆନ୍ତେ କି ପ୍ରାପ୍ତ
କରି ନ ଥାଆନ୍ତେ ସମାଧିସ୍ଥା ହୋଇ
ଯଦି ଦୃଢ଼ ତପ ବ୍ରତ ॥ ୨ ॥

## ଶ୍ଲୋକ- ୩

ନିଶମ୍ୟ ଚୈନାଂ ତପସେ କୃତୋଦ୍ୟମାଂ
ସୁତାଂ ଗିରୀଶପ୍ରତିସକ୍ତମାନସାମ୍ ।
ଉବାଚ ମେନା ପରିରଭ୍ୟ ବକ୍ଷସା
ନିବାରୟନ୍ତୀ ମହତୋ ମୁନିବ୍ରତାତ୍ ॥ ୩ ॥

ଅନ୍ୱୟ - ମେନା ଚ ଗିରୀଶପ୍ରତିସକ୍ତମାନସାମ୍ ଏନାଂ ସୁତାଂ ତପସେ କୃତୋଦ୍ୟମାଂ ନିଶମ୍ୟ ବକ୍ଷସା ପରିରଭ୍ୟ ମହତଃ ମୁନିବ୍ରତାତ୍ ନିବାରୟନ୍ତୀ ଉବାଚ ।

ପଦ୍ୟାନୁବାଦ -

ମହେଶଙ୍କ ପ୍ରତି ସମ୍ପୂର୍ଣ୍ଣ ଆସକ୍ତି
ଥିବାରୁ କନ୍ୟା ପାର୍ବତୀ
ପତି ରୂପେ ତାଙ୍କୁ ପାଇବା ପାଇଁକି
ତପ ଉଦ୍ୟମ କରନ୍ତି ।
ଶୁଣି ଏହି କଥା ମେନା ତାଙ୍କ ମାତା
ବକ୍ଷେ କରି ଆଲିଙ୍ଗନ
କଠିନ ଏ ମୁନି ବ୍ରତ ଆଚରଣ
ପାଇଁକି କଲେ ବାରଣ ॥ ୩ ॥

## ଶ୍ଳୋକ- ୪

ମନୀଷିତାଃ ସନ୍ତି ଗୃହେଷୁ ଦେବତାଃ
ତପଃ କ୍ୱ ବତ୍ସେ କ୍ୱଚ ତାବକଂ ବପୁଃ ।
ପଦଂ ସହେତ ଭ୍ରମରସ୍ୟ ପେଲବଂ
ଶିରୀଷପୁଷ୍ପଂ ନ ପୁନଃ ପତତ୍ରିଣଃ ॥ ୪ ॥

ଅନ୍ୱୟ - ବତ୍ସେ ! ମନୀଷିତାଃ ଦେବତାଃ (ଅସ୍ମାକଂ) ଗୃହେଷୁ ସନ୍ତି । ତପଃ କ୍ୱ, ତାବକଂ ବପୁଶ୍ଚ କ୍ୱ ? ପେଲବଂ ଶିରୀଷପୁଷ୍ପଂ ଭ୍ରମରସ୍ୟ ପଦଂ ସହେତ, ନ ପୁନଃ ପତତ୍ରିଣଃ (ପଦଂ ସହେତ) ।

ପଦ୍ୟାନୁବାଦ -

ତୋ ମନ ବାଞ୍ଛିତ ଦେବତା ସମସ୍ତ
ରହିଛନ୍ତି ଆମଘରେ
ତୁ ପୁଣି ତପସ୍ୟା ଆଚରିବା ପାଇଁ
ଯିବୁ ଅନ୍ୟ କେଉଁଠାରେ ?
କେଉଁଠି ଏ ତୋର କୋମଳ ଶରୀର
କେଉଁଠି ଏ ତପକର୍ମ
ତୋର କୋମଳାଙ୍ଗ ସହି କି ପାରିବ
ତପର ଏ କ୍ଲିଷ୍ଟ ଧର୍ମ ?

କୋମଳ ଶିରୀଷ ପୁଷ୍ପ ସହିପାରେ
ପଦଭାର ଭ୍ରମରର
ସେ କୋମଳ ପୁଷ୍ପ ସହି କି ପାରିବ
ପକ୍ଷୀ ପଦପାତ ଭାର ॥ ୪ ॥

### ଶ୍ଳୋକ- ୫

ଇତି ଧ୍ରୁବେଚ୍ଛାମନୁଶାସତୀ ସୁତାଂ
ଶଶାକ ମେନା ନ ନିୟନ୍ତୁମୁଦ୍ୟମାତ୍ ।
କ ଈପ୍ସିତାର୍ଥସ୍ଥିରନିଶ୍ଚୟଂ ମନଃ
ପୟଶ୍ଚ ନିମ୍ନାଭିମୁଖଂ ପ୍ରତୀପୟେତ୍ ॥ ୫ ॥

ଅନ୍ୱୟ - ଇତି ଅନୁଶାସତୀ ମେନା ଧ୍ରୁବେଚ୍ଛାଂ ସୁତାମ୍ ଉଦ୍ୟମାତ୍ ନିୟନ୍ତୁଂ ନ ଶଶାକ । ଈପ୍ସିତାର୍ଥସ୍ଥିରନିଶ୍ଚୟଂ ମନଃ ନିମ୍ନାଭିମୁଖଂ ପୟଶ୍ଚ କଃ, ପ୍ରତୀପୟେତ୍ ?

ପଦ୍ୟାନୁବାଦ -

ଏହିପରି ମେନା ଉପଦେଶ ଦେଲେ
ଦୃଢମନା ପାର୍ବତୀଙ୍କୁ
ହେଲେ ଅସମର୍ଥ ଉଦ୍ୟମୁ ନିବୃତ୍ତ
କରିବା ପାଇଁ ସେ ତାଙ୍କୁ ।
ଈପ୍ସିତାର୍ଥ ମନ ନିମ୍ନଗାମୀ ଜଳ
ଏ ଦୁହିଁଙ୍କୁ ପଥଚ୍ୟୁତ
କରିବାକୁ ଏତେ ନୁହଁଇ ସହଜ
ନୁହନ୍ତି କେହି ସମର୍ଥ ॥ ୫ ॥

### ଶ୍ଳୋକ- ୬

କଦାଚିଦାସନ୍ନସଖୀମୁଖେନ ସା
ମନୋରଥଜ୍ଞଂ ପିତରଂ ମନସ୍ୱିନୀ ।
ଅଯାଚତାରଣ୍ୟନିବାସମାତ୍ମନଃ
ଫଳୋଦୟାନ୍ତାୟ ତପଃସମାଧୟେ ॥ ୬ ॥

ଅନ୍ୱୟ - କଦାଚିତ୍ ସା ମନସ୍ୱିନୀ ମନୋରଥଜ୍ଞଂ ପିତରଂ ଆସନ୍ନସଖୀ ମୁଖେନ ଫଳୋଦୟାନ୍ତାୟ ତପଃସମାଧୟେ ଆତ୍ମନଃ ଅରଣ୍ୟନିବାସଂ ଅଯାଚତ ।

ପଦ୍ୟାନୁବାଦ -

ପରେ ସ୍ଥିରଚିତ୍ତା ଗିରିରାଜ ସୁତା
ନିଜ ମନ ଅଭିଳାଷ
ମନ ବୁଝୁଥିବା ପିତାଙ୍କ ନିକଟେ
କରିବା ପାଇଁ ପ୍ରକାଶ ।
ନିକଟରେ ଥିବା ସଖୀଙ୍କ ମୁଖରେ
ପିତାଙ୍କୁ ପ୍ରାର୍ଥନା କଲେ
ଫଳସିଦ୍ଧି ଯାଏ ବନେ ତପଶ୍ଚର୍ଯ୍ୟା
ନିମିତ୍ତ ଆଜ୍ଞା ମାଗିଲେ ॥ ୬ ॥

ଶ୍ଳୋକ- ୭

ଅଥାନୁରୂପାଭିନିବେଶତୋଷିଣା
କୃତାଭ୍ୟନୁଜ୍ଞା ଗୁରୁଣା ଗରୀୟସୀ ।
ପ୍ରଜାସୁ ପଶ୍ଚାତ୍ ପ୍ରଥିତଂ ତଦାଖ୍ୟୟା
ଯଗାମ ଗୌରୀଶିଖରଂ ଶିଖଣ୍ଡିମତ୍ ॥ ୭ ॥

ଅନ୍ୱୟ - ଅଥ ଗୌରୀ ଅଥାନୁରୂପାଭିନିବେଶତୋଷିଣା ଗରୀୟସା ଗୁରୁଣା କୃତାଭ୍ୟନୁଜ୍ଞା ସତୀ ପଶ୍ଚାତ୍ ପ୍ରଜାସୁ ତଦାଖ୍ୟୟା ପ୍ରଥିତଂ ଶିଖଣ୍ଡିମତ୍ ଶିଖରଂ ଯଗାମ ।

ପଦ୍ୟାନୁବାଦ -

ଇଚ୍ଛା ଉପଯୁକ୍ତ ଜାଣିଣ ସନ୍ତୁଷ୍ଟ
ପାର୍ବତୀଙ୍କ ପୂଜ୍ୟପିତା
ଅନୁମତି ଦେଲେ ତପଶ୍ଚର୍ଯ୍ୟା ପାଇଁ
ପାର୍ବତୀ ହେଲେ ହର୍ଷିତା ।

ପାଇ ଅନୁମତି ଚଳିଲେ ପାର୍ବତୀ
ମୟୂରପୂର୍ଣ୍ଣ ଶିଖର
ପରେ ସେହି ଶୃଙ୍ଗ ତାଙ୍କରି ନାମରେ
ନାମିତ ଗୌରୀଶିଖର ॥ ୭ ॥

ଶ୍ଳୋକ- ୮

ବିମୁଚ୍ୟ ସା ହାରମହାର୍ଯ୍ୟନିଶ୍ଚୟା
ବିଲୋଲଯଷ୍ଟି ପ୍ରବିଲୁପ୍ତଚନ୍ଦନମ୍ ।
ବବନ୍ଧ ବାଳାରୁଣବଭ୍ରୁବଲ୍କଲମ୍
ପୟୋଧରୋତ୍ସେଧବିଶୀର୍ଣ୍ଣ ସଂହତି ॥ ୮ ॥

ଅନ୍ୱୟ - ଅହାର୍ଯ୍ୟନିଶ୍ଚୟା ସା ବିଲୋଲଯଷ୍ଟି ପ୍ରବିଲୁପ୍ତଚନ୍ଦନମ୍ ହାରଂ ବିମୁଚ୍ୟ ବାଳାରୁଣବଭ୍ରୁ ପୟୋଧରୋତ୍ସେଧବିଶୀର୍ଣ୍ଣ ସଂହତି ବଲ୍କଲମ୍ ବବନ୍ଧ ।

ପଦ୍ୟାନୁବାଦ -

ଅଭୀଷ୍ଟେ ନିଶ୍ଚିତା ଗିରିରାଜ ସୁତା
ଗଳାରୁ ଲମ୍ବିତ ହାର
ବକ୍ଷରେ ଲେପିତ ଚନ୍ଦନକୁ ସ୍ପର୍ଶ
କରୁଥିଲା ବାରମ୍ବାର ।
ଦୋଳାୟମାନ ସେ ହାର ଯଷ୍ଟି ପୋଛୁ
ଥିଲା ବକ୍ଷର ଚନ୍ଦନ
ତ୍ୟାଗକରି ହାର ବକ୍ଷୋଜେ ବାନ୍ଧିଲେ
ବଲ୍କଳ ଅରୁଣ ବର୍ଣ୍ଣ ।
ପୃଥୁଳ ବକ୍ଷୋଜ ହେତୁ ସେ ବଲ୍କଳ
ତନ୍ତୁ ହୋଇ ପ୍ରସାରିତ
ଦେହରେ ନଲାଗି ଢୁଗୁଲା ରହିଲା
ହୋଇଣ ଶିଥିଳୀକୃତ ॥ ୮ ॥

### ଶ୍ଲୋକ- ୯

ଯଥା ପ୍ରସିଦ୍ଧୈର୍ମଧୁରଂ ଶିରୋରୁହୈଃ
ଜଟାଭିରପ୍ୟେବମଭୂତ୍ ତଦାନନମ୍।
ନ ଷଟ୍ପଦଶ୍ରେଣିଭିରେବ ପଙ୍କଜଂ
ସଶୈବଳାସଂଗମପି ପ୍ରକାଶତେ ॥ ୯ ॥

ଅନ୍ୱୟ - ତଦାନନଂ ପ୍ରସିଦ୍ଧୈଃ ଶିରୋରୁହୈଃ ଯଥା ମଧୁରଂ (ଅଭୂତ୍) ଜଟାଭିଃ ଅପି ଏବମ୍ (ମଧୂରଂ ଅଭୂତ୍)। ପଙ୍କଜଂ ଷଟ୍ପଦଶ୍ରେଣିଭିଃ ଏବ ନ ପ୍ରକାଶତେ କିନ୍ତୁ ସଶୈବଳାସଙ୍ଗମପି (ପ୍ରକାଶତେ)।

ପଦ୍ୟାନୁବାଦ -

ସୁସଜ୍ଜିତ କେଶ- ବିନ୍ୟାସ ହେତୁରୁ
ମୁଖ ଯେପରି ସୁନ୍ଦର
ଦିଶୁଥିଲା ଏବେ ଦିଶଇ ସେପରି
ଜଟା ଧରି ଶିରପର।
କମଳ କେବଳ ଭ୍ରମରଙ୍କ ଦଳ
ଦ୍ୱାରା ପାଏ ନାହିଁ ଶୋଭା
ଶୈବାଳ ସହିତ ମଧ୍ୟ ଅନୁରୂପ
ଭାବେ ଦିଶେ ମନଲୋଭା ॥ ୯ ॥

### ଶ୍ଲୋକ- ୧୦

ପ୍ରତିକ୍ଷଣଂ ସା କୃତରୋମବିକ୍ରିୟାଂ
ବ୍ରତାୟ ମୌଞ୍ଜୀଂ ତ୍ରିଗୁଣାଂ ବଭାର ଯାମ୍।
ଅକାରି ତତ୍-ପୂର୍ବନିବଦ୍ଧୟା ତୟା
ସରାଗମସ୍ୟାଃ ରସନାଗୁଣାସ୍ପଦମ୍ ॥ ୧୦ ॥

ଅନ୍ୱୟ - ସା ବ୍ରତାୟ ପ୍ରତିକ୍ଷଣଂ କୃତରୋମବିକ୍ରିୟାଂ ତ୍ରିଗୁଣାଂ ଯାଂ ମୌଞ୍ଜୀଂ ବଭାର, ତତ୍-ପୂର୍ବନିବଦ୍ଧୟା ତୟା ଅସ୍ୟାଃ ରସନାଗୁଣାସ୍ପଦଂ ସରାଗମ୍ ଅକାରି।

ପଦ୍ୟାନୁବାଦ -

ପ୍ରତିକ୍ଷଣ ଅଙ୍ଗେ ରୋମାଞ୍ଚ କାରକ
ତ୍ରିଗୁଣ ମୁଞ୍ଜ ମେଖଳା
ବ୍ରତ ପାଳିବାକୁ କଟିରେ ଧାରଣ
କରିଲେ ପାର୍ବତୀ ବାଳା।
ପ୍ରଥମେ ଏପରି ମୁଞ୍ଜ ମେଖଳାକୁ
କରିବାରୁ ପରିଧାନ
ମେଖଳା ପିନ୍ଧିବା ସ୍ଥାନ କଟିଦେଶେ
ଦିଶୁଥିଲା ରକ୍ତବର୍ଣ୍ଣ ॥ ୧୦ ॥

## ଶ୍ଳୋକ- ୧୧

ବିସୃଷ୍ଟରାଗାଧରାନ୍ନିବର୍ତ୍ତିତଃ
ସ୍ତନାଙ୍ଗରାଗାରୁଣିତାଚ୍ଚ କନ୍ଦୁକାତ୍।
କୁଶାଙ୍କୁରାଦାନପରିକ୍ଷତାଙ୍ଗୁଳିଃ
କୃତୋଽକ୍ଷସୂତ୍ରପ୍ରଣୟୀ ତୟା କରଃ ॥ ୧୧ ॥

ଅନ୍ୱୟ - ତୟା ବିସୃଷ୍ଟରାଗାତ୍ ଅଧରାତ୍ ସ୍ତନାଙ୍ଗରାଗାରୁଣିତାତ୍ କନ୍ଦୁକାତ୍ ଚ ନିବର୍ତ୍ତିତଃ କରଃ କୁଶାଙ୍କୁରାଦାନପରିକ୍ଷତାଙ୍ଗୁଳିଃ ଅକ୍ଷସୂତ୍ରପ୍ରଣୟୀ କୃତଃ।

ପଦ୍ୟାନୁବାଦ -

ଦିନେ ଯେଉଁ ହସ୍ତ ଲାକ୍ଷାରେ ରଞ୍ଜିତ
କରୁଥିଲା ସ୍ୱ ଅଧର
ସ୍ତନ ଅଙ୍ଗରାଗେ ରଞ୍ଜିତ କନ୍ଦୁକେ
ଖେଳୁଥିଲା ଯେଉଁ କର।
ସେଥିରୁ ନିବୃତ୍ତ ହୋଇ ସେହି ହସ୍ତ
ଅକ୍ଷମାଳା ଜପେ ବ୍ୟସ୍ତ
ତପସ୍ୟା ନିମିତ୍ତ କୁଶ ଆହରଣ
କାଳେ ହୋଇଅଛି କ୍ଷତ ॥ ୧୧ ॥

### ଶ୍ଲୋକ -୧୨

ମହାର୍ହଶଯ୍ୟାପରିବର୍ତ୍ତନଚ୍ୟୁତୈଃ
ସ୍ୱକେଶପୁଷ୍ପୈରପି ଯା ସ୍ମ ଦୂୟତେ ।
ଅଶେତ ସା ବାହୁଲତୋପଧାୟିନୀ
ନିଷେଦୁଷୀ ସ୍ଥଣ୍ଡିଳ ଏବ କେବଳେ ॥ ୧୨ ॥

ଅନ୍ୱୟ - ଯା ମହାର୍ହଶଯ୍ୟାପରିବର୍ତ୍ତନଚ୍ୟୁତୈଃ ସ୍ୱକେଶପୁଷ୍ପୈଃ ଅପି ଦୂୟତେ ସ୍ମ, ସା ବାହୁଲତୋପଧାୟିନୀ ସତୀ କେବଳେ ସ୍ଥଣ୍ଡିଳ ଏବ ନିଷେଦୁଷୀ ଅଶେତ ।

ପଦ୍ୟାନୁବାଦ -

ମହାର୍ହ ଶଯ୍ୟାରେ ଶୋଇବା ସମୟେ
ପାର୍ଶ୍ୱ ପରିବର୍ତ୍ତ କାଳେ
କେଶରୁ ସ୍ଖଳିତ ପୁଷ୍ପର ଆଘାତ
ପାଇ କଷ୍ଟ ପାଉଥିଲେ ।
ସେହି ସେ ପାର୍ବତୀ ଏବେ ଶୋଉଛନ୍ତି
ବସି ବସି ଭୂମିପର
ଉପାଧାନ ରୂପେ ନିଜ ବାହୁକୁ ସେ
କରୁଛନ୍ତି ବ୍ୟବହାର ॥ ୧୨ ॥

### ଶ୍ଲୋକ- ୧୩

ପୁନର୍ଗ୍ରହୀତୁଂ ନିୟମସ୍ଥୟା ତୟା
ଦ୍ୱୟେଽପି ନିକ୍ଷେପ ଇବାର୍ପିତଂ ଦ୍ୱୟଂ ।
ଲତାସୁ ତନ୍ୱୀଷୁ ବିଳାସ-ଚେଷ୍ଟିତମ୍
ବିଲୋଳ-ଦୃଷ୍ଟଂ ହରିଣାଙ୍ଗନାସୁଚ ॥ ୧୩ ॥

ଅନ୍ୱୟ - ନିୟମସ୍ଥୟା ତୟା ବିଳାସଚେଷ୍ଟିତଂ ବିଲୋଳଦୃଷ୍ଟଂ ଚ ଇତିଦ୍ୱୟଂ ତନ୍ୱୀଷୁଲତାସୁ ହରିଣାଙ୍ଗନାସୁ ଚ ଇତି ଦ୍ୱୟେ ଅପି ପୁନଃ ଗ୍ରହୀତୁମ୍ ନିକ୍ଷେପଃ ଇବ ଅର୍ପିତମ୍ ।

ପଦ୍ୟାନୁବାଦ -

କ୍ଲିଷ୍ଟ ତପଶ୍ଚର୍ଯ୍ୟା ପାଇଁ ଗିରିକନ୍ୟା
ବିଳାଶ ଅଙ୍ଗଭଙ୍ଗୀକୁ
ଅର୍ପଣ କରିଲେ କୃଶାଙ୍ଗୀ ଲତାକୁ
କ୍ଷୀପ୍ର ଚହାଣି ମୃଗୀକୁ ।
ଏହି ଦୁଇ ଗୁଣ କଲେ ଅରପଣ
ନ୍ୟାସ ରୂପେ ସେ ଦୁହିଁକୁ
ଆବଶ୍ୟକ ବେଳେ ଫେରାଇ ଦେବେ ସେ
ସେଇ ଦୁଇ ଗୁଣ ତାଙ୍କୁ ॥ ୧୩ ॥

**ଶ୍ଳୋକ- ୧୪**

ଅତନ୍ଦ୍ରିତା ସା ସ୍ୱୟମେବ ବୃକ୍ଷକାନ୍
ଘଟସ୍ତନ-ପ୍ରସ୍ରବଣୈଃ ବ୍ୟବର୍ଧୟତ୍ ।
ଗୁହୋଽପି ଯେଷାଂ ପ୍ରଥମାପ୍ତଜନ୍ମନାଂ
ନ ପୁତ୍ରବାତ୍ସଲ୍ୟମପାକରିଷ୍ୟତି ॥ ୧୪ ॥

ଅନ୍ୱୟ - ଅତନ୍ଦ୍ରିତା ସା ସ୍ୱୟମେବ ବୃକ୍ଷକାନ୍ ଘଟସ୍ତନ- ପ୍ରସ୍ରବଣୈଃ ବ୍ୟବର୍ଧୟତ୍ । ଗୁହଃ ଅପି ପ୍ରଥମାପ୍ତଜନ୍ମନାଂ ଯେଷାଂ ପୁତ୍ରବାତ୍ସଲ୍ୟମ୍ ନ ଅପାକରିଷ୍ୟତି ।

ପଦ୍ୟାନୁବାଦ -

ତନ୍ଦ୍ରା ବିରହିତା ଗିରିରାଜ ସୁତା
ସ୍ତନରୂପୀ କଳସୀରୁ
ଦେଇ ଜଳଧାରା ରୋପିତ ବୃକ୍ଷଙ୍କୁ
ବଢାଇଥିଲେ ଛୋଟରୁ ।
ସେ ବୃକ୍ଷଙ୍କ ପ୍ରତି ଏତେ ପରିମାଣ
ଥିଲା ପୁତ୍ର ପ୍ରେମ ଭାବ
କାର୍ତ୍ତିକେୟ ଜନ୍ମ ହେଲା ପରେ ମଧ
ସେ ପ୍ରେମ ବଞ୍ଚି ରହିବ ॥ ୧୪ ॥

## ଶ୍ଲୋକ- ୧୫

ଅରଣ୍ୟବୀଜାଞ୍ଜଳିଦାନପାଳିତାଃ
ତଥା ଚ ତସ୍ୟାଂ ହରିଣା ବିଶଶ୍ୱସୁଃ ।
ଯଥା ତଦୀୟୈର୍ନୟନୈଃ କୁତୂହଳାତ୍
ପୁରଃ ସଖୀନାମମିମୀତ ଲୋଚନେ ॥ ୧୫ ॥

ଅନ୍ୱୟ - ଅରଣ୍ୟବୀଜାଞ୍ଜଳିଦାନପାଳିତାଃ ହରିଣାଃ ଚ ତସ୍ୟାମ୍ ତଥା ବିଶଶ୍ୱସୁଃ ଯଥା କୁତୂହଳାତ୍ ତଦୀୟୈଃ ନୟନୈଃ ପୁରଃ ସଖୀନାଂ ଲୋଚନେ ଅମିମୀତ ।

ପଦ୍ୟାନୁବାଦ -

ସେ ସ୍ଥାନେ ପାର୍ବତୀ ହରିଣମାନଙ୍କୁ
ଦେଇ ନବଜାତ ଶସ୍ୟ
ପାଳୁଥିଲେ ଯତ୍ନେ ସେପାଇଁ ସେମାନେ
ରଖିଣ ଥିଲେ ବିଶ୍ୱାସ ।
ଦେଖି ଏ ବିଶ୍ୱାସ କୌତୁହଳବଶ
ପାର୍ବତୀ ନିକଟେ ସ୍ଥିତ
ସଖୀଙ୍କ ଚକ୍ଷୁକୁ ମାପୁଥିଲେ ମୃଗୀ
ମାନଙ୍କ ଚକ୍ଷୁ ସହିତ ॥ ୧୫ ॥

## ଶ୍ଲୋକ- ୧୬

କୃତାଭିଷେକାଂ ହୃତଜାତବେଦସମ୍
ତ୍ୱଗୁତ୍ତରାସଙ୍ଗବତୀମଧୀତିନୀମ୍ ।
ଦିଦୃକ୍ଷବସ୍ତାମୃଷୟୋଽଭ୍ୟୁପାଗମନ୍
ନ ଧର୍ମବୃଦ୍ଧେଷୁ ବୟଃ ସମୀକ୍ଷ୍ୟତେ ॥ ୧୬ ॥

ଅନ୍ୱୟ - କୃତାଭିଷେକାଂ ହୃତଜାତବେଦସମ୍ ତ୍ୱଗୁତ୍ତରାସଙ୍ଗବତୀମ୍ ଅଧୀତିନୀଂ ତାଂ ଦିଦୃକ୍ଷବଃ ଋଷୟଃ ଅଭ୍ୟୁପାଗମନ୍, ଧର୍ମବୃଦ୍ଧେଷୁ ବୟଃ ନ ସମୀକ୍ଷ୍ୟତେ ।

ପଦ୍ୟାନୁବାଦ -

ନିତି କରି ସ୍ନାନ ଆହୁତି ପ୍ରଦାନ
କରୁଥିଲେ ସେ ଅଗ୍ନିରେ
ବଲ୍କଳ ଉତ୍ତରୀ ଧାରିଣୀ ପାର୍ବତୀ
ରତ ବେଦ ପଠନରେ ।
ଗୌରୀଙ୍କ ଦର୍ଶନ ପାଇଁ ଋଷିଗଣ
ଆସୁଥିଲେ ସନ୍ନିଧାନେ
ଧର୍ମନିଷ୍ଠା ହେତୁ ବୟସ ବିଚାର
କରୁ ନଥିଲେ ସେମାନେ ॥ ୧୬ ॥

**ଶ୍ଳୋକ- ୧୭**

ବିରୋଧିସତ୍ତ୍ୱୋଜ୍ଝିତପୂର୍ବମତ୍ସରଂ
ଦ୍ରୁମୈରଭୀଷ୍ଟପ୍ରସବାର୍ଚ୍ଚିତାତିଥି ।
ନବୋଟଜାଭ୍ୟନ୍ତରସଂଭୃତାନଳଂ
ତପୋବନଂ ତଚ୍ଚ ବଭୂବ ପାବନମ୍ ॥ ୧୭ ॥

ଅନ୍ୱୟ - ବିରୋଧିସତ୍ତ୍ୱୋଜ୍ଝିତପୂର୍ବମତ୍ସରଂ ଦ୍ରୁମୈଃ ଅଭୀଷ୍ଟପ୍ରସବାର୍ଚ୍ଚିତାତିଥି
ନବୋଟଜ ।ଭ୍ୟନ୍ତରସଂଭୃତାନଳଂ ତତ୍ ଚ ତପୋବନଂ ପାବନମ୍ ବଭୂବ ।

ପଦ୍ୟାନୁବାଦ -

ଏପରି ପାବନ ଥିଲା ତପୋବନ
ତପସ୍ୱିନୀ ଗୌରୀଙ୍କର
ଯହିଁ ପଶୁଗଣ ରହୁଥିଲେ ମିଶି
ବୈରଭାବ କରି ଦୂର ।
ଅତିଥି ଅଭୀଷ୍ଟ ଫଳ ଦେଇ ତୁଷ୍ଟ
କରୁଥିଲେ ବୃକ୍ଷମାନ
ନବ ପର୍ଣ୍ଣଶାଳା ଗୁଡିକରେ ହୋମ-
ଅଗ୍ନି ଥିଲା ସଂରକ୍ଷଣ ॥ ୧୭ ॥

## ଶ୍ଳୋକ- ୧୮

ଯଦା ଫଳଂ ପୂର୍ବତପଃସମାଧିନା
ନ ତାବତା ଲଭ୍ୟମମଂସ୍ତ କାଂକ୍ଷିତମ୍ ।
ତଦାଽନପେକ୍ଷ୍ୟ ସ୍ୱଶରୀରମାର୍ଦ୍ଦବଂ
ତପୋ ମହତ୍ ସା ଚରିତୁଂ ପ୍ରଚକ୍ରମେ ॥ ୧୮ ॥

ଅନ୍ୱୟ - ସା ଯଦା ତାବତା ପୂର୍ବତପଃସମାଧିନା କାଂକ୍ଷିତମ୍ ଫଳମ୍ ଲଭ୍ୟଂ ନ ଅମଂସ୍ତ ତଦା ସ୍ୱଶରୀରମାର୍ଦ୍ଦବମ୍ ଅନପେକ୍ଷ୍ୟ ମହତ୍ ତପଃ ଚରିତୁମ୍ ପ୍ରଚକ୍ରମେ ।

ପଦ୍ୟାନୁବାଦ -

ଯେତେବେଳେ ଗୌରୀ ମନେ ନେଲେ ଧରି
ପୂର୍ବପରି ତପ କଲେ
ମନର ବାଞ୍ଛିତ ହେବନାହିଁ ପ୍ରାପ୍ତ
ଅନ୍ୟ ଉପାୟ ଚିନ୍ତିଲେ ।
କୋମଳ ଶରୀର ପାଇଁକି ଆଦର
ରହିଲା ନାହିଁ ମନରେ
ଅତ୍ୟନ୍ତ କଠିନ ତପ ଆଚରଣ
ଆରମ୍ଭିଲେ ପୁଣିଥରେ ॥ ୧୮ ॥

## ଶ୍ଳୋକ- ୧୯

କ୍ଲମଂ ଯଯୌ କନ୍ଦୁକଲୀଳୟାପି ଯା
ତୟା ମୁନୀନାଂ ଚରିତଂ ବ୍ୟଗାହ୍ୟତ ।
ଧ୍ରୁବଂ ବପୁଃ କାଞ୍ଚନପଦ୍ମ ନିର୍ମିତମ୍
ମୃଦୁ ପ୍ରକୃତ୍ୟା ଚ ସସାରମେବ ଚ ॥ ୧୯ ॥

ଅନ୍ୱୟ - ଯା କନ୍ଦୁକଲୀଳୟା ଅପି କ୍ଲମମ୍ ଯଯୌ, ତୟା ମୁନୀନାଂ ଚରିତଂ ବ୍ୟଗାହ୍ୟତ । ଧ୍ରୁବଂ (ତସ୍ୟାଃ), ବପୁଃ କାଞ୍ଚନପଦ୍ମ-ନର୍ମିତମ୍ (ଅତଏବ) ପ୍ରକୃତ୍ୟା ମୃଦୁ ଚ ସସାରମ୍ ଏବ (ଅସ୍ତି) ।

ପଦ୍ୟାନୁବାଦ -

ଦିନେ ଯେ ପାର୍ବତୀ ପେଣ୍ଡୁ ଖେଳେ ମାତି
ହୋଇ ଯାଉଥିଲେ କ୍ଳାନ୍ତ
ଆଜି ସେ ପାର୍ବତୀ ଆଚରୁ ଅଛନ୍ତି
ମୁନିଙ୍କ କଠିନ ବ୍ରତ।
ସତେକି ଶରୀର ନିର୍ମିତ ତାଙ୍କର
ସୁବର୍ଣ୍ଣେ ମିଶି କମଳ
ସୁବର୍ଣ୍ଣ ସଦୃଶ ସୁନ୍ଦର କଠିନ
କମଳ ପରି କୋମଳ ॥ ୧୯ ॥

## ଶ୍ଳୋକ- ୨୦

ଶୁଚୌ ଚତୁର୍ଣ୍ଣାଂ ଜ୍ୱଳତାଂ ହବିର୍ଭୁଜାଂ
ଶୁଚିସ୍ମିତା ମଧ୍ୟଗତା ସୁମଧ୍ୟମା।
ବିଜିତ୍ୟ ନେତ୍ରପ୍ରତିଘାତିନୀଂ ପ୍ରଭାମ୍
ଅନନ୍ୟଦୃଷ୍ଟିଃ ସବିତାରମୈକ୍ଷତ ॥ ୨୦ ॥

ଅନ୍ୱୟ - ଶୁଚୌ ଶୁଚିସ୍ମିତା ସୁମଧ୍ୟମା ଜ୍ୱଳତାଂ ଚତୁର୍ଣ୍ଣାଂ ହବିର୍ଭୁଜାଂ ମଧ୍ୟଗତା (ସା) ନେତ୍ରପ୍ରତିଘାତିନୀମ୍ ପ୍ରଭାଂ ବିଜିତ୍ୟ ଅନନ୍ୟଦୃଷ୍ଟିଃ ସବିତାରମ୍ ଐକ୍ଷତ।

ପଦ୍ୟାନୁବାଦ -

ଗ୍ରୀଷ୍ମ ସମୟରେ ସ୍ୱ ଚତୁଃପାର୍ଶ୍ୱରେ
ଜାଳି ଚାରି ଯଜ୍ଞ ଅଗ୍ନି
ତା ମଧ୍ୟରେ ବସି ଥିଲେ ଚାରୁକଟି
ଗୌରୀ ଈଷଦ୍-ହାସିନୀ।
ନେତ୍ର ପ୍ରତିଘାତୀ ତପନଙ୍କ ତେଜ
ଅତିକ୍ରମ କରି ଗୌରୀ
ଏକ ଲୟେ ଚାହିଁ ରହିଲେ ସୂର୍ଯ୍ୟଙ୍କୁ
ଅନ୍ୟତ୍ର ନ ଚାହିଁକରି ॥ ୨୦ ॥

### ଶ୍ଳୋକ -୨୧

ତଥାତିତପ୍ତଂ ସବିତୁର୍ଗଭସ୍ତିଭିଃ
ମୁଖଂ ତଦୀୟଂ କମଳଶ୍ରିୟଂ ଦଧୌ।
ଅପାଙ୍ଗୟୋଃ କେବଳମସ୍ୟ ଦୀର୍ଘୟୋଃ
ଶନୈଃ ଶନୈଃ ଶ୍ୟାମିକୟା କୃତଂ ପଦମ୍ ॥ ୨୧ ॥

ଅନ୍ୱୟ - ସବିତୁଃ ଗଭସ୍ତିଭିଃ ତଥା ଅତିତପ୍ତମ୍ ତଦୀୟମ୍ ମୁଖମ୍ କମଳଶ୍ରିୟଂ ଦଧୌ; କେବଳମ୍ ଅସ୍ୟ ଦୀର୍ଘୟୋଃ ଅପାଙ୍ଗୟୋଃ ଶନୈଃ ଶନୈଃ ଶ୍ୟାମିକୟା-ପଦମ୍ କୃତମ୍।

ପଦ୍ୟାନୁବାଦ -

ତପନଙ୍କ ତପ୍ତ କିରଣେ ଉତପ୍ତ
ହେବାରୁ ମୁଖ ମଣ୍ଡଳ
ମୁଖର ସୌନ୍ଦର୍ଯ୍ୟ ପ୍ରକଟିତ ହେଲା
ସତେ କି ଏକ କମଳ।
କେବଳ ମୁଖରେ ରହିଥିବା ତାଙ୍କ
ସୁଦୀର୍ଘ ନେତ୍ରାନ୍ତଯୁଗ
ଧୀରେ ଧୀରେ ପୂର୍ଣ୍ଣ ହୋଇ କାଳିମାରେ
କଳା ଦିଶିଲା ତା ରଙ୍ଗ ॥ ୨୧ ॥

### ଶ୍ଳୋକ- ୨୨

ଅଯାଚିତୋପସ୍ଥିତମମ୍ବୁ କେବଳମ୍
ରସାତ୍ମକସ୍ୟୋଡୁପତେଶ୍ଚ ରଶ୍ମୟଃ।
ବଭୂବ ତସ୍ୟାଃକିଳ ପାରଣାବିଧିଃ
ନ ବୃକ୍ଷବୃତ୍ତିବ୍ୟତିରିକ୍ତ-ସାଧନଃ ॥ ୨୨ ॥

ଅନ୍ୱୟ - ଅଯାଚିତୋପସ୍ଥିତଂ କେବଳଂ ଅମ୍ବୁ ତଥା ରସାତ୍ମକସ୍ୟ ଉଡୁପତେଃ ରଶ୍ମୟଃ ତସ୍ୟାଃ ପାରଣାବିଧିଃ ବଭୂବ କିଳ। ବୃକ୍ଷବୃତ୍ତିବ୍ୟତିରିକ୍ତସାଧନଃ ନଃ (ବଭୂବ)।

ପଦ୍ୟାନୁବାଦ -

ଅଯାଚିତେ ପ୍ରାପ୍ତ କେବଳ ହିଁ ଜଳ
ସହିତ ଚନ୍ଦ୍ର କିରଣ
ତପସ୍ୟାର ଶେଷେ ପାର୍ବତୀଙ୍କ ପାଇଁ
ଥିଲା ବ୍ରତାନ୍ତ ଭୋଜନ।
ବୃକ୍ଷ ଯେଉଁପରି ଚନ୍ଦ୍ରିକା ଓ ଜଳ
ଦ୍ୱାରା ଧରଇ ଜୀବନ
ପାର୍ବତୀ ସେପରି ଏକ ବୃକ୍ଷ ପରି
ବଞ୍ଚାଇଥିଲେ ଜୀବନ ॥ ୨୨ ॥

**ଶ୍ଳୋକ- ୨୩**

ନିକାମତପ୍ତା ବିବିଧେନ ବହ୍ନିନା
ନଭଶ୍ଚରେଣେନ୍ଧନସମ୍ଭୃତେନ ସା।
ତପାତ୍ୟୟେ ବାରିଭିରୁକ୍ଷିତା ନବୈ-
ର୍ଭୁବାସହୋଷ୍ମାଣମମୁଞ୍ଚଦୂର୍ଦ୍ଧ୍ୱଗମ୍ ॥ ୨୩ ॥

ଅନ୍ୱୟ - ନଭଶ୍ଚରେଣ ଇନ୍ଧନସମ୍ଭୃତେନ ବିବିଧେନ ବହ୍ନିନା ନିକାମତପ୍ତା ସା ତପାତ୍ୟୟେ ନବୈଃ ବାରିଭିଃ ଉକ୍ଷିତା(ସତୀ) ଭୁବା ସହ ଉର୍ଦ୍ଧ୍ୱଗମ୍ ଉଷ୍ମାଣମ୍ ଅମୁଞ୍ଚତ୍।

ପଦ୍ୟାନୁବାଦ -

ନଭଶ୍ଚାରୀ ସୂର୍ଯ୍ୟ ତଥା ଚତୁଃପାର୍ଶ୍ୱେ
ଯଜ୍ଞାଗ୍ନି ଦ୍ୱାରା ଉତ୍ତପ୍ତା
ଗ୍ରୀଷ୍ମକାଳ ଅନ୍ତେ ନବ ବର୍ଷା ଜଳେ
ପାର୍ବତୀ ହୋଇଲେ ସିକ୍ତା।
ଉତ୍ତପ୍ତ ଧରଣୀ ପାଇ ବର୍ଷା ପାଣି
ଉର୍ଦ୍ଧ୍ୱେ ଛାଡେ ଉଷ୍ମ ବାଷ୍ପ
ସେପରି ଗୌରୀଙ୍କ ସିକ୍ତ ଶରୀରରୁ
ଉର୍ଦ୍ଧ୍ୱକୁ ଉଠିଲା ବାଷ୍ପ ॥ ୨୩ ॥

## ଶ୍ଲୋକ- ୨୪

ସ୍ଥିତାଃ କ୍ଷଣଂ ପକ୍ଷ୍ମସ ତାଡିତାଧରାଃ
ପୟୋଧରୋତ୍ସେଧନିପାତଚୂର୍ଣ୍ଣିତାଃ ।
ବଲୀଷୁ ତସ୍ୟାଃ ସ୍ଖଳିତାଃ ପ୍ରପେଦିରେ
ଚିରେଣ ନାଭିଂ ପ୍ରଥମୋଦବିନ୍ଦବଃ ॥ ୨୪ ॥

ଅନ୍ୱୟ - ପ୍ରଥମୋଦବିନ୍ଦବଃ ତସ୍ୟାଃ ପକ୍ଷ୍ମସୁ କ୍ଷଣଂ ସ୍ଥିତାଃ (ତତଃ) ତାଡିତାଧରା ପୟୋଧରୋତ୍ସେଧନିପାତଚୂର୍ଣ୍ଣିତାଃ (ସନ୍ତଃ) ବଲୀଷୁ ସ୍ଖଳିତାଃ ଚିରେଣ ନାଭିଂ ପ୍ରପେଦିରେ ।

ପଦ୍ୟାନୁବାଦ -

ପାର୍ବତୀଙ୍କ ପକ୍ଷ୍ମ ଉପରେ ପ୍ରଥମ
ବର୍ଷାବିନ୍ଦୁ କିଛି କ୍ଷଣ
ରହିଣ ତତ୍-ପରେ ପଡିଲେ ଅଧରେ
ଦେଇ ଅଧରେ ତାଡନ ।
ଅଧରରୁ ଗଡି ସ୍ତନଅଗ୍ରେ ପଡି
ହୋଇଲେ ଚୂର୍ଣ୍ଣ ବିଚୂର୍ଣ୍ଣ
ବିଳମ୍ବେ ତ୍ରିବଳି ଅତିକ୍ରମ କରି
ନାଭିରେ ହେଲେ ବିଲୀନ ॥ ୨୪ ॥

## ଶ୍ଲୋକ- ୨୫

ଶିଳାଶୟାଂ ତାମନିକେତବାସିନୀଂ
ନିରନ୍ତରାସ୍ୱନ୍ତରବାତବୃଷ୍ଟିଷୁ ।
ବ୍ୟଲୋକୟନ୍ନୁନ୍ମିଷିତୈସ୍ତଡିନ୍ମୟୈ-
ର୍ମହାତପଃସାକ୍ଷ୍ୟ ଇବ ସ୍ଥିତାଃ କ୍ଷପାଃ ॥ ୨୫ ॥

ଅନ୍ୱୟ - ନିରନ୍ତରାସୁ ଅନ୍ତରବାତବୃଷ୍ଟିଷୁ ଅନିକେତବାସିନୀଂ, ଶିଳାଶୟାଂ ତାଂ ମହାତପଃ ସାକ୍ଷ୍ୟେ ସ୍ଥିତାଃ କ୍ଷପାଃ ! ତଡିନ୍ମୟୈଃ ଉନ୍ମିଷିତେଃ ବ୍ୟଲୋକୟନ୍ ଇବ ।

ପଦ୍ୟାନୁବାଦ -

ମଝିରେ ମଝିରେ ଅବିରତ ବାତ
ବର୍ଷା ହେବା ସମୟରେ
ଘରେ ନ ରହିଣ ପଥର ଚଟାଣ
ପରେ ଗୌରୀ ଶୋଉଥିଲେ।
ଏପରି କଠିନ ତପସ୍ୟା ସାଧନ
ସାକ୍ଷୀ ରୂପେ ରାତ୍ରିମାନେ
ଜଣାପଡୁଥିଲା ଦେଖୁଥିଲେ ନିଜ
ବିଦ୍ୟୁତ୍ ରୂପକ ନୟନେ ॥ ୨୫ ॥

### ଶ୍ଲୋକ -୨୬

ନିନାୟ ସାତ୍ୟନ୍ତହିମୋତ୍କିରାନିଳାଃ
ସହସ୍ୟରାତ୍ରିରୁଦବାସତତ୍ପରା।
ପରସ୍ପରାକ୍ରନ୍ଦିନି ଚକ୍ରବାକୟୋଃ
ପୁରୋ ବିଯୁକ୍ତେ ମିଥୁନେ କୃପାବତୀ ॥ ୨୬ ॥

ଅନ୍ୱୟ- ସା ଅତ୍ୟନ୍ତହିମୋତ୍କିରାନିଳାଃ ସହସ୍ୟରାତ୍ରିଃ ଉଦବାସତ୍ପରା (ତଥା) ପରସ୍ପରାକ୍ରନ୍ଦିନି ପୁରଃ ଚକ୍ରବାକୟୋଃ ବିଯୁକ୍ତେ ମିଥୁନେ କୃପାବତୀ ନିନାୟ।

ପଦ୍ୟାନୁବାଦ -

ହିମକଣ ଯୁକ୍ତ ଅତି ଶୀତବାତ-
ସଂପନ୍ନ ପୌଷ ମାସରେ
ଠିଆହୋଇ ଜଳ ମଧ୍ୟେ ରହୁଥିଲେ
ପାର୍ବତୀ ରାତ୍ରକାଳରେ।
ସମ୍ମୁଖରେ ତାଙ୍କ ବିୟୋଗ ବିଧୁର
ଚକ୍ରବାକ ଯୁଗେ ଯହିଁ
କାଟୁଥିଲେ ରାତ୍ରି କ୍ରନ୍ଦନରେ ରତ
ଚକୋରେ ଦୟା ଦେଖାଇ ॥ ୨୬ ॥

### ଶ୍ଲୋକ- ୨୭

ମୁଖେନ ସା ପଦ୍ମସୁଗନ୍ଧିନା ନିଶି
ପ୍ରବେପମାନାଧରପତ୍ରଶୋଭିନା ।
ତୁଷାରବୃଷ୍ଟିକ୍ଷତପଦ୍ମସମ୍ପଦାମ୍
ସରୋଜସନ୍ଧାନମିବାକରୋଦପାମ୍ ॥ ୨୭ ॥

ଅନ୍ୱୟ - ସା ନିଶି ପଦ୍ମସୁଗନ୍ଧିନା ପ୍ରବେପମାନାଧରପତ୍ରଶୋଭିନା ମୁଖେନ ତୁଷାରବୃଷ୍ଟିକ୍ଷତପଦ୍ମସମ୍ପଦାମ୍ ଅପାମ୍ ସରୋଜସନ୍ଧାନମ୍ ଅକୋରତ୍ ଇବ ।

ପଦ୍ୟାନୁବାଦ -

ସେହି ରାତ୍ରିକାଳେ ଠିଆହୋଇ ଜଳେ
ରହିଥିଲେ ବାଳା ଗୌରୀ
ମୁଖାରବିନ୍ଦରୁ ପଦ୍ମର ସୁଗନ୍ଧ
ବାହାରୁଥିଲା ତାଙ୍କରି ।
କମ୍ପିତ ଅଧର ପଦ୍ମପତ୍ର ପ୍ରାୟ
ହେଉଥିଲା ଯେ ପ୍ରତୀତ
ମୁଖର ସୌନ୍ଦର୍ଯ୍ୟ ଜଳାଶୟ ମଧ୍ୟେ
ପଦ୍ମ ପରି ସୁଶୋଭିତ ।
ଜଳାଶୟେ ସ୍ଥିତ କମଳ ସମସ୍ତ
ତୁଷାରେ ହୋଇଛି ନାଶ
ତଥାପି ଗୌରୀଙ୍କ ମୁଖ ଶୋଭା ଥିଲା
ସତେକି ପଦ୍ମ ସଦୃଶ ॥ ୨୭ ॥

### ଶ୍ଲୋକ- ୨୮

ସ୍ୱୟଂବିଶୀର୍ଣ୍ଣଦ୍ରୁମପର୍ଣ୍ଣବୃତ୍ତିତା
ପରା ହି କାଷ୍ଠା ତପସସ୍ତୟା ପୁନଃ ।
ତଦପ୍ୟପାକୀର୍ଣ୍ଣମତଃ ପ୍ରିୟଂବଦାଂ
ବଦନ୍ତ୍ୟପର୍ଣ୍ଣେତି ଚ ତାଂ ପୁରାବିଦଃ ॥ ୨୮ ॥

ଅନ୍ୱୟ- ସ୍ୱୟଂବିଶୀର୍ଣ୍ଣଦ୍ରୁମପର୍ଣ୍ଣବୃତ୍ତିତା ହି ତପସଃ ପରକାଷ୍ଠା। ତୟା ପୁନଃ ତଦପି ଅପାକୀର୍ଣ୍ଣମ୍। ଅତଃ ପୁରାବିଦଃ ପ୍ରିୟମ୍ୱଦାଂ ତାମ୍ 'ଅପର୍ଣ୍ଣା' ଇତି ବଦନ୍ତି।

ପଦ୍ୟାନୁବାଦ -

ସ୍ୱତଃ ବୃକ୍ଷଚ୍ୟୁତ ପର୍ଣ୍ଣକୁ ଭକ୍ଷଣ
କରି ଜୀବନ ଧାରଣ
ଅଟଇ କଠିନ ତପ ଆଚରଣ
ବିଧିର ଶେଷ ସୋପାନ।
ପର୍ଣ୍ଣ ଭକ୍ଷି ପ୍ରାଣ- ରକ୍ଷାର ବିଧାନ
ତ୍ୟାଗିଥିଲେ ପାରବତୀ
ତେଣୁ ପୁରାଣଜ୍ଞ ପ୍ରିୟଭାଷିଣୀଙ୍କୁ
'ଅପର୍ଣ୍ଣା' ବୋଲି ଡାକନ୍ତି ॥ ୨୮

**ଶ୍ଳୋକ- ୨୯**

ମୃଣାଳିକାପେଲବମେବମାଦିଭିଃ
ବ୍ରତୈଃ ସ୍ୱମଙ୍ଗଂଗ୍ଳପୟନ୍ତ୍ୟହର୍ନିଶମ୍।
ତପଃ ଶରୀରୈଃ କଠିନୈରୁପାର୍ଜ୍ଜିତମ୍
ତପସ୍ୱିନାଂ ଦୂରମଧଶ୍ଚକାର ସା ॥ ୨୯ ॥

ଅନ୍ୱୟ - ମୃଣାଳିକାପେଲବଂ ସ୍ୱମ୍ ଅଙ୍ଗମ୍ ଏବମାଦିଭିଃ ବ୍ରତୈଃ ଅହର୍ନିଶଂ ଗ୍ଳପୟନ୍ତୀ ସା କଠିନୈଃ ଶରୀରୈଃ ଉପାର୍ଜ୍ଜିତଂ ତପସ୍ୱିନାଂ ତପଃ ଦୂରମ୍ ଅଧଶ୍ଚକାର।

ପଦ୍ୟାନୁବାଦ -

ପଦ୍ମନାଡ ସମ କୋମଳ ଅଙ୍ଗକୁ
ଦିନରାତି ଅବିରତ
ବ୍ରତ ଭିନ୍ନ ଭିନ୍ନ କରି ଆଚରଣ
ଦେଉଥିଲେ ଅତି କଷ୍ଟ।

କଠିନ ଶରୀର ଦ୍ୱାରା ଉପାର୍ଜିତ
ମୁନିମାନଙ୍କର ତପ
ପାର୍ବତୀଙ୍କ ତପ ତୁଳନାରେ ତାହା
ଜଣାପଡୁଥିଲା ଅଳ୍ପ ॥ ୨୯ ॥

## ଶ୍ଳୋକ- ୩୦

ଅଥାଜିନାଷାଢଧରଃ ପ୍ରଗଲ୍ଭବାକ୍
ଜ୍ୱଲନ୍ନିବ ବ୍ରହ୍ମମୟେନ ତେଜସା ।
ବିବେଶ କଶ୍ଚିଜ୍ଜଟିଳସ୍ତପୋବନଂ
ଶରୀରବଦ୍ଧଃ ପ୍ରଥମାଶ୍ରମୋ ଯଥା ॥ ୩୦ ॥

ଅନ୍ୱୟ - ଅଥ ଅଜିନାଷାଢଧରଃ ପ୍ରଗଲ୍ଭବାକ୍ ବ୍ରହ୍ମମୟେନ ତେଜସା ଜ୍ୱଲନ୍ ଇବ କଶ୍ଚିତ୍ ଜଟିଳଃ ଶରୀରବଦ୍ଧଃ ପ୍ରଥମାଶ୍ରମଃ ଯଥା ତପୋବନଂ ବିବେଶ ।

ପଦ୍ୟାନୁବାଦ -

କେହି ଜଟାଧାରୀ ସାକ୍ଷାତ୍ ବ୍ରହ୍ମଚାରୀ
ବ୍ରହ୍ମତେଜେ ତେଜୀୟାନ
ଅଜିନ ବସନ ବଚନେ ନିପୁଣ
ପଳାଶ ଦଣ୍ଡ ଧରିଣ ।
ଏହିପରି ବେଶେ ସେହି ବ୍ରହ୍ମଚାରୀ
ପହଞ୍ଚିଲେ ସେହି ସ୍ଥାନ
ପ୍ରବେଶ କରିଲେ ତପସ୍ୟାରେ ମଗ୍ନା
ପାର୍ବତୀଙ୍କ ତପୋବନ ॥ ୩୦ ॥

## ଶ୍ଳୋକ- ୩୧

ତମାତିଥେୟୀ ବହୁମାନପୂର୍ବୟା
ସପର୍ଯ୍ୟା ପ୍ରତ୍ୟୁଦିୟାୟ ପାର୍ବତୀ ।
ଭବନ୍ତି ସାମ୍ୟେଽପି ନିବିଷ୍ଟଚେତସାଂ
ବପୁର୍ବିଶେଷେଷ୍ୱତିଗୌରବାଃ କ୍ରିୟାଃ ॥ ୩୦ ॥

ଅନ୍ୱୟ - ଆତିଥେୟୀ (ଅତିଥୌ ସାଧ୍ୱୀ) ପାର୍ବତୀ ବହୁମାନପୂର୍ବୟା ସପର୍ଯ୍ୟା (ପୂଜୟା ସହ) ତଂ ପ୍ରତ୍ୟୁଦିୟାୟ। ସାମ୍ୟେ ଅପି, ନିବିଷ୍ଟ-ଚେତସାଂ ବପୁର୍ବିଶେଷେଷୁ (ତେଜସ୍ୱୀ-ଜନେଷୁ) ଅତିଗୌରବାଃ କ୍ରିୟାଃ ଭବନ୍ତି।

ପଦ୍ୟାନୁବାଦ -

ଅତିଥି ସତ୍କାରେ ଅତି ଧୁରନ୍ଧର
ପାର୍ବତୀ ଆଗକୁ ଯାଇ
ପୂଜାର୍ଚ୍ଚନା ସହ ସାଦର ସ୍ୱାଗତ
କଲେ ଅତିଥିଙ୍କୁ ତହିଁ।
ଚିତ୍ତସାମ୍ୟ ଥିଲେ ମଧ୍ୟ ସ୍ଥିରଚିତ୍ତ
ବ୍ୟକ୍ତିଙ୍କର କାର୍ଯ୍ୟମାନ
ବିଶେଷ ଶରୀର- ଧାରୀ ବ୍ୟକ୍ତି ପାଇଁ
ହୁଏ ଗୌରବ-ସଂପନ୍ନ ॥ ୩୧ ॥

**ଶ୍ଳୋକ- ୩୨**

ବିଧିପ୍ରଯୁକ୍ତାଂ ପରିଗୃହ୍ୟ ସତ୍କ୍ରିୟାଂ
ପରିଶ୍ରମଂ ନାମ ବିନୀୟ ଚ କ୍ଷଣମ୍।
ଉମାଂ ସ ପଶ୍ୟନ୍ ଋଜୁନୈବ ଚକ୍ଷୁଷା
ପ୍ରଚକ୍ରମେ ବକ୍ତୁମନୁଜ୍ଝିତକ୍ରମଃ ॥ ୩୨ ॥

ଅନ୍ୱୟ - ସଃ ବିଧିପ୍ରଯୁକ୍ତାଂ ସତ୍କ୍ରିୟାଂ ପରିଗୃହ୍ୟ ପରିଶ୍ରମଂ କ୍ଷଣଂ ବିନୀୟ ନାମ ଚ ଉମାଂ ଋଜୁନା ଏବ ଚକ୍ଷୁଷା ପଶ୍ୟନ୍ ଅନୁଜ୍ଝିତକ୍ରମଃ (ବ୍ୟବହାରବିଧିମନତିକ୍ରମ୍ୟ) ବକ୍ତୁମ୍ ପ୍ରଚକ୍ରମେ।

ପଦ୍ୟାନୁବାଦ -

ଶାସ୍ତ୍ରୋକ୍ତ ବିଧିରେ ଅତିଥି ସତ୍କାର
କଲେ ଗିରିସୁତା ଗୌରୀ
ଅତିଥି ସତ୍କାର କରିଲେ ସ୍ୱୀକାର
ଆସିଥିବା ବ୍ରହ୍ମଚାରୀ।

ତତ୍ପରେ ବିଶ୍ରାମ କରି କିଛିକ୍ଷଣ
ସେ ଅତିଥି ବ୍ରହ୍ମଚାରୀ
ସରଳ ଦୃଷ୍ଟିରେ ଚାହିଁ ଗଉରୀଙ୍କୁ
କହିଲେ ଶାସ୍ତ୍ରାନୁସରି ॥ ୩୨ ॥

## ଶ୍ଳୋକ- ୩୩

ଅପିକ୍ରିୟାର୍ଥଂସୁଲଭଂ ସମିତ୍କୁଶଂ
ଜଳାନ୍ୟପି ସ୍ନାନବିଧିକ୍ଷମାଣି ତେ । .
ଅପି ସ୍ୱଶକ୍ତ୍ୟା ତପସି ପ୍ରବର୍ତ୍ତସେ
ଶରୀରମାଦ୍ୟଂ ଖଳୁ ଧର୍ମସାଧନମ୍ ॥ ୩୩ ॥

ଅନ୍ୱୟ - ଅପି କ୍ରିୟାର୍ଥଂ ସମିତ୍କୁଶଂ ସୁଲଭଂ (ଭବତି); ଅପି ଜଳାନି ତେ ସ୍ନାନବିଧିକ୍ଷମାଣି (ଭବନ୍ତି) ? ଅପି ସ୍ୱଶକ୍ତ୍ୟା ତପସି ପ୍ରବର୍ତ୍ତସେ ? (ଯତଃ) ଶରୀରଂ ଖଳୁ(ନିଶ୍ଚିତଂ) ଆଦ୍ୟଂ(ଶ୍ରେଷ୍ଠଂ) ଧର୍ମସାଧନମ୍ (ଧର୍ମଲାଭୋପାୟଃ)(ଭବତି) ।

ପଦ୍ୟାନୁବାଦ -

କ୍ରିୟା କର୍ମ ପାଇଁ ସମିଧ ଓ କୁଶ
ସ୍ନାନ ପାଇଁ ଯୋଗ୍ୟ ବାରି
ମିଳୁଛି କି ନାହିଁ ବୋଲି ସେ ସ୍ଥାନରେ
ପଚାରିଲେ ବ୍ରହ୍ମଚାରୀ ।
ଯେହେତୁ ଶରୀର ତପ ସାଧନର
ପ୍ରଧାନ ଉପକରଣ
ଶକ୍ତି ଅନୁସାରେ ତପ କରୁଛ କି
ବୋଲି କରିଲେ ସେ ପ୍ରଶ୍ନ ॥ ୩୩ ॥

## ଶ୍ଳୋକ- ୩୪

ଅପି ତ୍ୱଦାବର୍ଜିତବାରିସମ୍ଭୃତଂ
ପ୍ରବାଳମାସାମନୁବନ୍ଧି ବୀରୁଧାମ୍ ।

ଚିରୋଜ୍ଝିତାଲକ୍ତକପାଟଳେନ ତେ
ତୁଲାଂ ଯଦାରୋହତି ଦନ୍ତବାସସା ॥ ୩୪ ॥

ଅନ୍ୱୟ - ତ୍ୱଦାବର୍ଜିତବାରିସମ୍ଭୃତଂ ଆସାଂ ବୀରୁଧାଂ ପ୍ରବାଳମ୍ ଅନୁବନ୍ଧି ?
ଯତ୍ (ପ୍ରବାଳଂ) ଚିରୋଜ୍ଝିତାଲକ୍ତକପାଟଳେନ ତେ ଦନ୍ତବାସସା
(ଓଷ୍ଠେନ ସହ) ତୁଲାମ୍ (ସମାନତାଂ) ଆରୋହତି ।

ପଦ୍ୟାନୁବାଦ -

କରି ଜଳ ଦାନ ଯେଉଁ ଲତାମାନ
ବଢ଼େଇଛ ଯତ୍ନେ ତୁମେ
ସେ ସବୁ ଲତାରେ ନବ ପତ୍ରୋତ୍ପନ
ହେଉଛି କି ଯଥାକ୍ରମେ ।
ବହୁଦିନୁ ଲାକ୍ଷା ରାଗ ପରିତ୍ୟାଗ
କରି ବି ତୁମ ଅଧର
ସ୍ୱଭାବେ ପାଟଳ ହେତୁ ତୁଳନୀୟ
ନବପତ୍ର ସହିତର ॥ ୩୪ ॥

**ଶ୍ଳୋକ- ୩୫**

ଅପି ପ୍ରସନ୍ନଂ ହରିଣେଷୁ ତେ ମନଃ
କରସ୍ଥଦର୍ଭପ୍ରଣୟାପହାରିଷୁ ।
ଯ ଉତ୍ପଳାକ୍ଷି ପ୍ରଚଳୈର୍ବିଲୋଚନୈ-
ସ୍ତବାକ୍ଷିସାଦୃଶ୍ୟମିବ ପ୍ରଯୁଞ୍ଜତେ ॥ ୩୫ ॥

ଅନ୍ୱୟ - କରସ୍ଥଦର୍ଭପ୍ରଣୟାପହାରିଷୁ ହରିଣେଷୁ ତେ ମନଃ ପ୍ରସନ୍ନଂ ଅପି ? ହେ ଉତ୍ପଳାକ୍ଷି !
ଯେ ପ୍ରଚଳୈଃ ବିଲୋଚନୈଃ ତବ ଅକ୍ଷି ସାଦୃଶ୍ୟ ପ୍ରଯୁଞ୍ଜତେ ଇବ ।

ପଦ୍ୟାନୁବାଦ -

ହେ ପଦ୍ମନୟନୀ ! ହରିଣ ହରିଣୀ
ଅଛନ୍ତି ଯେ ତପୋବନେ

ସ୍ନେହବଶ ତୁମ ହସ୍ତୁ ଟାଣି କୁଶ
ଖାଇଯାଆନ୍ତି ସେମାନେ।
ହରିଣ ହରିଣୀ ମାନଙ୍କ ଏମନ୍ତ
କାର୍ଯ୍ୟ ପାଇଁ ତୁମ ମନ
ସେମାନଙ୍କ ଠାରେ କୁହ ତପସ୍ୱିନୀ
ଅଛ କି ନାହିଁ ପ୍ରସନ୍ନ ?
ସେମାନଙ୍କ ସେହି ଚଞ୍ଚଳ ଚହାଣି
ଦ୍ୱାରା ତୁମର ନୟନ
ସାଦୃଶ୍ୟକୁ ଯାହା ପ୍ରତେହୁଏ କରୁ-
ଅଛନ୍ତି ଅନୁକରଣ ॥ ୩୫ ॥

### ଶ୍ଳୋକ- ୩୬

ଯଦୁଚ୍ୟତେ ପାର୍ବତି ପାପବୃତ୍ତୟେ
ନ ରୂପମିତ୍ୟବ୍ୟଭିଚାରି ତଦ୍-ବଚଃ।
ତଥାହି ତେ ଶୀଳମୁଦାରଦର୍ଶନେ
ତପସ୍ୱିନାମପ୍ୟୁପଦେଶତାଂ ଗତମ୍ ॥ ୩୬ ॥

ଅନ୍ୱୟ - ହେ, ପାର୍ବତୀ ! ରୂପଂ ପାପବୃତ୍ତୟେ ନ ଇତି ଯତ୍ ଉଚ୍ୟତେ ତତ୍ ବଚଃ ଅବ୍ୟଭିଚାରି। ତଥାହି, ହେ ଉଦାରଦର୍ଶନେ ! ତେ ଶୀଳଂ ତପସ୍ୱିନାମ୍ ଅପି ଉପଦେଶତାଂ ଗତମ୍।

ପଦ୍ୟାନୁବାଦ -

ଶୁଣ ହେ ପାର୍ବତୀ ଅଛି ଏହି ଉକ୍ତି
ବ୍ୟଭିଚାର ବୃତ୍ତି ପାଇଁ
ରୂପ କେବେହେଲେ ନୁହଁଇ ଉଦ୍ଦିଷ୍ଟ
ଏ କଥା ସତ୍ୟ ଅଟଇ।
ହେ ଉଦାରନେତ୍ରେ ! ତୁମର ଉତ୍ତମ
ସ୍ୱଭାବ ଓ ଆଚରଣ
ଋଷି ମୁନିମାନେ ଉପଦେଶ ଭାବେ
କରନ୍ତି ଅନୁକରଣ ॥ ୩୬ ॥

### ଶ୍ଳୋକ- ୩୭

ବିକୀର୍ଣ୍ଣସପ୍ତର୍ଷିବଳିପ୍ରହାସିଭି-
ସ୍ତଥା ନ ଗାଙ୍ଗୈଃସଲିଲୈର୍ଦ୍ଦିବଶ୍ଚ୍ୟୁତୈଃ ।
ଯଥା ତ୍ୱଦୀୟୈଶ୍ଚରିତୈରନାବିଳୈ-
ର୍ମହୀଧରଃ ପାବିତ ଏଷ ସାନ୍ୱୟଃ ॥ ୩୭ ॥

ଅନ୍ୱୟ - ଏଷଃ ମହୀଧରଃ ବିକୀର୍ଣ୍ଣସପ୍ତର୍ଷିବଳିପ୍ରହାସିଭିଃ ଦିବଃ ଚ୍ୟୁତୈଃ ଗାଙ୍ଗୈଃ ସଲିଳୈଃ ତଥା ନ ପାବିତଃ, ଅନାବିଳୈଃ ତ୍ୱଦୀୟୈଃ ଚରିତୈଃ ଯଥା ସାନ୍ୱୟଃ (ପାବିତଃ) ।

ପଦ୍ୟାନୁବାଦ -

ସପ୍ତର୍ଷି ନିକ୍ଷିପ୍ତ ଆକାଶୁ ପତିତ
ପୁଷ୍ପୋପହାର ସହିତ
ସ୍ୱର୍ଗରୁ ପତିତ ମନ୍ଦାକିନୀ ପୂତ
ଜଳ ଦ୍ୱାରା ହୋଇ ସିକ୍ତ ।
ଏହି ହିମଗିରି ଶୁଣ ହେ ଗଉରୀ
ନଥିଲା ସେପରି ପୂତ
ତୁମ ଅନାବିଳ ଆଚରଣ ବଳେ
ହେଲା ସବଂଶେ ପବିତ୍ର ॥ ୩୭ ॥

### ଶ୍ଳୋକ- ୩୮

ଅନେନ ଧର୍ମଃ ସବିଶେଷମଦ୍ୟ ମେ
ତ୍ରିବର୍ଗସାରଃ ପ୍ରତିଭାତି ଭାବିନି ।
ତ୍ୱୟା ମନୋର୍ନିବିଷୟାର୍ଥକାମୟା
ଯଦେକ ଏବ ପ୍ରତିଗୃହ୍ୟସେବ୍ୟତେ ॥ ୩୮ ॥

ଅନ୍ୱୟ - ହେ ଭାବିନି ! ଅନେନ ଧର୍ମଃ ସବିଶେଷମ୍ ଅଦ୍ୟ ମେ ତ୍ରିବର୍ଗସାରଃ ପ୍ରତିଭାତି । ତତ୍ ମନୋର୍ନିବିଷୟାର୍ଥକାମୟା ତ୍ୱୟା ଏକଃ ଧର୍ମଃ ଏବ ପ୍ରତିଗୃହ୍ୟ ସେବ୍ୟତେ ।

ପଦ୍ୟାନୁବାଦ -

ହେ ଭାବଶାଳିନୀ　　　ମେନାଙ୍କ ନନ୍ଦିନୀ
　　ହୁଏ ଯାହା ପ୍ରତିଭାତ
ବୋଧେ ତ୍ରିବର୍ଗରେ　　　ବିଶେଷ ଭାବରେ
　　ଧର୍ମର ଅଛି ମହତ୍ୱ ।
ସେଥିପାଇଁ ତୁମେ　　　ଅର୍ଥ ଓ କାମକୁ
　　ମନରୁ ଦୂରେଇ ଦେଇ
ଏକମାତ୍ର ଧର୍ମ　　　ସେବା କରୁଅଛ
　　ତାହାକୁ ହିଁ ଆପଣେଇ ॥ ୩୮ ॥

## ଶ୍ଳୋକ- ୩୯

ପ୍ରଯୁକ୍ତସତ୍କାରବିଶେଷମାତ୍ମନା
ନ ମାଂ ପରଂ ସମ୍ପ୍ରତିପତ୍ତୁମର୍ହସି ।
ଯତଃ ସତାଂ ସନ୍ନତଗାତ୍ରି ସଙ୍ଗତଂ
ମନୀଷିଭିଃ ସାପ୍ତପଦୀନମୁଚ୍ୟତେ ॥ ୩୯ ॥

ଅନ୍ୱୟ - ଆତ୍ମନା ପ୍ରଯୁକ୍ତସତ୍କାରବିଶେଷଂ ମାଂ ପରଂ ସମ୍ପ୍ରତିପତ୍ତୁଂ ନ ଅର୍ହସି ହେ ସନ୍ନତଗାତ୍ରି, ଯତଃ ମନୀଷିଭିଃ ସତାଂ ସଙ୍ଗତଂ ସପ୍ତପଦୀନମୁଚ୍ୟତେ ।

ପଦ୍ୟାନୁବାଦ -

ଶୁଣ ହେ ପାର୍ବତୀ　　　ବିଶେଷ ଅତିଥି
　　ଭାବେ ତୁମେ ମୋ ସତ୍କାର
କରିଅଛ ଯେଣୁ　　　ଭାବିବନି ତେଣୁ
　　ମୋତେ କେବେ ଆଉ ପର ।
ସାତ ପଦ କଥା　　　ହେଲେ ଅବା ସାତ
　　ପାଦ ଏକତ୍ର ଚାଲିଲେ
ହେ ଅବନତାଙ୍ଗି　　　ସଜ୍ଜନ ସଙ୍ଗତି
　　ଜ୍ଞାନୀ ମତେ ହୁଏ ଭଲେ ॥ ୩୯ ॥

### ଶ୍ଲୋକ- ୪୦

ଅତୋଽତ୍ର କିଞ୍ଚିଦ୍ଭବତୀଂ ବହୁକ୍ଷମାଂ
ଦ୍ୱିଜାତିଭାବାଦୁପପନ୍ନଚାପଳଃ ।
ଅୟଂ ଜନଃ ପ୍ରଷ୍ଟୁମନାସ୍ତପୋଧନେ
ନ ଚେଦ୍ରହସ୍ୟଂ ପ୍ରତିବକ୍ତୁମର୍ହସି ॥ ୪୦ ॥

ଅନ୍ୱୟ - ହେ ତପୋଧନେ, ଅତଃ ଅତ୍ର ଭବତୀଂ ବହୁକ୍ଷମାଂ ଦ୍ୱିଜାତି-ଭାବାତ୍ ଉପପନ୍ନଚାପଳଃ ଅୟଂ ଜନଃ କିଞ୍ଚିତ୍ ପ୍ରଷ୍ଟୁମନାଃ ଅସ୍ତି । ରହସ୍ୟଂ ନ ଚେତ୍, ପ୍ରତିବକ୍ତୁଂ ଅର୍ହସି ।

ପଦ୍ୟାନୁବାଦ -

ଆହେ କ୍ଷମାଶୀଳା ତପସ୍ୱିନୀ ବାଳା
ଜାତିରେ ମୁହିଁ ବ୍ରାହ୍ମଣ
ବ୍ରାହ୍ମଣ ହେତୁରୁ କଥା କହିବାରେ
ଅଛି ଚପଳତା ଗୁଣ ।
ମନେ ମୁଁ ଭାବୁଛି ପଚାରିବି କିଛି
ତୁମ୍ଭଙ୍କୁ ହେ ଗିରିସୁତା
ଅନୁଗ୍ରହ କରି ଦେବ ତା ଉତ୍ତର
ନଥିଲେ ଗୋପନୀୟତା ॥ ୪୦ ॥

### ଶ୍ଲୋକ- ୪୧

କୁଳେ ପ୍ରସୂତିଃ ପ୍ରଥମସ୍ୟ ବେଧସଃ
ତ୍ରିଲୋକସୌନ୍ଦର୍ଯ୍ୟମିବୋଦିତଂ ବପୁଃ ।
ଅମୃଗ୍ୟମୈଶ୍ୱର୍ଯ୍ୟସୁଖଂ ନବଂ ବୟ-
ସ୍ତପଃ ଫଳଂ ସ୍ୟାତ୍କିମତଃ ପରଂ ବଦ ॥ ୪୧ ॥

ଅନ୍ୱୟ - ପ୍ରଥମସ୍ୟ ବେଧସଃ କୁଳେ ପ୍ରସୂତିଃ । ବପୁଃ ତ୍ରିଲୋକ-ସୌନ୍ଦର୍ଯ୍ୟମ୍ ଇବ ଉଦିତମ୍ । ଐଶ୍ୱର୍ଯ୍ୟମ୍ ଅମୃଗ୍ୟମ୍ । ବୟଃ ନବମ୍; ଅତଃପରଂ କିଂ ତପଃ ଫଳଂ ସ୍ୟାତ୍ ? ବଦ ।

ପଦ୍ୟାନୁବାଦ -

ହେ ପାର୍ବତୀ ତୁମ୍ଭେ ପ୍ରଥମ ବ୍ରହ୍ମାଙ୍କ
ବଂଶରେ ହୋଇଛ ଜାତ
ଶରୀରେ ତୁମ୍ଭର ସାରା ତ୍ରିଲୋକର
ସୌନ୍ଦର୍ଯ୍ୟ ହିଁ ଏକୀଭୂତ ।
ଐଶ୍ୱର୍ଯ୍ୟର ସୁଖ ଖୋଜିବାର ନାହିଁ
ବୟସ ତୁମ୍ଭ ନବୀନ
କୁହ ଆଉ କେଉଁ ଫଳ ଆଶାକରି
ତପସ୍ୟାରେ ହୁଅ ମଗ୍ନ ॥ ୪୧ ॥

**ଶ୍ଳୋକ- ୪୨**

ଭବତ୍ୟନିଷ୍ଟାଦପି ନାମ ଦୁଃସହାନ୍-
ମନସ୍ୱିନୀନାଂ ପ୍ରତିପତ୍ତିରୀଦୃଶୀ ।
ବିଚାରମାର୍ଗ-ପ୍ରହିତେନ ଚେତସା
ନ ଦୃଶ୍ୟତେ ତଚ୍ଚ କୃଶୋଦରି ତ୍ୱୟି ॥ ୪୨ ॥

ଅନ୍ୱୟ - ଦୁଃସହାତ୍ ଅନିଷ୍ଟାତ୍ ଅପି ମନସ୍ୱିନୀନାମ୍ ଈଦୃଶୀ ପ୍ରତିପତ୍ତିଃ ଭବତି ନାମ । ହେ କୃଶୋଦରି, ବିଚାରମାର୍ଗପ୍ରହିତେନ ଚେତସା ତତ୍ ଚ ତ୍ୱୟି ନ ଦୃଶ୍ୟତେ ॥

ପଦ୍ୟାନୁବାଦ -

ଦୁଃସହ ଅନିଷ୍ଟ ହେତୁ ସ୍ଥିରଚିତ୍ତ
ନାରୀମାନଙ୍କ ପ୍ରବୃତ୍ତି
ଏହିପରି ହୋଇ ଥାଏ ଯାହା ଅଛି
ସାଧାରଣ ଅନୁଭୂତି ।
ଆହେ କୃଶୋଦରୀ ତୁମ୍ଭର ସେପରି
ହୋଇନି ଅନିଷ୍ଟ କିଛି
ମୁଁ ମୋର ବିଚାର- ଶୀଳ ଚିତ୍ତ ଦ୍ୱାରା
ଏ କଥା ଜାଣି ପାରୁଛି ॥ ୪୨ ॥

## ଶ୍ଳୋକ- ୪୩

ଅଲଭ୍ୟଶୋକାଽଭିଭବେୟମାକୃତି-
ର୍ବିମାନନା ସୁଭ୍ରୁ ! କୁତଃ ପିତୃର୍ଗୃହେ।
ପରାଭିମର୍ଶୋ ନ ତବାସ୍ତି କଃ କରଂ
ପ୍ରସାରୟେତ୍ ପନ୍ନଗରତ୍ନସୂଚୟେ ॥ ୪୩ ॥

ଅନ୍ୱୟ- ହେ ସୁଭ୍ରୁ ! ଇୟମ୍ ଆକୃତିଃ ଅଲଭ୍ୟଶୋକାଭିଭବା। ପିତୁଃ ଗୃହେ ବିମାନନା କୁତଃ ? ପରାଭିମର୍ଶଃ ଚ ତବ ନାସ୍ତି। ପନ୍ନଗରତ୍ନସୂଚୟେ କଃ କରଂ ପ୍ରସାରୟେତ୍।

ପଦ୍ୟାନୁବାଦ -

ସୁଭ୍ରୂଲତାଧାରୀ ହେ ସୁନ୍ଦରୀଗୌରୀ
ତୁମ୍ଭ ଏ ସୌମ୍ୟ ଶରୀର
ଶୋକେ ଅଭିଭୂତ କେବେ ବି ନଥିବ
ଏ କଥା ନିଶ୍ଚୟ ସ୍ଥିର।
କାରଣ ହେ ଗୌରୀ ରହୁଥିଲ ତୁମ୍ଭେ
ନିଜ ପିତାଙ୍କର ଗୃହେ
କନ୍ୟା-ଅପମାନ ପିତା ଗୃହେ ହେବା
କେବେ ବି ସମ୍ଭବ ନୁହେଁ।
ପୁଣି ତୁମ୍ଭ ପ୍ରତି ବଳାତ୍କାର ହେବା
ନୁହଁଇ କେବେ ସମ୍ଭବ
ସର୍ପର ଶିରରୁ ମଣି ନେବା ପାଇଁ
କେ ବା ହସ୍ତ ପ୍ରସାରିବ ? ॥ ୪୩ ॥

## ଶ୍ଳୋକ- ୪୪

କିମିତ୍ୟପାସ୍ୟାଭରଣାନି ଯୌବନେ
ଧୃତଂ ତ୍ୱୟା ବାର୍ଦ୍ଧକଶୋଭି ବଲ୍କଲମ୍।
ବଦ ପ୍ରଦୋଷେ ସ୍ଫୁଟଚନ୍ଦ୍ରତାରକା
ବିଭାବରୀ ଯଦ୍ୟରୁଣାୟ କଳ୍ପତେ ॥ ୪୪ ॥

ଅନ୍ୱୟ - ହେ ଗୌରୀ ! କିମିତି ଯୌବନେ ତ୍ୱୟା ଆଭରଣାନି ଅପାସ୍ୟ ବାର୍ଦ୍ଧକଶୋଭି ବଲ୍କଳଂ ଧୃତଂ, ପ୍ରଦୋଷେ ସ୍ଫୁଟଚନ୍ଦ୍ରତାରକା ବିଭାବରୀ ଅରୁଣାୟ କଳ୍ପତେ ଯଦି ବଦ ?

ପଦ୍ୟାନୁବାଦ -

ହେ ସୌମ୍ୟା ପାର୍ବତୀ ଯୌବନେ କେମିତି
ତ୍ୟାଗକରି ଆଭୂଷଣ
ବାର୍ଦ୍ଧକ୍ୟଶୋଭି ଏ ବଲ୍କଳକୁ ଅଙ୍ଗେ
କରିଛ ତୁମ୍ଭେ ଧାରଣ ?
କୁହ ହେ ସୁନ୍ଦରୀ ସାନ୍ଧ୍ୟ ବିଭାବରୀ
ଚନ୍ଦ୍ରତାରା ବିମଣ୍ଡିତ
କେବେ କଣ ରହେଁ ଅରୁଣକୁ ଶୀଘ୍ର
ହେବାପାଇଁ ଉପଗତ ? ॥ ୪୪ ॥

### ଶ୍ଳୋକ- ୪୫

ଦିବଂ ଯଦି ପ୍ରାର୍ଥୟସେ ବୃଥା ଶ୍ରମଃ
ପିତୁଃ ପ୍ରଦେଶାସ୍ତବ ଦେବଭୂମୟଃ ।
ଅଥୋପଯନ୍ତାରମଲଂ ସମାଧିନା
ନ ରତ୍ନମନ୍ୱିଷ୍ୟତି ମୃଗ୍ୟତେ ହି ତତ୍ ॥ ୪୫ ॥

ଅନ୍ୱୟ - ଦିବଂ ପ୍ରାର୍ଥୟସେ ଯଦି, ତର୍ହି ଶ୍ରମଃ ବୃଥା, ତବ ପିତୁଃ ପ୍ରଦେଶାଃ ଦେବଭୂମୟଃ । ଅଥ ଉପଯନ୍ତାରଂ ପ୍ରାର୍ଥୟସେ (ତର୍ହି) ସମାଧିନା ଅଳଂ । ରତ୍ନଂ ନ ଅନ୍ୱିଷ୍ୟତି, ହି ତତ୍ ମୃଗ୍ୟତେ ।

ପଦ୍ୟାନୁବାଦ -

ସ୍ୱର୍ଗ ପ୍ରାପ୍ତି ଆଶା ଯଦି ଅଭିଳାଷା
ତେବେ ସେ ତପସ୍ୟା ବ୍ୟର୍ଥ
କାରଣ ତୁମ୍ଭର ପିତାଙ୍କର ଘର
ସର୍ବ ଦେବତାଙ୍କ ତୀର୍ଥ ।

ଯଦି ସ୍ୱାମୀ ପ୍ରାପ୍ତି ପାଇଁ ତପେ ବ୍ରତୀ
ହୋଇଅଛ ହେ ପାର୍ବତୀ
କ୍ଲିଷ୍ଟ ତପବ୍ରତ ନୁହେଁ ଅଭିପ୍ରେତ
ତୁମ୍ଭ ପାଇଁ ରୂପବତୀ ।
କାରଣ ଯେ ରତ୍ନ କରେନି ସଂଧାନ
ଗ୍ରହୀତା ତା ନିଜ ପାଇଁ
ଯହିଁ ଥାଏ ରତ୍ନ ଯାଆନ୍ତି ସେ ସ୍ଥାନ
ଖୋଜି ଖୋଜି ଲୋକେ ଧାଇଁ ॥ ୪୫ ॥

### ଶ୍ଲୋକ- ୪୬

ନିବେଦିତଂ ନିଃଶ୍ୱସିତେନ ସୋଷ୍ମଣା
ମନସ୍ତୁ ମେ ସଂଶୟମେବ ଗାହତେ ।
ନ ଦୃଶ୍ୟତେ ପ୍ରାର୍ଥୟିତବ୍ୟ ଏବ ତେ
ଭବିଷ୍ୟତି ପ୍ରାର୍ଥିତଦୁର୍ଲଭଃ କଥମ୍ ॥ ୪୬ ॥

ଅନ୍ୱୟ - ସୋଷ୍ମଣା ନିଃଶ୍ୱସିତେନ ନିବେଦିତଂ ମନସ୍ତୁ ମେ ସଂଶୟମ୍ ଏବ ଗାହତେ, ତେ ପ୍ରାର୍ଥୟିତବ୍ୟଃ ଏବ ନ ଦୃଶ୍ୟତେ, ପ୍ରାର୍ଥିତଦୁଲଭଃ କଥଂ ଭବିଷ୍ୟତି ।

ପଦ୍ୟାନୁବାଦ -

ହେ ପାର୍ବତୀ ତୁମ୍ଭ ଏ ନିଶ୍ୱାସ ଉଷ୍ମ
ଜଣାଉଛି ସବୁ କିଛି
ତଥାପି ମୋ ମନ ସନ୍ଦେହ ଆଚ୍ଛନ୍ନ
ହୋଇ ଏବେ ରହିଅଛି ।
ତୁମ୍ଭ ପ୍ରାର୍ଥନାର ଉପଯୁକ୍ତ ବର
ମୁଁ ତ ଦେଖିପାରୁନାହିଁ
ଯଦି କେ ଅଛନ୍ତି ସେ ଈପ୍ସିତ ବ୍ୟକ୍ତି
ଦୁର୍ଲଭ କେଉଁଥିପାଇଁ ? ॥ ୪୬ ॥

### ଶ୍ଳୋକ- ୪୭

ଅହୋ ସ୍ଥିରଃ କୋଽପି ତବେପ୍ସିତୋ ଯୁବା
ଚିରାୟ କର୍ଣ୍ଣୋତ୍ପଳଶୂନ୍ୟତାମଂ ଗତେ ।
ଉପେକ୍ଷତେ ଯଃ ଶ୍ଳଥଲମ୍ବିନୀର୍ଜଟାଃ
କପୋଳଦେଶେ କଳମାଗ୍ରପିଙ୍ଗଳାଃ ॥ ୪୭ ॥

ଅନ୍ୱୟ - ଅହୋ ! ତବ ଈପ୍ସିତଃ ଯୁବାଃ କୋଽପି ସ୍ଥିରଃ, ଯଃ ଚିରାୟ କର୍ଣ୍ଣୋତ୍ପଳଶୂନ୍ୟତାଂ ଗତେ କପୋଳଦେଶେ ଶ୍ଳଥଲମ୍ବିନୀଃ କଳମାଗ୍ରପିଙ୍ଗଳାଃ ଜଟାଃ ଉପେକ୍ଷତେ ।

ପଦ୍ୟାନୁବାଦ -

ଦୀର୍ଘଦିନ ତପ କାରଣରୁ କର୍ଣ୍ଣ
ହୋଇଛି ଭୂଷଣଶୂନ୍ୟ
କପୋଳଦେଶରେ ଝୁଲି ପଡିଥିବା
ଜଟାଗ୍ର ପିଙ୍ଗଳ ବର୍ଣ୍ଣ ।
ଏ କଥା ଅଦ୍ଭୁତ କେ ତୁମ୍ଭ ଇପ୍ସିତ
ଯୁବକ ଅତି ନିଷ୍ଠୁର
ତୁମ୍ଭ ଏ ଅବସ୍ଥା ଦେଖି ବି ତୁମ୍ଭଙ୍କୁ
କରୁଛନ୍ତି ଅସ୍ୱୀକାର ॥ ୪୭ ॥

### ଶ୍ଳୋକ -୪୮

ମୁନିବ୍ରତୈସ୍ତ୍ୱାମତିମାତ୍ରକର୍ଶିତାଂ
ଦିବାକରାପ୍ଲୁଷ୍ଟବିଭୂଷଣାସ୍ପଦାମ୍ ।
ଶଶାଙ୍କଲେଖାମିବ ପଶ୍ୟତୋଦିବା
ସଚେତସଃ କସ୍ୟ ମନୋ ନ ଦୂୟତେ ॥ ୪୮ ॥

ଅନ୍ୱୟ - ମୁନିବ୍ରତୈଃ ଅତିମାତ୍ରକର୍ଶିତାଂ ଦିବାକରାପ୍ଲୁଷ୍ଟବିଭୂଷଣାସ୍ପଦାମ୍ ଦିବା ଶଶାଙ୍କଲେଖାମିବ ତ୍ୱାଂ ପଶ୍ୟତଃ କସ୍ୟ ସଚେତସଃ ମନଃ ନ ଦୂୟତେ ।

ପଦ୍ୟାନୁବାଦ -

ମୁନିଙ୍କର ବ୍ରତ ଆଚରି ଅତ୍ୟନ୍ତ
ଶରୀର ହୋଇଛି କ୍ଷୀଣ
ସୂର୍ଯ୍ୟକରେ ଦଗ୍ଧୀ- ଭୂତ ହୋଇଅଛି
ଭୂଷଣ ପିନ୍ଧିବା ସ୍ଥାନ।
ଦିବସରେ ଚନ୍ଦ୍ର- କଳା ପରି ତୁମ୍ଭେ
ଦେଖା ଯାଉଛ ମଳିନ
କେଉଁ ସଚେତନ ଦେଖି ଏ ଅବସ୍ଥା
ନ ହେବ ବ୍ୟଥିତ ମନ ॥ ୪୮ ॥

**ଶ୍ଳୋକ -୪୯**

ଅବୈମି ସୌଭାଗ୍ୟମଦେନ ବଞ୍ଚିତମ୍
ତବ ପ୍ରିୟଂ ଯଶ୍ଚତୁରାବଲୋକିନଃ।
କରୋତି ଲକ୍ଷ୍ୟଂ ଚିରମସ୍ୟ ଚକ୍ଷୁଷୋ
ନବକ୍ତ୍ରମାତ୍ମୀୟମରାଳପକ୍ଷ୍ମଣଃ ॥ ୪୯ ॥

ଅନ୍ୱୟ - ତବ ପ୍ରିୟଂ ସୌଭାଗ୍ୟମଦେନ ବଞ୍ଚିତମ୍ ଅବୈମି, ଯଃ ଚତୁରାବଲୋକିନଃ ଅରାଳପକ୍ଷ୍ମଣଃ ଅସ୍ୟ ଚକ୍ଷୁଷଃ ଆତ୍ମୀୟଂ ବକ୍ତ୍ରଂ ଚିରଂ ଲକ୍ଷ୍ୟଂ ନ କରୋତି।

ପଦ୍ୟାନୁବାଦ -

ହେ ପାର୍ବତୀ ତୁମ୍ଭ ଏହି ପ୍ରିୟତମ
ନିଜ ସୌନ୍ଦର୍ଯ୍ୟ ଗର୍ବରେ
ପ୍ରବଞ୍ଚିତ ହୋଇ ଅଛନ୍ତି ବୋଲି ମୁଁ
ଆଜି ଅନୁଭବ କରେ।
କାରଣ ତୁମ୍ଭର ଚହାଣି ସୁନ୍ଦର
ବକ୍ର ପକ୍ଷ୍ମଯୁକ୍ତ ନେତ୍ର
ସମୀପରେ ବହୁ ଦିନ ରହି ମଧ୍ୟ
ହୁଅନ୍ତିନି ଆକର୍ଷିତ ॥ ୪୯ ॥

## ଶ୍ଳୋକ- ୫୦

କିୟଚ୍ଚିରଂ ଶ୍ରାମ୍ୟସି ଗୌରି ! ବିଦ୍ୟତେ
ମମାଽପି ପୂର୍ବାଶ୍ରମସଞ୍ଚିତଂ ତପଃ ।
ତଦର୍ଦ୍ଧଭାଗେନ ଲଭସ୍ୱ କାଙ୍କ୍ଷିତଂ
ବରଂ ତମିଚ୍ଛାମି ଚ ସାଧୁ ବେଦିତୁମ୍ ॥ ୫୦ ॥

ଅନ୍ୱୟ - ହେ ଗୌରି ! କିୟତ ଚିରଂ ଶ୍ରାମ୍ୟସି ? ମମ ଅପି ପୂର୍ବାଶ୍ରମସଞ୍ଚିତଂ ତପଃ ବିଦ୍ୟତେ। ତଦର୍ଦ୍ଧଭାଗେନ କାଙ୍କ୍ଷିତଂ ବରଂ ଲଭସ୍ୱ। ତଂ ସାଧୁ ବେଦିତୁମ୍ ଇଚ୍ଛାମି।

ପଦ୍ୟାନୁବାଦ -

ହେ ପାର୍ବତୀ ତୁମ୍ଭେ କେତେ ଦିନ ଆଉ
କରିବ ଏପରି ଶ୍ରମ
ପୂର୍ବାଶ୍ରମେ କୃତ ତପସ୍ୟାର ଫଳ
ରହିଛି ସଞ୍ଚିତ ମମ।
ସେଥିରୁ ଅର୍ଦ୍ଧେକ ନେଇ କର ପ୍ରାପ୍ତ
ତୁମ୍ଭର ବାଞ୍ଛିତ ପତି
ହେଲେ ସେହି ପତି କିଏସେ ଅଟନ୍ତି
ଜାଣିବାକୁ ଇଚ୍ଛା ଅତି ॥ ୫୦ ॥

## ଶ୍ଳୋକ- ୫୧

ଇତି ପ୍ରବିଶ୍ୟାଽଭିହିତା ଦ୍ୱିଜନ୍ମନା
ମନୋଗତଂ ସା ନ ଶଶାକ ଶଂସିତୁମ୍।
ଅଥୋ ବୟସ୍ୟାଂ ପରିପାର୍ଶ୍ୱବର୍ତ୍ତିନୀଂ
ବିବର୍ତ୍ତିତାନଞ୍ଜନେତ୍ରମୈକ୍ଷତ ॥ ୫୧ ॥

ଅନ୍ୱୟ - ଇତି ଦ୍ୱିଜନ୍ମନା ପ୍ରବିଶ୍ୟ ଅଭିହିତା ସା ମନୋଗତଂ ଶଂସିତୁଂ ନ ଶଶାକ। ଅଥୋ ପରିପାର୍ଶ୍ୱବର୍ତ୍ତିନୀଂ ବୟସ୍ୟାଂ ବିବର୍ତ୍ତିତାନଞ୍ଜନେତ୍ରମ୍ ଐକ୍ଷତ।

ପଦ୍ୟାନୁବାଦ -

ଆଶ୍ରମେ ପ୍ରବେଶ　　　କରି ବ୍ରହ୍ମଚାରୀ
ଏପରି ପ୍ରଶ୍ନ କରିଲେ
ନିଜ ମନୋଭାବ　　　ନିଜେ କହିବାକୁ
ପାର୍ବତୀ ଅକ୍ଷମ ହେଲେ ।
ଅଞ୍ଜନ ବିହୀନ　　　ନେତ୍ର ସଂଚାଳନ
ଦ୍ୱାରା ସେ ଇଙ୍ଗିତ ଦେଇ
ସମୀପରେ ଥିବା　　　ସଖୀଙ୍କୁ କହିଲେ
ପ୍ରକାଶ କରିବା ପାଇଁ ॥ ୫୧ ॥

**ଶ୍ଲୋକ- ୫୨**

ସଖୀ ତଦୀୟା ତମୁବାଚ ବର୍ଣ୍ଣିନଂ
ନିବୋଧ ସାଧୋ ! ତବ ଚେତ୍ କୁତୂହଳମ୍ ।
ଯଦର୍ଥମମ୍ଭୋଜମିବୋଷ୍ଣବାରଣଂ
କୃତଂ ତପଃ ସାଧନମେତୟା ବପୁଃ ॥ ୫୨ ॥

ଅନ୍ୱୟ - ତଦୀୟା ସଖୀ ତଂ ବର୍ଣ୍ଣିନମ୍ ଉବାଚ । ହେ ସାଧୋ ! ତବ କୁତୂହଳଂ ଚେତ୍, ନିବୋଧ ଯଦର୍ଥଂ ଏତୟା ଅମ୍ଭୋଜମ୍ ଉଷ୍ଣବାରଣମିବ ବପୁଃ ତପଃ ସାଧନଂ କୃତମ୍ ।

ପଦ୍ୟାନୁବାଦ -

ଉଷ୍ମ ନିବାରଣ　　　ପାଇଁ କମଳକୁ
ଛତ୍ର ରୂପେ ବ୍ୟବହାର
କରିଲେ କମଳ　　　ଅବସ୍ଥା ଯେପରି
ହୋଇଥାଏ ନାରଖାର ।
ଗୌରୀ ସେହିପରି　　　କଠିନ ତପସ୍ୟା
କରିବାକୁ ସମ୍ପାଦନ
କୋମଳ କମଳ　　　ସମ ଶରୀରକୁ
କରୁଛନ୍ତି କଷ୍ଟ ଦାନ ॥ ୫୨ ॥

### ଶ୍ଲୋକ- ୫୩

ଇୟଂ ମହେନ୍ଦ୍ରପ୍ରଭୃତୀନଧିଶ୍ରିୟଃ
ଚତୁର୍ଦିଗୀଶାନବମତ୍ୟ ମାନିନୀ ।
ଅରୂପହାର୍ଯ୍ୟ ମଦନସ୍ୟ ନିଗ୍ରହାତ୍
ପିନାକପାଣିଂ ପତିମାପ୍ତୁମିଚ୍ଛତି ॥ ୫୩ ॥

ଅନ୍ୱୟ - ମାନିନୀ ଇୟଂ ଅଧିଶ୍ରିୟଃ ମହେନ୍ଦ୍ରପ୍ରଭୃତୀନ୍ ଚତୁର୍ଦିଗୀଶାନ୍ ଅବମତ୍ୟ ମଦନସ୍ୟ ନିଗ୍ରହାତ୍ ଅରୂପହାର୍ଯ୍ୟଂ ପିନାକପାଣିଂ ପତିମ୍ ଆପ୍ତୁ ଇଚ୍ଛତି ।

ପଦ୍ୟାନୁବାଦ -

ଐଶ୍ୱର୍ଯ୍ୟ ସଂପନ୍ନ ମହେନ୍ଦ୍ରାଦି ଚାରି
ଦିକ୍ପାଳେ କରି ଅମାନ୍ୟ
ହିମାଦ୍ରି ନନ୍ଦିନୀ ଏହି ସେ ମାନିନୀ
କରିଛନ୍ତି ମନେ ପଣ ।
ସ୍ମର ଭସ୍ମୀଭୂତ ପରେ ବଶୀଭୂତ
ନୁହଁନ୍ତି ଯିଏ ରୂପରେ
ସେ ପିନାକଧାରୀ ଶିବଙ୍କୁ ପାଇବା
ପାଇଁକି ପତି ରୂପରେ ॥ ୫୩ ॥

### ଶ୍ଲୋକ- ୫୪

ଅସହ୍ୟହୁଙ୍କାର-ନିବର୍ତ୍ତିତଃ ପୁରା
ପୁରାରିମପ୍ରାପ୍ତମୁଖଃ ଶିଳୀମୁଖଃ ।
ଇମାଂ ହୃଦି ବ୍ୟାୟତପାତମକ୍ଷିଣୋଦ୍-
ବିଶୀର୍ଣ୍ଣମୂର୍ତ୍ତେରପି ପୁଷ୍ପଧନ୍ୱନଃ ॥ ୫୪ ॥

ଅନ୍ୱୟ - ପୁରା ଅସହ୍ୟହୁଙ୍କାର ନିବର୍ତ୍ତିତଃ ପୁରାରିମ୍ ଅପ୍ରାପ୍ତମୁଖଃ ବିଶୀର୍ଣ୍ଣ ମୁର୍ତ୍ତେଃ ଅପି ପୁଷ୍ପଧନ୍ୱନଃ ଶିଳୀମୁଖଃ ଇମାଂ ହୃଦି ବ୍ୟାୟତପାତମ୍ ଅକ୍ଷିଣୋତ୍।

ପଦ୍ୟାନୁବାଦ -

ପୁଷ୍ପଧନୁର୍ଦ୍ଧାରୀ ମଦନ ଶିବଙ୍କୁ
ବିନ୍ଧିଥିଲେ ଯେଉଁ ବାଣ
ଶିବଙ୍କ ଗର୍ଜନ ଶୁଣି ସେହି ବାଣ
ଫେରି ଆସିଲା ତତ୍କ୍ଷଣ।
ଫେରି ସେହି ବାଣ ଦେଖିଲା ମଦନ
ହୋଇଛନ୍ତି ଭସ୍ମୀଭୂତ
ତେଣୁ ପାର୍ବତୀଙ୍କ ହୃଦ ପ୍ରଦେଶକୁ
କଲା ବିପୁଳ ଆଘାତ ॥ ୫୪ ॥

**ଶ୍ଳୋକ- ୫୫**

ତଦା ପ୍ରଭୃତ୍ୟୁନ୍ମଦନା ପିତୁର୍ଗୃହେ
ଲଲାଟିକାଚନ୍ଦନଧୂସରାଳକା।
ନ ଜାତୁ ବାଳା ଲଭତେ ସ୍ମ ନିବୃତିଂ
ତୁଷାରସଂଘାତଶିଳାତଳେଷ୍ୱପି ॥ ୫୫ ॥

ଅନ୍ୱୟ - ତଥା ପ୍ରଭୃତି ପିତୁର୍ଗୃହେ ଉନ୍ମଦନା ଲଲାଟିକାଚନ୍ଦନଧୂସରାଳକା ବାଳା ଜାତୁ ତୁଷାରସଂଘାତଶିଳାତଳେଷୁ ଅପି ନିର୍ବୃତିଂ ନ ଲଭତେ ସ୍ମ।

ପଦ୍ୟାନୁବାଦ -

ସେହିଦିନ ଠାରୁ ପିତାଗୃହେ ରହି
ଗୌରୀ ହେଲେ କାମାସକ୍ତା
ଲଲାଟ ଚନ୍ଦନେ ଅଳକର ବର୍ଣ୍ଣ
ଦେଖାଗଲା ଧୂସରିତା।

କେବେ ହିମାବୃତ ଶିଳା ଚଟାଣରେ
ବସିରହି ବି ପାର୍ବତୀ
କାମତାପାନଳୁ କେବେହେଲେ ତାଙ୍କୁ
ମିଳିଲା ନାହିଁ ନିବୃତ୍ତି ॥ ୫୫ ॥

### ଶ୍ଳୋକ- ୫୬

ଉପାତ୍ତବର୍ଣ୍ଣେ ଚରିତେ ପିନାକିନଃ
ସବାଷ୍ପକଣ୍ଠସ୍ଖଳିତୈଃ ପଦୈରିୟମ୍ ।
ଅନେକଶଃ କିନ୍ନରରାଜକନ୍ୟକାଃ
ବନାନ୍ତସଙ୍ଗୀଃତସଖୀରରୋଦୟତ୍ ॥ ୫୬ ॥

ଅନ୍ୱୟ - ଇୟଂ ପିନାକିନଃ ଚରିତେ ଉପାତ୍ତବର୍ଣ୍ଣେ ସବାଷ୍ପକଣ୍ଠସ୍ଖଳିତୈଃ ପଦୈଃ ବନାନ୍ତସଙ୍ଗୀତସଖୀଃ କିନ୍ନରରାଜକନ୍ୟକାଃ ଅନେକଶଃ ଅରୋଦୟତ୍ ।

ପଦ୍ୟାନୁବାଦ -

ଗୀତକ୍ରମେ ଗୌରୀ ସେ ପିନାକଧାରୀ
ଶିବଙ୍କ ଚରିତ ଗାନ
କରୁଥିବା ବେଳେ କଣ୍ଠ ତନ୍ମୟରେ
ହେଉଥିଲା ବାଷ୍ପପୂର୍ଣ୍ଣ ।
କଣ୍ଠ ବାଷ୍ପରୁଦ୍ଧ ହୁଅନ୍ତେ ସଙ୍ଗୀତ-
ପଦ କଣ୍ଠରୁ ସ୍ଖଳିତ
ହେଉଥିବା ଦେଖି ସଙ୍ଗୀତ ସଖୀଏ
ଥିଲେ କ୍ରନ୍ଦନରେ ରତ ॥ ୫୬ ॥

### ଶ୍ଳୋକ- ୫୭

ତ୍ରିଭାଗଶେଷାସୁ ନିଶାସୁ ଚ କ୍ଷଣଂ
ନିମୀଲ୍ୟ ନେତ୍ରେ ସହସା ବ୍ୟବୁଧ୍ୟତ ।
କ୍ୱ ନୀଳକଣ୍ଠ ବ୍ରଜସୀତ୍ୟଲକ୍ଷ୍ୟବାକ୍
ଅସତ୍ୟକଣ୍ଠାର୍ପିତବାହୁବନ୍ଧନା ॥ ୫୭ ॥

ଅନ୍ୱୟ – ତ୍ରିଭାଗଶେଷାସୁ ନିଶାସୁ କ୍ଷଣଂ ନେତ୍ରେ ନିମୀଲ୍ୟ, ସହସା 'ହେ ନୀଳକଣ୍ଠ ! କ୍ୱ ବ୍ରଜସି'
ଇତି ଅଲକ୍ଷ୍ୟବାକ୍ ଅସତ୍ୟକଣ୍ଠାର୍ପିତବାହୁବନ୍ଧନା ଚ ସତୀ ବ୍ୟବୁଧ୍ୟତ ।

ପଦ୍ୟାନୁବାଦ –

କେତେ ଥର ରାତ୍ରେ ତିନି ଯାମ ଅନ୍ତେ
ଅଳ୍ପ କ୍ଷଣ ନେତ୍ର ମୁଦି
ସହସା ଉଠିଣ ପ୍ରଳାପ କରିଣ
ଡାକୁଥିଲେ ସେ ସମ୍ବୋଧି ।
'ଆହେ ନୀଳକଣ୍ଠ କୁଆଡେ ଯାଉଛ'
ଥିଲା ପ୍ରଳାପ ବଚନ
କାଳ୍ପନିକ ଜନ କଣ୍ଠ ଆଲିଙ୍ଗନ
କରୁଥିଲେ ସେହି କ୍ଷଣ ॥ ୫୭ ॥

### ଶ୍ଳୋକ- ୫୮

ଯଦା ବୁଧୈଃ ସର୍ବଗତସ୍ତ୍ୱମୁଚ୍ୟସେ
ନ ବେତ୍ସି ଭାବସ୍ଥମିମଂ କଥଂ ଜନମ୍ ।
ଇତି ସ୍ୱହସ୍ତୋଲ୍ଲିଖିତଶ୍ଚ ମୁଗ୍ଧୟା
ରହସ୍ୟୁପାଲଭ୍ୟତ ଚନ୍ଦ୍ରଶେଖରଃ ॥ ୫୮ ॥

ଅନ୍ୱୟ – ଯଦା ତ୍ୱଂ ବୁଧୈଃ ସର୍ବଗତଃ ଉଚ୍ୟସେ (ତତଃ) ଭାବସ୍ଥମ୍ ମଂ ଜନଂ କଥଂ ନ ବେତ୍ସି ?
ଇତି ମୁଗ୍ଧୟା ସ୍ୱହସ୍ତୋଲ୍ଲିଖିତଃ ଚନ୍ଦ୍ରଶେଖର ରହସି ଉପାଲଭ୍ୟତ ।

ପଦ୍ୟାନୁବାଦ –

ତୁମ୍ଭେ ସର୍ବବ୍ୟାପୀ ବୋଲି ଜ୍ଞାନୀମାନେ
କହିଥାନ୍ତି ଏ ଯଗତେ
ତୁମ୍ଭଠି ଆସକ୍ତା ଏ ପାର୍ବତୀ କଥା
ଜାଣି ପାରୁନ କେମନ୍ତେ ?

ନିଜ ହସ୍ତେ ଚିତ୍ର ଆଙ୍କି ଶିବଙ୍କର
ଏକ ନିର୍ଜନ ସ୍ଥାନରେ
ଆସକ୍ତା ପାର୍ବତୀ ଗାଳି ଦେଉଥିଲେ
ଏହିପରି କହି ତା'ରେ ॥ ୫୮ ॥

### ଶ୍ଳୋକ- ୫୯

ଯଦା ଚ ତସ୍ୟାଽଧିଗମେ ଯଗତ୍ପତେ-
ରପଶ୍ୟଦନ୍ୟଂ ନ ବିଧିଂ ବିଚିନ୍ୱତୀ ।
ତଦା ସହାସ୍ମାଭିରନୁଜ୍ଞୟା ଗୁରୋ-
ରିୟଂ ପ୍ରପନ୍ନା ତପସେ ତପୋବନମ୍ ॥ ୫୯ ॥

ଅନ୍ୱୟ - ଯଗତ୍ପତେଃ ତସ୍ୟ ଅଧିଗମେ ବିଚିନ୍ୱତୀ ଅନ୍ୟଂ ବିଧିଂ ଯଦା ନ ଅପଶ୍ୟତ, ତଦା ଇୟଂ ଗୁରୋଃ ଅନୁଜ୍ଞୟା ଅସ୍ମାଭିଃ ସହ ତପସେ ତପୋବନଂ ପ୍ରପନ୍ନା ।

ପଦ୍ୟାନୁବାଦ -

ଜଗତ୍-ପତି ପ୍ରାପ୍ତି ପାଇଁକି ପାର୍ବତୀ
ନପାଇ ଅନ୍ୟ ଉପାୟ
ତପସ୍ୟା ନିମିତ୍ତ ବନକୁ ଯିବାକୁ
କରିଲେ ମନରେ ତୟ ।
ପିତା ଅନୁମତି ପାଇଣ ପାର୍ବତୀ
ଆମ୍ଭମାନଙ୍କ ସହିତ
ଆସି ପ୍ରବେଶିଲେ ଉପବନ ମଧ୍ୟେ
ତପ ସାଧନା ନିମିତ୍ତ ॥ ୫୯ ॥

### ଶ୍ଳୋକ- ୬୦

ଦ୍ରୁମେଷୁ ସଖ୍ୟା କୃତଜନ୍ମସୁ ସ୍ୱୟଂ
ଫଳଂ ତପଃସାକ୍ଷିଷୁ ଦୃଷ୍ଟମେଷ୍ୱପି ।
ନ ଚ ପ୍ରରୋହାଭିମୁଖୋଽପି ଦୃଶ୍ୟତେ
ମନୋରଥୋଽସ୍ୟାଃ ଶଶିମୌଳିସଂଶ୍ରୟଃ ॥ ୬୦ ॥

ଅନ୍ୱୟ - ସଖ୍ୟା ସ୍ୱୟଂ କୃତଜନ୍ମସୁ ତପଃସାକ୍ଷିଷୁ ଏଷୁ ଦ୍ରୁମେଷୁ ଫଳମ୍ ଅପି ଦୃଷ୍ଟମ୍, ଅସ୍ୟାଃ ଶଶିମୌଳିସଂଶ୍ରୟଃ ମନୋରଥ ଚ ପ୍ରରୋହାଽଭିମୁଖୋଽପି ନ ଦୃଶ୍ୟତେ ।

ପଦ୍ୟାନୁବାଦ -

ତପସ୍ୟାର ସାକ୍ଷୀ ରୂପେ ଆମ ସଖୀ
ଦ୍ୱାରା ଏ ବୃକ୍ଷ ରୋପିତ
ହୋଇଥିଲା ତେବେ ଦିଶିଲାଣି ଏବେ
ଫଳ ଆସିବା ସଂକେତ ।
ଆମର ସଖୀଙ୍କ ଶିବ ବିଷୟକ
ମନୋରଥ ପ୍ରାପ୍ତିପାଇଁ
ଏବେବି ସେପରି ଲକ୍ଷଣ କିପରି
ଅଙ୍କୁରଣ ହୋଇନାହିଁ ॥ ୬୦ ॥

### ଶ୍ଳୋକ- ୬୧

ନ ବେଦ୍ମି ସ ପ୍ରାର୍ଥିତଦୁର୍ଲ୍ଲଭଃ କଦା
ସଖୀଭିରସ୍ରୋତ୍ତରମୀକ୍ଷିତାମିମାମ୍ ।
ତପଃକୃଶାମଭ୍ୟୁପପସ୍ୟତେ ସଖୀଂ
ବୃଷେବ ସୀତାଂ ତଦବଗ୍ରହକ୍ଷତାମ୍ ॥ ୬୧ ॥

ଅନ୍ୱୟ - ପ୍ରାର୍ଥିତଦୁର୍ଲ୍ଲଭଃ ସ ତପଃକୃଶାମ୍ ସଖୀଭିଃ ଅସ୍ରୋତ୍ତରମ୍ ଈକ୍ଷିତାମ୍ ଇମାଂ ସଖୀଂ, ବୃଷା ତଦବଗ୍ରହକ୍ଷତାମ୍ ସୀତାଂ ଇବ କଦା ଅଭ୍ୟୁପପସ୍ୟତେ ଇତି ନ ବେଦ୍ମି ।

ପଦ୍ୟାନୁବାଦ -

ତପସ୍ୟା କଠିନ କାରଣରୁ କ୍ଷୀଣ
ସଖୀ ଗୌରୀଙ୍କ ଶରୀର
ସେ ରୂପକୁ ଦେଖି ଲୋତକ ଗଡାନ୍ତି
ସବୁ ସଖୀ ନିରନ୍ତର ।

ବୃଷ୍ଟି ବିରହିତ କର୍ଷିତ ଭୂମିକୁ
ଇନ୍ଦ୍ର ଦୟା କଲାପରି
ସେ ଦୁର୍ଲ୍ଲଭ ଶିବ କରିବେକି ଦୟା
ସଖୀଙ୍କୁ ମୋ ସେହିପରି ? ॥ ୬୧ ॥

## ଶ୍ଲୋକ- ୬୨

ଅଗୂଢ଼ସଦ୍ଭାବମୀତୀଙ୍ଗିତଜ୍ଞୟା
ନିବେଦିତୋ ନୈଷ୍ଠିକସୁନ୍ଦରସ୍ତୟା ।
ଅୟୀଦମେବଂ ପରିହାସ ଇତ୍ୟୁମାମ୍
ଅପୃଚ୍ଛଦବ୍ୟଞ୍ଜିତହର୍ଷଲକ୍ଷଣଃ ॥ ୬୨ ॥

ଅନ୍ୱୟ - ଇଙ୍ଗିତଜ୍ଞୟା ତୟା ଇତି ଅଗୂଢ଼ସଦ୍ଭାବ ନିବେଦିତଃ ନୈଷ୍ଠିକସୁନ୍ଦରଃ ଅବ୍ୟଞ୍ଜିତହର୍ଷଲକ୍ଷଣଃ ସନ୍, ଅୟି ! ଇଦମ୍ ଏବମ୍, ପରିହାସଃ ବା ? ଇତି ଉମାମ୍ ଅପୃଚ୍ଛତ୍ ।

ପଦ୍ୟାନୁବାଦ -

ପାର୍ବତୀଙ୍କ ମନ ଜାଣିବାରେ କ୍ଷମ
ସଖୀ ଉତ୍ତମ ଭାବରେ
ବୁଝାଇ କହିଲେ ତପସ୍ୟା କାରଣ
ସୌମ୍ୟ ସାଧୁଙ୍କୁ ଅଚିରେ ।
ଏହା ଶୁଣି କରି ସେହି ବ୍ରହ୍ମଚାରୀ
ମୁଖେ ନ ସୂଚାଇ ହର୍ଷ
ପାର୍ବତୀଙ୍କୁ ପ୍ରଶ୍ନ କଲେ 'ଏହି କଥା'
ସତ୍ୟ ଅବା ପରିହାସ ॥ ୬୨ ॥

## ଶ୍ଲୋକ- ୬୩

ଅଥାଗ୍ରହସ୍ତେ ମୁକୁଳୀକୃତାଙ୍ଗୁଳୌ
ସମର୍ପୟନ୍ତୀ ସ୍ଫଟିକାକ୍ଷମାଳିକାମ୍ ।
କଥଞ୍ଚିଦଦ୍ରେସ୍ତନୟା ମିତାକ୍ଷରଂ
ଚିରବ୍ୟବସ୍ଥାପିତବାଗଭାଷତ ॥ ୬୩ ॥

ଅନ୍ୱୟ - ଅଥ ମୁକୁଳୀକୃତାଙ୍ଗୁଳୌ ଅଗ୍ରହସ୍ତେ ସ୍ଫଟିକାକ୍ଷ-ମାଳିକାମ୍ ସମର୍ପୟନ୍ତୀ ଚିରବ୍ୟବସ୍ଥାପିତବାକ୍‌ଅଦ୍ରେଃ ତନୟା ମିତାଽକ୍ଷରଂ କଥଞ୍ଚିତ୍ ଅଭାଷତ ।

ପଦ୍ୟାନୁବାଦ -

ସଂକୁଚିତ କରି ହସ୍ତର ଅଙ୍ଗୁଳି
ମୁକୁଳ ପ୍ରାୟ ପାର୍ବତୀ
ସ୍ଫଟିକର ଅକ୍ଷ- ମାଳା ହସ୍ତ ଅଗ୍ରେ
ଧରି ହିମାଦ୍ରିଙ୍କ ପୁତ୍ରୀ ।
ନିରବରେ କିଛି କ୍ଷଣ ସାଧୁଙ୍କର
ବଚନ ବିଚାର କରି
କୌଣସି ପ୍ରକାରେ ଅତି ସଂକ୍ଷେପରେ
ବିନମ୍ରେ ଭାଷିଲେ ଗୌରୀ ॥ ୬୩ ॥

### ଶ୍ଳୋକ- ୬୪

ଯଥା ଶ୍ରୁତଂ ବେଦବିଦାଂ ବର ତ୍ୱୟା
ଜନୋଽୟମୁଚ୍ଚୈଃ ପଦଲଙ୍ଘନୋତ୍ସୁକଃ ।
ତପଃ କିଲେଦଂ ତଦବାପ୍ତିସାଧନଂ
ମନୋରଥାନାମଗତିର୍ନ ବିଦ୍ୟତେ ॥ ୬୪ ॥

ଅନ୍ୱୟ - ହେ ବେଦବିଦାଂ ବର ! ତ୍ୱୟା ଯଥା ଶ୍ରୁତଂ, ଅୟଂ ଜନଃ ଉଚ୍ଚୈଃପଦଲଙ୍ଘନୋତ୍ସୁକଃ ଅସ୍ତି । ଇଦଂ ତପଃ ତଦବାପ୍ତିସାଧନଂ କିଲ, ମନୋରଥାନାମ୍ ଅଗତିଃ ନ ବିଦ୍ୟତେ ।

ପଦ୍ୟାନୁବାଦ -

ଆହେ ବେଦଜ୍ଞାନୀ ଏହି ତପସ୍ୱିନୀ
ରଖି ଫଳ ପ୍ରାପ୍ତି ଆଶା
ହୋଇ ବ୍ୟଗ୍ରମନା କରନ୍ତି ସାଧନା
ଏତେ କଠିନ ତପସ୍ୟା ।

ତପ ଆଚରଣ ଏକ ହିଁ ସାଧନ
ସେ ଆଶା ପୂରଣ ପାଇଁ
କାରଣ ମଣିଷ ଆଶାର କୌଣସି
ସୀମା ସରହଦ ନାହିଁ ॥ ୬୪ ॥

### ଶ୍ଳୋକ- ୬୫

ଅଥାହ ବର୍ଣ୍ଣୀ ବିଦିତୋ ମହେଶ୍ୱରଃ
ତଦର୍ଥିନୀ ତ୍ୱଂ ପୁନରେବ ବର୍ତ୍ତସେ ।
ଅମଙ୍ଗଳାଭ୍ୟାସରତିଂ ବିଚିନ୍ତ୍ୟ ତଂ
ତବାନୁବୃତ୍ତିଂ ନ ଚ କର୍ତ୍ତୁମୁତ୍ସହେ ॥ ୬୫ ॥

ଅନ୍ୱୟ - ଅଥ ବର୍ଣ୍ଣୀ ଆହ, ମହେଶ୍ୱରଃ ମମ ବିଦିତଃ ତ୍ୱଂ ପୁନଃ ତଦର୍ଥିନୀ ଏବ ବର୍ତ୍ତସେ । ଅମଙ୍ଗଳାଭ୍ୟାସରତିଂ ତଂ ବିଚିନ୍ତ୍ୟ ତବ ଅନୁବୃତ୍ତିଂ କର୍ତ୍ତୁଂ ନ ଉତ୍ସହେ ।

ପଦ୍ୟାନୁବାଦ -

ଶୁଣି ଏହି ବାଣୀ ସେହି ବ୍ରହ୍ମଜ୍ଞାନୀ
କହିଲେ ହେ ତପସ୍ୱିନୀ
ଜାଣେ ମୁଁ ଶିବକୁ ଯା'ଙ୍କୁ ପାଇବାକୁ
ହୋଇଛ ତୁମ୍ଭେ ପ୍ରାର୍ଥିନୀ ।
ଅମଙ୍ଗଳ କାର୍ଯ୍ୟ ମାନଙ୍କରେ ସିଏ
ହୋଇଥିବାରୁ ଆସକ୍ତ
ତୁମ୍ଭ ଇଚ୍ଛା ଅନୁ- ମୋଦନ ପାଇଁକି
ହେଉନି ମୁଁ ଉତ୍ସାହିତ ॥ ୬୫ ॥

### ଶ୍ଳୋକ- ୬୬

ଅବସ୍ତୁନିର୍ବନ୍ଧପରେ କଥଂ ନୁ ତେ
କରୋଽୟମାମୁକ୍ତ-ବିବାହକୌତୁକଃ ।
କରେଣ ଶମ୍ଭୋର୍ବଳୟୀକୃତାହିନା
ସହିଷ୍ୟତେ ତତ୍ ପ୍ରଥମାବଲମ୍ବନମ୍ ॥ ୬୬ ॥

ଅନ୍ୱୟ - ହେ ଅବସ୍ଥୁନିର୍ବନ୍ଧପରେ, ଆମୁକ୍ତବିବାହକୌତୁକଃ ତେ ଅୟଂକରଃ
ବଳୟୀକୃତାହିନା ଶମ୍ଭୋଃ କରେଣ ତତ୍ ପ୍ରଥମାବଲମ୍ବନଂ କଥଂ ନୁ ସହିଷ୍ୟତେ ?

ପଦ୍ୟାନୁବାଦ -

ବିବାହ କାଳରେ ତୁମ୍ଭ ହାତେ ବନ୍ଧା
ହୋଇଥିବା ଶୁଭସୂତ୍ର
ଭୁଜଙ୍ଗ ବେଷ୍ଟିତ ଶିବଙ୍କର ହସ୍ତ
ଧରିବ ତୁମ୍ଭର ହସ୍ତ ।
ସହିକି ପାରିବ ସର୍ପଯୁକ୍ତ ସେହି
ହସ୍ତ ହେ ତୁମ୍ଭେ ପାର୍ବତୀ
ପ୍ରଣୟ ନିମିତ୍ତ ଏକ ଅପଦାର୍ଥ
ଠାରେ ବଳାଇଛ ମତି ॥ ୬୬ ॥

### ଶ୍ଳୋକ- ୬୭

ତ୍ୱମେବ ତାବତ୍ପରିଚିନ୍ତୟ ସ୍ୱୟଂ
କଦାଚିଦେତେ ଯଦି ଯୋଗମର୍ହତଃ ।
ବଧୂଦୁକୂଳଂ କଳହଂସଲକ୍ଷଣଂ
ଗଜାଜିନଂ ଶୋଣିତବିନ୍ଦୁବର୍ଷି ଚ ॥ ୬୭ ॥

ଅନ୍ୱୟ- ହେ ଗୌରୀ ! ତ୍ୱମେବ ସ୍ୱୟଂ ତାବତ୍ ପରିଚିନ୍ତୟ, କଳହଂସଲକ୍ଷଣଂ ବଧୂଦୁକୂଳଂ ତଥା ଶୋଣିତବିନ୍ଦୁ-ବର୍ଷି ଗଜାଜିନଂ ଚ ଏତେ କଦାଚିତ୍ ଯୋଗମ୍ ଅର୍ହତଃ ଯଦି ।

ପଦ୍ୟାନୁବାଦ -

ନବ ବଧୂ ସାଜି ରାଜହଂସୀ ଶାଢି
ପିନ୍ଧିଥିବ ତୁମ୍ଭେ ଗୌରୀ
ଶିବଙ୍କର ବସ୍ତ୍ର ସଦ୍ୟ ହସ୍ତୀ ଚର୍ମୁ
ରକ୍ତ ପଡୁଥିବ ଝରି ।

ଚିନ୍ତାକର ଗୌରୀ ଦୁହିଁଙ୍କ ସଂଯୋଗ
କେବେକି ହେବ ସମ୍ଭବ
ସଦ୍ୟ ଗଜ ଚର୍ମ ସହ ପଟ୍ଟବସ୍ତ୍ର
କିପରି ଶୋଭା ପାଇବ ? ॥ ୬୭ ॥

### ଶ୍ଳୋକ- ୬୮

ଚତୁଷ୍କପୁଷ୍ପପ୍ରକରାଽବକୀର୍ଣ୍ଣୟୋଃ
ପରୋଽପି କୋ ନାମ ତବାନୁମନ୍ୟତେ ।
ଅଲକ୍ତକାଙ୍କାନି ପଦାନି ପାଦୟୋଃ
ବିକୀର୍ଣ୍ଣକେଶାସୁ ପରେତଭୂମିଷୁ ॥ ୬୮ ॥

ଅନ୍ୱୟ - ଚତୁଷ୍କପୁଷ୍ପପ୍ରକରାଽବକୀର୍ଣ୍ଣୟୋଃ ତବ ପାଦୟୋଃ ଅଲକ୍ତକାଙ୍କାନି ପଦାନି ବିକୀର୍ଣ୍ଣକେଶାସୁ ପରେତଭୂମିଷୁ ପରୋଽପି କୋ ନାମ ଅନୁମନ୍ୟତେ ।

ପଦ୍ୟାନୁବାଦ -

ଦିବ୍ୟ ଯେ ଭବନ ସୁରମ୍ୟ ଚଟାଣ
ଥିଲା ପୁଷ୍ପ ଆଚ୍ଛାଦିତ
ହେ ପାର୍ବତୀ ! ତୁମ୍ଭ ଏହି ପାଦଯୁଗ୍ମ
ହେଉଥିଲା ଆତଯାତ ।
ଅଲକ୍ତ ରଞ୍ଜିତ ସେ ପାଦ ଦ୍ୱୟର
ଘରୁ ପାଦଚିହ୍ନମାନ
ଶବକେଶ ପୂର୍ଣ୍ଣ ଶ୍ମଶାନେ ପଡିବ
ଶତ୍ରୁ ବି ଘେନିବ ନାହିଁ ଜାଣ ॥ ୬୮ ॥

### ଶ୍ଳୋକ- ୬୯

ଅଯୁକ୍ତରୂପଂ କିମତଃ ପରଂ ବଦ
ତ୍ରିନେତ୍ର-ବକ୍ଷଃ ସୁଲଭଂ ତବାପି ଯତ୍ ।
ସ୍ତନଦ୍ୱୟେଽସ୍ମିନ୍ ହରିଚନ୍ଦନାସ୍ପଦେ
ପଦଂ ଚିତାଭସ୍ମରଜଃ କରିଷ୍ୟତି ॥ ୬୯ ॥

ଅନ୍ୱୟ - ତ୍ରିନେତ୍ର-ବକ୍ଷଃ ତବ ସୁଲଭମ୍ ଅପି, ଅତଃ ପରମ୍ ଅଯୁକ୍ତରୂପଂ କିଂ ? ବଦ।
ଯତ୍ ହରିଚନ୍ଦନାଙ୍କଦେ ଅସ୍ମିନ୍ ସ୍ତନ ଦ୍ୱୟେ ଚିତାଭସ୍ମରଜଃ ପଦଂ କରିଷ୍ୟତି।

ପଦ୍ୟାନୁବାଦ -

ଶୁଣ ହେ ପାର୍ବତୀ! ଯଦି ହୁଏ ପ୍ରାପ୍ତି
ତୁମ୍ଭଙ୍କୁ ଶିବଙ୍କ ବକ୍ଷ
ଏହା ଯୁକ୍ତିଯୁକ୍ତ ବୋଲି କହିବାକୁ
ଅଛି କି କାହାର ସକ୍ଷ ?
ହରିଚନ୍ଦନରେ ଚର୍ଚ୍ଚିତ ତୁମ୍ଭର
ଏହି ବକ୍ଷୋଜ ଉପରେ
ଶିବ-ବକ୍ଷ ଚିତା- ଭସ୍ମ ସ୍ଥାନ ନେବ
ନାହିଁ ସନ୍ଦେହ ଏଥିରେ ॥ ୬୯ ॥

### ଶ୍ଳୋକ- ୭୦

ଇୟଂ ଚ ତେଽନ୍ୟା ପୁରତୋ ବିଡମ୍ବନା
ଯଦୂଢୟା ବାରଣରାଜହାର୍ଯ୍ୟୟା।
ବିଲୋକ୍ୟ ବୃଦ୍ଧୋକ୍ଷମଧିଷ୍ଠିତଂ ତ୍ୱୟା
ମହାଜନଃ ସ୍ମେରମୁଖୋ ଭବିଷ୍ୟତି ॥ ୭୦ ॥

ଅନ୍ୱୟ - ଇୟଂ ଚ ତେ ପୁରତଃ ଅନ୍ୟା ବିଡମ୍ବନା ଅସ୍ତି। ଯତ୍ ଊଢୟା ବାରଣରାଜହାର୍ଯ୍ୟୟା
ତ୍ୱୟା ବୃଦ୍ଧୋକ୍ଷଂ ଅଧିଷ୍ଠିତଂ ବିଲୋକ୍ୟ ମହାଜନଃ ସ୍ମେରମୁଖଃ ଭବିଷ୍ୟତି।

ପଦ୍ୟାନୁବାଦ -

ଶୁଣ ହେ ପାର୍ବତୀ! ଚଢ଼ି ଶ୍ରେଷ୍ଠ ହସ୍ତୀ
ଯାଉଥିଲ ଆନନ୍ଦରେ
ପରିଣୟ ପରେ ଶିବଙ୍କ ସଙ୍ଗରେ
ଯିବ ବୃଦ୍ଧ ଶଣ୍ଢ ପରେ।

ଜ୍ଞାନୀଜନେ ସର୍ବେ ଅବଶ୍ୟ ହସିବେ
ଦେଖି ଏ ଅପୂର୍ବ ଦୃଶ୍ୟ
ଏହାଠାରୁ କିଛି ବଡ ଅବା ଅଛି
ତୁମ୍ଭ ପାଇଁ ଉପହାସ ? ॥ ୭୦ ॥

### ଶ୍ଳୋକ- ୭୧

ଦ୍ୱୟଂ ଗତଂ ସମ୍ପ୍ରତି ଶୋଚନୀୟତାଂ
ସମାଗମପ୍ରାର୍ଥନୟା ପିନାକିନଃ ।
କଳା ଚ ସା କାନ୍ତିମତୀ କଳାବତଃ
ତ୍ୱମସ୍ୟ ଲୋକସ୍ୟ ଚ ନେତ୍ରକୌମୁଦୀ ॥ ୭୧ ॥

ଅନ୍ୱୟ - ପିନାକିନଃ ସମାଗମପ୍ରାର୍ଥନୟା ସମ୍ପ୍ରତି ଦ୍ୱୟଂ ଶୋଚନୀୟତାଂ ଗତଂ; ସା କଳାବତଃ କାନ୍ତିମତୀ କଳା, ଅସ୍ୟ ଲୋକସ୍ୟ ନେତ୍ରକୌମୁଦୀ ତ୍ୱଂ ଚ ।

ପଦ୍ୟାନୁବାଦ -

ମହେଶଙ୍କ ପ୍ରାପ୍ତି ପାଇଁ ଦୁଇ ପ୍ରାର୍ଥୀ
ଅବସ୍ଥା ତାଙ୍କର ମନ୍ଦ
ତନ୍ମଧ୍ୟରୁ ଏକ ଶିବଙ୍କ ମସ୍ତକ
ପରେ ସ୍ଥିତ ଶିଶୁଚନ୍ଦ୍ର ।
ଅନ୍ୟଟି ସଂସାର ନେତ୍ର ତୃପ୍ତିକର
ଚନ୍ଦ୍ର ଜୋଛନା ସମାନ
ସେ କେହି ନୁହଁନ୍ତି ତୁମ୍ଭେ ହିଁ ପାର୍ବତୀ
ଏହା ମୋହର ବଚନ ॥ ୭୧ ॥

### ଶ୍ଳୋକ- ୭୨

ବପୁର୍ବିରୂପାକ୍ଷମଲକ୍ଷ୍ୟଜନ୍ମତା
ଦିଗମ୍ବରତ୍ୱେନ ନିବେଦିତଂ ବସୁ ।
ବରେଷୁ ଯଦ୍ବାଳମୃଗାକ୍ଷି ! ମୃଗ୍ୟତେ
ତଦସ୍ତି କିଂ ବ୍ୟସ୍ତମପି ତ୍ରିଲୋଚନେ ॥ ୭୨ ॥

ଅନ୍ୱୟ - ବପୁଃ ବିରୂପାକ୍ଷମ୍, ଅଲକ୍ଷ୍ୟଜନ୍ମତା, ବସୁ ଦିଗମ୍ବରତ୍ୱେନ ନିବେଦିତମ୍।
ହେ ବାଳମୃଗାକ୍ଷି ! ବରେଷୁ ଯତ୍ ମୃଗ୍ୟତେ, ତତ୍ ତ୍ରିଲୋଚନେ ବ୍ୟସ୍ତମ୍ ଅପି ଅସ୍ତିକିମ୍।

ପଦ୍ୟାନୁବାଦ -

ବିରୂପ ନୟନ ହେତୁ ତ୍ରିଲୋଚନ
ଦେଖିବାକୁ ଅସୁନ୍ଦର
ଜଣାନାହିଁ ଜନ୍ମ କୁଳ ପରିବାର
ବସ୍ତ୍ରହୀନ ଦିଗମ୍ବର।
ପାଶେ ନାହିଁ ଧନ ହୁଏ ଅନୁମାନ
ନ ଥିବାରୁ ଅଙ୍ଗବାସ
ବରଠାରେ ଯେଉଁ ଗୁଣ ଖୋଜାଯାଏ
ଅଛି କି ତାଙ୍କରି ପାଶ ? ॥ ୭୨ ॥

## ଶ୍ଳୋକ- ୭୩

ନିବର୍ତ୍ତୟାସ୍ମାଦସଦୀପ୍ସିତାନ୍ମନଃ
କ୍ୱ ତଦ୍ୱିଧସ୍ତ୍ୱଂ କ୍ୱ ଚ ପୁଣ୍ୟଲକ୍ଷଣା।
ଅପେକ୍ଷ୍ୟତେ ସାଧୁଜନେନ ବୈଦିକୀ
ଶ୍ମଶାନଶୂଳସ୍ୟ ନ ଯୂପସତ୍କ୍ରିୟା ॥ ୭୩ ॥

ଅନ୍ୱୟ - ଅସ୍ମାତ୍ ଅସଦୀପ୍ସିତାତ୍ ମନଃ ନିବର୍ତ୍ତୟ। ତଦ୍ୱିଧଃ (ଜନଃ) କ୍ୱ ? ପୁଣ୍ୟଲକ୍ଷଣା ତ୍ୱଂ ଚ କ୍ୱ ?
ସାଧୁଜନେନ ଶ୍ମଶାନଶୂଳସ୍ୟ ବୈଦିକୀ ଯୂପସତ୍କ୍ରିୟା ନ ଅପେକ୍ଷ୍ୟତେ।

ପଦ୍ୟାନୁବାଦ -

ଏଣୁ ହେ ପାର୍ବତୀ ! ତୁମ୍ଭେ ଶିବ ପ୍ରାପ୍ତି
ଭଳି ଅଶୁଭ କାମନା
ଦୂର କର ନିଜ ମନରୁ ହିଁ ଆଜ
ମାନ ମୋର ଏହି ମନା।

କାହିଁ ତୁମ୍ଭେ ଶୁଭ ଲକ୍ଷଣ ସମ୍ପନ୍ନା
କାହିଁ ସେ ଅଶୁଭ ଶିବ ।
ଯଜ୍ଞସ୍ତମ୍ଭ ପାଇଁ ସଜ୍ଜନ କି ଖୋଜେ
ଶ୍ମଶାନର ଶୂଳ ସ୍ତମ୍ଭ ? ॥ ୭୩ ॥

## ଶ୍ଳୋକ- ୭୪

ଇତି ଦ୍ୱିଜିତୌ ପ୍ରତିକୂଳବାଦିନୀ
ପ୍ରବେପମାନାଧରଲକ୍ଷ୍ୟକୋପୟା ।
ବିକୁଞ୍ଚିତଭ୍ରୂଲତମାହିତେ ତୟା
ବିଲୋଚନେ ତିର୍ଯ୍ୟଗୁପାନ୍ତଲୋହିତେ ॥ ୭୪ ॥

ଅନ୍ୱୟ - ଇତି ଦ୍ୱିଜାତୌ ପ୍ରତିକୂଳବାଦିନୀ (ସତି), ପ୍ରବେପମାନାଧରଲକ୍ଷ୍ୟକୋପୟା ତୟା ଉପାନ୍ତର୍ଲୋହିତେ ବିଲୋଚନେ ବିକୁଞ୍ଚିତଭ୍ରୂଲତଂ (ଯଥା ତଥା) ତୀର୍ଯ୍ୟକ୍ ଆହିତେ ।

ପଦ୍ୟାନୁବାଦ -

ବିରୁଦ୍ଧ ବଚନ କହନ୍ତେ ବ୍ରାହ୍ମଣ
ପାର୍ବତୀଙ୍କର ଅଧର
ହେଲା ପ୍ରକମ୍ପିତ ରକ୍ତିମ ନେତ୍ରାନ୍ତ
ରାଗେ ହେଲ୍ଲା ଜରଜର ।
ଭ୍ରୂଲତା କୁଞ୍ଚନ ତୀର୍ଯ୍ୟକ ଲୋଚନ
କରି ଉମା ତପସ୍ୱିନୀ
ଦ୍ୱିଜଙ୍କ ଉପରେ ନିବଦ୍ଧ କରିଲେ
କ୍ରୋଧପୂର୍ଣ୍ଣ ସେ ଚାହାଣି ॥ ୭୪ ॥

## ଶ୍ଳୋକ- ୭୫

ଉବାଚଚୈନଂ ପରମାର୍ଥତୋ ହରଂ
ନ ବେତ୍ସି ନୂନଂ ଯତ ଏବମାତ୍ଥ ମାମ୍ ।
ଅଲୋକସାମାନ୍ୟମଚିନ୍ତ୍ୟହେତୁକଂ
ଦ୍ୱିଷନ୍ତି ମନ୍ଦାଶ୍ଚରିତଂ ମହାତ୍ମନମ୍ ॥ ୭୫ ॥

ଅନ୍ୱୟ - (ପାର୍ବତୀ) ଏନମ୍ ଉବାଚ ଚ। ତ୍ୱଂ ପରମାର୍ଥତଃ ହରଂ ନ ବେତ୍ସି ନୂନଂ। ଅତଃ ମାମ୍ ଏନମ୍ ଆତ୍ଥ। ମନ୍ଦାଃ ଅଲୋକସାମାନ୍ୟମ୍ ଅଚିନ୍ତ୍ୟହେତୁକଂ ମହାତ୍ମାନାଂ ଚରିତଂ ଦ୍ୱିଷନ୍ତି।

ପଦ୍ୟାନୁବାଦ -

ଆହେ ବ୍ରହ୍ମଚାରୀ ନୁହେଁ ଭଲକରି
ଜଣା ଶିବଙ୍କର କଥା
ତେଣୁ ତୁମ୍ଭେ ମୋତେ କହିଛ ଏମନ୍ତେ
ନାହିଁ ସେଥିରେ ସତ୍ୟତା।
ସାଧୁଙ୍କ ଚରିତ ସହ ପରିଚିତ
ନଥାଇ ନିନ୍ଦୁକ ଜନେ
ସେହି ମହାତ୍ମାଙ୍କ ମାହାତ୍ମ୍ୟ ନଜାଣି
ନିନ୍ଦିଥାନ୍ତି ଅକାରଣେ ॥ ୭୫ ॥

## ଶ୍ଲୋକ- ୭୬

ବିପତ୍ପ୍ରତୀକାରପରେଣ ମଙ୍ଗଳଂ
ନିଷେବ୍ୟତେ ଭୂତିସମୁତ୍ସୁକେନ ବା
ଜଗଚ୍ଛରଣ୍ୟସ୍ୟ ନିରାଶିଷଃ ସତଃ
କିମେଭିରାଶୋପହତାତ୍ମବୃତ୍ତିଭିଃ ॥ ୭୬ ॥

ଅନ୍ୱୟ - ବିପତ୍ପ୍ରତୀକାରପରେଣ ଭୂତିସମୁତ୍ସୁକେନ ବା ମଙ୍ଗଳଂ ନିଷେବ୍ୟତେ। ଜଗଚ୍ଛରଣ୍ୟସ୍ୟ ନିରାଶିଷଃ ସତଃ ଆଶୋପହତାତ୍ମବୃତ୍ତିଭିଃ ଏଭିଃ କିମ୍ (ପ୍ରୟୋଜନମ୍)

ପଦ୍ୟାନୁବାଦ -

ବିପତ୍ତିରୁ ମୁକ୍ତି ସମ୍ପଦର ପ୍ରାପ୍ତି
ପାଇଁ ଏ ସଂସାରେ ଜନେ
ନାନା ପ୍ରକାରର ମଙ୍ଗଳ ବିଧାନ
କରିଥାଆନ୍ତି ଯତନେ।

କିନ୍ତୁ ତ୍ରିଲୋଚନ ସଂସାର ଶରଣ୍ୟ
ସମସ୍ତ କାମନା ଶୂନ୍ୟ
ଅନ୍ତର୍ବାସନାରେ ଦୂଷିତ ବସ୍ତୁରେ
କି ବା ତାଙ୍କ ପ୍ରୟୋଜନ ? ॥ ୭୬ ॥

### ଶ୍ଳୋକ- ୭୭

ଅକିଞ୍ଚନ ସନ୍ ପ୍ରଭବଃ ସ ସମ୍ପଦାମ୍
ତ୍ରିଲୋକନାଥଃ ପିତୃସଦ୍ମଗୋଚରଃ ।
ସ ଭୀମରୂପଃ ଶିବ ଇତ୍ୟୁଦୀର୍ଯ୍ୟତେ
ନ ସନ୍ତି ଯଥାର୍ଥ୍ୟବିଦଃ ପିନାକିନଃ ॥ ୭୭ ॥

ଅନ୍ୱୟ - ସଃ ଅକିଞ୍ଚନଃ ସନ୍ ସ ସମ୍ପଦାଂ ପ୍ରଭବଃ, ପିତୃସଦ୍ମଗୋଚରଃ ସନ୍ ତ୍ରିଲୋକନାଥଃ, ଭୀମରୂପଃ ସନ୍ ଶିବଃ ଇତି ଉଦୀର୍ଯ୍ୟତେ । ଅତଃ ପିନାକିନଃ ଯଥାର୍ଥ୍ୟବିଦଃ ନ ସନ୍ତି ।

ପଦ୍ୟାନୁବାଦ -

ନିଜେ ସେ ଗରିବ ହେଲେ ମଧ ସର୍ବ
ସମ୍ପତ୍ତିର ସୃଷ୍ଟିକର୍ତ୍ତା
ଶ୍ମଶାନ ଭୂମିରେ ବାସକଲେ ମଧ
ତିନି ଲୋକର ସେ କର୍ତ୍ତା ।
ରୂପ ଭୟଙ୍କର ହେଲେ ବି ତାଙ୍କର
'ଶିବ' ନାମେ ସମ୍ବୋଧିତ
ବାସ୍ତବରେ ତାଙ୍କ ପ୍ରକୃତ ସ୍ୱରୂପ
ସଂସାରେ ନୁହେଁ କେ ଜ୍ଞାତ ॥ ୭୭ ॥

### ଶ୍ଳୋକ- ୭୮

ବିଭୂଷଣୋଦ୍ଭାସି ପିନଦ୍ଧଭୋଗି ବା
ଗଜାଜିନାଲମ୍ବି ଦୁକୂଳଧାରି ବା ।
କପାଳି ବା ସ୍ୟାଦଥବେନ୍ଦୁଶେଖରଂ
ନ ବିଶ୍ୱମୂର୍ତ୍ତେରବଧାର୍ଯ୍ୟତେ ବପୁଃ ॥ ୭୮ ॥

ଅନ୍ୱୟ - ବିଶ୍ୱମୂର୍ତ୍ତେଃ ବପୁଃ ବିଭୂଷଣୋଦ୍ଭାସି ପିନଦ୍ଧଭୋଗି ବା ଗଜାଜିନାଲମ୍ବି ବା ଦୁକୂଳଧାରି ବା କପାଳି ଅଥବା ଇନ୍ଦୁଶେଖରଂ ସ୍ୟାତ୍, ଇତି କ ଅବଧାର୍ଯ୍ୟତେ।

ପଦ୍ୟାନୁବାଦ -

ଶିବଙ୍କର ରୂପ ବିଶ୍ୱମୂର୍ତ୍ତି ରୂପ
ସବୁ ରୂପ ସେ ରୂପରେ
ରହିଅଛି ତାର କଳ୍ପନା କରିବା
ନାହିଁ କା'ର ଆୟତ୍ତରେ।
ହୋଇପାରନ୍ତି ସେ ଆଭୂଷଣଧାରୀ
ଅବା ସର୍ପବଳୟିତ
ହୋଇପାରନ୍ତି ସେ ଗଜଚର୍ମଧାରୀ
ଅବା ଦୁକୂଳେ ଭୂଷିତ।
ହୋଇପାରନ୍ତି ସେ ନରମୁଣ୍ଡମାଳୀ
ମସ୍ତକେ ଚନ୍ଦ୍ରଶୋଭିତ
ଏପରି ତାଙ୍କର ବିଭିନ୍ନ ରୂପର
କଳ୍ପନା ନୁହେଁ ଯଥାର୍ଥ ॥ ୭୮ ॥

### ଶ୍ଳୋକ- ୭୯

ତଦଙ୍ଗସଂସର୍ଗମବାପ୍ୟ କଳ୍ପତେ
ଧ୍ରୁବଂ ଚିତାଭସ୍ମରଜୋ ବିଶୁଦ୍ଧୟେ।
ତଥା ହି ନୃତ୍ୟାଽଭିନୟକ୍ରିୟାଚ୍ୟୁତଂ
ବିଲିପ୍ୟତେ ମୌଳିଭିରମ୍ବରୌକସାମ୍ ॥ ୭୯ ॥

ଅନ୍ୱୟ - ତଦଙ୍ଗସଂସର୍ଗମ୍ ଅବାପ୍ୟ ଚିତାଭସ୍ମରଜଃ ବିଶୁଦ୍ଧୟେ କଳ୍ପତେ ଧ୍ରୁବଂ ତଥା ହି, ନୃତ୍ୟାଽଭିନୟକ୍ରିୟାଚ୍ୟୁତଂ ତତ୍ ଅମ୍ବରୌକସାମ୍ ମୌଳିଭିଃ ବିଲିପ୍ୟତେ।

ପଦ୍ୟାନୁବାଦ -

ଶିବଙ୍କର ସ୍ପର୍ଶ ପାଇ ଚିତାଭସ୍ମ
ହୁଅଇ ଅତି ପାବନ
ଏହି କଥା ମନେ ବିଚାରି ଥାଆନ୍ତି
ସ୍ୱର୍ଗବାସୀ ଦେବଗଣ।
ତେଣୁ ଯେବେ ଶିବ କରନ୍ତି ତାଣ୍ଡବ
ଅଙ୍ଗୁ ତାଙ୍କ ଭସ୍ମରାଶି
ଝରିପଡେ ଯାହା ଶିରେ ବୋଲି ତାହା
ହୋଇଥାନ୍ତି ମନେ ଖୁସି ॥ ୭୯ ॥

### ଶ୍ଳୋକ- ୮୦

ଅସମ୍ପଦସ୍ତସ୍ୟ ବୃଷେଣ ଗଚ୍ଛତଃ
ପ୍ରଭିନ୍ନଦିଗ୍-ବାରଣବାହନୋ ବୃଷା।
କରୋତି ପାଦାବୁପଗମ୍ୟ ମୌଳିନା
ବିନିଦ୍ରମନ୍ଦାରରଜୋଽରୁଣାଙ୍ଗୁଳୀ ॥ ୮୦ ॥

ଅନ୍ୱୟ - ପ୍ରଭିନ୍ନଦିଗ୍-ବାରଣବାହନଃ ବୃଷାଃ ଅସମ୍ପଦଃ ବୃଷେଣ ଗଚ୍ଛତଃ ତସ୍ୟ ପାଦୌ ମୌଳିନା ଉପଗମ୍ୟ ବିନିଦ୍ରମନ୍ଦାରରଜୋଽରୁଣାଙ୍ଗୁଳୀ କରୋତି।

ପଦ୍ୟାନୁବାଦ -

ଉନ୍ମତ୍ତ ଦିଗ୍ଗଜ ଐରାବତାରୋହୀ
ଦେବତାଙ୍କ ରାଜା ଇନ୍ଦ୍ର
ନିଜ ମସ୍ତକରେ ସ୍ପର୍ଶ କରୁଥିଲେ
ବୃଷାରୋହୀ ଶିବ ପଦ।
ସେ ମସ୍ତକେ ସ୍ଥିତ ଲାଲ ପାରିଜାତ
ପୁଷ୍ପ ପରାଗକୁ ବୋଳି
ଅରୁଣିମା ରଙ୍ଗେ ରଙ୍ଗାଉଥିଲେ ସେ
ଶିବଙ୍କ ଚରଣାଙ୍ଗୁଳି ॥ ୮୦ ॥

### ଶ୍ଳୋକ- ୮୧

ବିବକ୍ଷତା ଦୋଷମପି ଚ୍ୟୁତାତ୍ମନା
ତ୍ୱୟୈକମୀଶଂ ପ୍ରତି ସାଧୁ ଭାଷିତମ୍ ।
ଯମାମନନ୍ତ୍ୟାତ୍ମଭୁବୋଽପି କାରଣଂ
କଥଂ ସ ଲକ୍ଷ୍ୟପ୍ରଭବୋ ଭବିଷ୍ୟତି ॥ ୮୧ ॥

ଅନ୍ୱୟ - ଚ୍ୟୁତାତ୍ମନା ଦୋଷଂ ବିବକ୍ଷତା ଅପି ତ୍ୱୟା ଈଶଂ ପ୍ରତି ଏକଂ ସାଧୁ ଭାଷିତମ୍ ଯମ୍ ଆତ୍ମଭୁବଃ ଅପି କାରଣମ୍ ଆମନନ୍ତି, ସଃ କଥଂ ଲକ୍ଷ୍ୟପ୍ରଭବଃ ଭବିଷ୍ୟତି ?

ପଦ୍ୟାନୁବାଦ -

ଆହେ ବ୍ରହ୍ମଚାରୀ ସ୍ୱଭାବ ତୁମ୍ଭରି
ହୋଇଯାଇଅଛି ନଷ୍ଟ
ତେଣୁ ଶିବ ନିନ୍ଦା ବେଳେ ଭଲ ଏକ
କଥା କହିଅଛ ସ୍ପଷ୍ଟ ।
ଯେଉଁ ଶିବ ସ୍ୱୟଂ ବ୍ରହ୍ମାଙ୍କ ସୃଷ୍ଟିର
ଅଟନ୍ତି ମୂଳ କାରଣ
କୁହତ କିପରି କେ ଅବା ତାଙ୍କରି
ଜାଣେ ଜନ୍ମ ବିବରଣ ? ॥ ୮୧ ॥

### ଶ୍ଳୋକ- ୮୨

ଅଳଂ ବିବାଦେନ ଯଥା ଶ୍ରୁତସ୍ତ୍ୱୟା
ତଥାବିଧସ୍ତାବଦଶେଷମସ୍ତୁ ସଃ
ମମାଽତ୍ର ଭାବୈକରସଂ ମନଃ ସ୍ଥିତଂ
ନ କାମବୃତ୍ତିର୍ବଚନୀୟମୀକ୍ଷତେ ॥ ୮୨ ॥

ଅନ୍ୱୟ - (ଅଥବା) ବିବାଦେନ ଅଳମ୍, ତ୍ୱୟା ଯଥାଶ୍ରୁତଃ, ସଃ ଅଶେଷଂ ତଥାବିଧଂ ଅସ୍ତୁ । ମମ ମନଃ ଅତ୍ର ଭାବୈକରସଂ ସ୍ଥିତଂ, କାମବୃତ୍ତି ବଚନୀୟଂ ନ ଈକ୍ଷତେ ।

ପଦ୍ୟାନୁବାଦ -

ବିବାଦରେ ଆଉ ନାହିଁ ପ୍ରୟୋଜନ
କହିଲେ ତହୁଁ ପାର୍ବତୀ
ଯାହା ବି ଶୁଣିଛ ତାଙ୍କ ବିଷୟରେ
ହୋଇଥାନ୍ତୁ ସେ ସେମିତି ।
ହେଲେ ମୋର ମନ ତାଙ୍କଠାରେ ପୂର୍ଣ୍ଣ-
ମାତ୍ରାରେ ପ୍ରଣୟାସିକ୍ତ
ସ୍ୱେଚ୍ଛାଚାରୀ କେବେ ଲୋକ ଅପବାଦେ
ହୁଏ ନାହିଁ ଭୟଭୀତ ॥ ୮୨ ॥

## ଶ୍ଲୋକ- ୮୩

ନିବାର୍ଯ୍ୟତାମାଳି କିମପ୍ୟୟଂ ବଟୁଃ
ପୁନର୍ବିବକ୍ଷୁଃ ସ୍ଫୁରିତୋତ୍ତରାଽଧରଃ ।
ନ କେବଳଂ ଯୋ ମହତୋଽପଭାଷତେ
ଶୃଣୋତି ତସ୍ମାଦପି ଯଃ ସ ପାପଭାକ୍ ॥ ୮୩ ॥

ଅନ୍ୱୟ - ହେ ଆଳି ! ସ୍ଫୁରିତୋତ୍ତରାଧରଃ ପୁନଃ କିମପି ବିବକ୍ଷୁଃ ଅୟଂ ବଟୁଃ ନିବାର୍ଯ୍ୟତାଂ; ତଥା ହି ଯଃ ମହତଃ ଅପଭାଷତେ ନ କେବଳଂ ସଃ ପାପଭାକ୍, ଅପି ତୁ ତସ୍ମାତ୍ ଯଃ ଶୃଣୋତି ସୋଽପି ପାପଭାକ୍ (ଭବତି) ।

ପଦ୍ୟାନୁବାଦ -

ସ୍ଫୁରିତ ଅଧର ଏହି ବିପ୍ରବର
ଆଉ କିଛି କହିବାକୁ
ଚାହୁଁଛନ୍ତି ତେଣୁ ସେଥିରୁ ନିବୃତ
କର ଆହେ ସଖୀ ତାଙ୍କୁ ।
ମହାତ୍ମା ମାନଙ୍କ ନିନ୍ଦା ଯେ କରନ୍ତି
କେବଳ ନୁହଁନ୍ତି ପାପୀ
ତାଙ୍କଠାରୁ ଯିଏ ଶୁଣନ୍ତି ସେ ନିନ୍ଦା
ହୋଇଥାନ୍ତି ମଧ୍ୟ ପାପୀ ॥ ୮୩ ॥

## ଶ୍ଲୋକ- ୮୪

ଇତୋ ଗମିଷ୍ୟାମ୍ୟଥବେତିବାଦିନୀ
ଚଚାଲ ବାଳା ସ୍ତନଭିନ୍ନବଲ୍କଳା ।
ସ୍ୱରୂପମାସ୍ଥାୟ ଚ ତାଂ କୃତସ୍ମିତଃ
ସମାଲଲମ୍ବେ ବୃଷରାଜ-କେତନଃ ॥ ୮୪ ॥

ଅନ୍ୱୟ - ଅଥବା ଇତଃ ଗମିଷ୍ୟାମି ଇତି ବାଦିନୀ ସ୍ତନଭିନ୍ନବଲ୍କଳା ବାଳା ଚଚାଲ ବୃଷରାଜ-କେତନଶ୍ଚ ସ୍ୱରୂପମ୍ ଆସ୍ଥାୟ କୃତସ୍ମିତଃ ତାଂ ସମାଲମ୍ବେ ।

ପଦ୍ୟାନୁବାଦ -

ନୋହିଲେ ଏ ସ୍ଥାନ କରିବି ବର୍ଜନ
କହି ଯିବାକୁ ଉଦ୍ୟତ
ହୁଅନ୍ତେ ପାର୍ବତୀ କରି ବେଗ ଗତି
ସ୍ତନୁ ଖସୁଥିଲା ବସ୍ତ୍ର ।
ବୃଷଧ୍ୱଜ ଶିବ ଏ ସମୟେ ନିଜ
ରୂପକୁ କରି ଧାରଣ
ପାର୍ବତୀଙ୍କୁ ଧରି ସ୍ମିତହାସ କରି
ଯିବାକୁ କଲେ ବାରଣ ॥ ୮୪ ॥

## ଶ୍ଲୋକ- ୮୫

ତଂ ବୀକ୍ଷ୍ୟ ବେପଥୁମତୀ ସରସାଙ୍ଗଯଷ୍ଟି-
ର୍ନିକ୍ଷେପଣାୟ ପଦମୁଦ୍ଧୃତମୁଦ୍ୱହନ୍ତୀ ।
ମାର୍ଗାଚଳବ୍ୟତିକରାଃକୁଳିତେବ ସିନ୍ଧୁଃ
ଶୈଳାଧିରାଜତନୟା ନ ଯଯୌ ନ ତସ୍ଥୌ ॥ ୮୫ ॥

ଅନ୍ୱୟ - ତଂ ବୀକ୍ଷ୍ୟ ବେପଥୁମତୀ ସରସାଙ୍ଗଯଷ୍ଟିଃ ନିକ୍ଷେପଣାୟଉଦ୍ଧୃତଂ ପଦଂ ତଥୈବ ଉଦ୍-ବହନ୍ତୀ ଶୈଳାଧିରାଜତନୟା ମାର୍ଗାଚଳ- ବ୍ୟତିକରାଃକୁଳିତା ସିନ୍ଧୁଃ ଇବ ନ ଯଯୌ ନ ତସ୍ଥୌ ॥

ପଦ୍ୟାନୁବାଦ -

ଶିବଙ୍କୁ ହଠାତ୍ ଦେଖି ପ୍ରକମ୍ପିତ
ହେଲେ ଗିରିରାଜ ସୁତା
ଅଙ୍ଗ ସ୍ୱେଦସିକ୍ତ ହେଲା ତତ୍-କ୍ଷଣାତ
ହୋଇଲେ ସେ ରୋମାଞ୍ଚିତା ।
ନିକ୍ଷେପଣୋଦ୍ଧୃତ ଚରଣ ତଦ୍-ବତ୍
ରହିଗଲା ସ୍ଥିର ହୋଇ
ଯାଇ ପାରିଲେନି ରହି ପାରିଲେନି
ଅନ୍ୟ ଉପାୟ ନପାଇ ।
ପଥ ଅବରୋଧୀ ପର୍ବତକୁ ଲଙ୍ଘି
ପାରେନା ନଦୀ ଯେପରି
ସେପରି ସମ୍ମୁଖେ ଉଭା ମହେଶଙ୍କୁ
ଲଙ୍ଘି ପାରିଲେନି ଗୌରୀ ॥ ୮୫ ॥

### ଶ୍ଳୋକ- ୮୬

ଅଦ୍ୟ ପ୍ରଭୃତ୍ୟବନତାଙ୍ଗି ତବାସ୍ମି ଦାସଃ
କ୍ରୀତସ୍ତପୋଭିରିତି ବାଦିନି ଚନ୍ଦ୍ରମୌଳୌ ।
ଅହ୍ନାୟ ସା ନିୟମଜଂ କ୍ଲମମୁତ୍ସସର୍ଜ
କ୍ଲେଶଃ ଫଳେନ ହି ପୁନର୍ନବତାଂ ବିଧତ୍ତେ ॥ ୮୬ ॥

ଅନ୍ୱୟ - ହେ ଅବନତାଙ୍ଗି, 'ଅଦ୍ୟ ପ୍ରଭୃତି ତବ ତପୋଭିଃ କ୍ରୀତଃ ଦାସଃ ଅସ୍ମି' ଇତି ଚନ୍ଦ୍ରମୌଳୌ ବାଦିନି ସତି ସା ଅହ୍ନାୟ ନିୟମଜଂ କ୍ଲମମ୍ ଉତ୍ସସର୍ଜ । ହି, କ୍ଲେଶଃ ଫଳେନ ପୁନଃ ନବତାଂ ବିଧତ୍ତେ ।

ପଦ୍ୟାନୁବାଦ -

ଆଜିଠୁ ସୁନ୍ଦରୀ ହେଲି ମୁଁ ତୁମ୍ଭରି
ତପ ଦ୍ୱାରା କ୍ରୀତଦାସ
ଶିବଙ୍କର କଥା ଶୁଣି ଗିରିସୁତା
ତ୍ୟାଗକଲେ ତପକ୍ଳେଶ ।
କାରଣ ଅଭୀଷ୍ଟ ହୋଇଗଲେ ପୂର୍ଣ୍ଣ
କ୍ଳେଶ ହୋଇଥାଏ ଦୂର
ସେ ସ୍ଥାନରେ ନବ ଉଦ୍ଦୀପନା ଆଉ
ଉତ୍ସାହ ହୁଏ ସଂଚାର ॥ ୮୬ ॥

***

(ପଞ୍ଚମ ସର୍ଗଃ ଶେଷ)

# ଷଷ୍ଠ ସର୍ଗଃ

**ଶ୍ଲୋକ- ୧**

ଅଥ ବିଶ୍ୱାତ୍ମନେ ଗୌରୀ
ସନ୍ଦିଦେଶ ମିଥଃ ସଖୀମ୍।
ଦାତା ମେ ଭୂଭୃତାଂ ନାଥଃ
ପ୍ରମାଣୀକ୍ରିୟତାମିତି ॥ ୧ ॥

ଅନ୍ୱୟ - ଅଥ ଗୌରୀ ବିଶ୍ୱାତ୍ମନେ ମିଥଃ ସଖୀଂ 'ଭୂଭୃତାଂ ନାଥଃ ମେ ଦାତା ପ୍ରମାଣୀକ୍ରିୟତାମ୍' ଇତି ସନ୍ଦିଦେଶ।

ପଦ୍ୟାନୁବାଦ

ଏଥୁ ଅନନ୍ତରେ ଅତି ଏକାନ୍ତରେ
ସଖୀ ମୁଖେ ମହେଶଙ୍କୁ
କହିଲେ ପାର୍ବତୀ ପିତା ଏକା ଯୋଗ୍ୟ
ତାଙ୍କୁ ଦାନ କରିବାକୁ।
ଏଣୁ ପାର୍ବତୀଙ୍କୁ ପାଇବା ପାଇଁକି
ଯାଇ ହିମାଦ୍ରୀଙ୍କ ପାଶ
ପାର୍ବତୀଙ୍କ ହାତ ଦେବାପାଇଁ ତାଙ୍କୁ
କୁହନ୍ତୁ ପ୍ରଭୁ ମହେଶ ॥ ୧ ॥

## ଶ୍ଳୋକ- ୨

ତୟା ବ୍ୟାହୃତସନ୍ଦେଶା ସା
ବଭୌ ନିଭୃତା ପ୍ରିୟେ।
ଚୂତଯଷ୍ଟିରିବାଭ୍ୟାଶେ
ମଧୌ ପରଭୃତୋନ୍ମୁଖୀ ॥ ୨ ॥

ଅନ୍ୱୟ - ତୟା ବ୍ୟାହୃତସନ୍ଦେଶା ପ୍ରିୟେ ନିଭୃତା ସା, ମଧୌ ନିଭୃତା ପରଭୃତୋନ୍ମୁଖୀ ଚୂତଯଷ୍ଟିଃ ଇବ ଅଭ୍ୟାଶେ ବଭୌ।

ପଦ୍ୟାନୁବାଦ -

ସଖୀ ମାଧମରେ ଶଙ୍କରଙ୍କ ପାଶେ
ସନ୍ଦେଶ ପଠାଇ ଗୌରୀ
ତାଙ୍କରି ପ୍ରେମରେ ମଗନ ହୋଇଲେ
ଆମ୍ର ଶାଖା ଯେଉଁପରି।
ପ୍ରିୟ ମଧୁମାସ ପାଶେ ସ୍ୱ ସନ୍ଦେଶ
କୋକିଳ ଦ୍ୱାରା ପଠାଇ
ଆମ୍ରଶାଖା ଅତି ହରଷ ହୁଅଇ
ପ୍ରେମରେ ମଗନ ହୋଇ ॥ ୨ ॥

## ଶ୍ଳୋକ- ୩

ସ ତଥେତି ପ୍ରତିଜ୍ଞାୟ
ବିସୃଜ୍ୟ କଥମପ୍ୟୁମାମ୍।
ଋଷୀନ୍ଜ୍ୟୋତିର୍ମୟାନ୍ସପ୍ତ
ସସ୍ମାର ସ୍ମରଶାସନଃ ॥ ୩ ॥

ଅନ୍ୱୟ - ସ ସ୍ମରଶାସନଃ ତଥା ଇତି ପ୍ରତିଜ୍ଞାୟ, ଉମାଂ କଥମପି ବିସୃଜ୍ୟ, ଜ୍ୟୋତିର୍ମୟାନ୍ ସପ୍ତ ଋଷୀନ୍ ସସ୍ମାର।

ପଦ୍ୟାନୁବାଦ -

କରିବି ସେପରି ଏ ପ୍ରତିଜ୍ଞା କରି
ମହାଦେବ ତାହାପରେ
ପାର୍ବତୀଙ୍କୁ ବିଦା କଲେ ସେ ସ୍ଥାନରୁ
ଯେନତେନ ଉପାୟରେ ।
ସେ ସ୍ଥାନକୁ ଗୌରୀ ପରିତ୍ୟାଗ କରି
ଯିବା ପରେ ତ୍ରିଲୋଚନ
ପରମ ତେଜସ୍ୱୀ ସପତ ଋଷିଙ୍କୁ
କରିଲେ ତହିଁ ସ୍ମରଣ ॥ ୩ ॥

### ଶ୍ଳୋକ- ୪

ତେ ପ୍ରଭାମଣ୍ଡଳୈର୍ବ୍ୟୋମ
ଦ୍ୟୋତୟନ୍ତସ୍ତପୋଧନାଃ ।
ସାରୁନ୍ଧତୀକାଃ ସପଦି
ପ୍ରାଦୁରାସନ୍ପୁରଃ ପ୍ରଭୋଃ ॥ ୪ ॥

ଅନ୍ୱୟ - ତେ ତପୋଧନାଃ ପ୍ରଭାମଣ୍ଡଳୈଃ ବ୍ୟୋମ ଦ୍ୟୋତୟନ୍ତଃ ସାରୁନ୍ଧତୀକାଃ ସନ୍ତଃ ସପଦି ପ୍ରଭୋଃ ପୁରଃ ପ୍ରାଦୁରାସନ୍ ।

ପଦ୍ୟାନୁବାଦ -

ସେହି ସପ୍ତଋଷି ନିଜ ତେଜରାଶି
ଦ୍ୱାରା ଆକାଶ ପ୍ରକାଶି
ଶିବଙ୍କ ସମ୍ମୁଖେ ଅରୁନ୍ଧତି ସହ
ଉଭାହେଲେ ଶୀଘ୍ର ଆସି ॥ ୪ ॥

## ଶ୍ଲୋକ- ୫

ଆପ୍ଲୁତାସ୍ତୀରମନ୍ଦାର-
କୁସୁମୋକ୍ଷିରବୀଚିଷୁ ।
ବ୍ୟୋମଗଙ୍ଗାପ୍ରବାହେଷୁ
ଦିଙ୍-ନାଗମଦଗନ୍ଧିଷୁ ॥ ୫ ॥

ଅନ୍ୱୟ - ତୀରମନ୍ଦାରକୁସୁମୋକ୍ଷିରବୀଚିଷୁ ଦିଙ୍-ନାଗମଦଗନ୍ଧିଷୁ ବ୍ୟୋମଗଙ୍ଗାପ୍ରବାହେଷୁ ଆପ୍ଲୁତାଃ ତେ ପ୍ରାଦୁରାସନ୍ ଇତି ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

ସେହି ଋଷିଗଣ କରିଥିଲେ ସ୍ନାନ
ଆକାଶ ଗଙ୍ଗାର ଜଳେ
ଆକାଶ ଗଙ୍ଗାର ତୀରରେ ମନ୍ଦାର
ବୃକ୍ଷମାନ ରହିଥିଲେ ।
ବୃକ୍ଷୁ ଫୁଲ ଝଡି ଗଙ୍ଗାଜଳେ ପଡି
ହେଉଥିଲା ପ୍ରବାହିତ
ସେ ଜଳ ଦିଗ୍-ଗଜ ମାନଙ୍କର ମଦ
ଗନ୍ଧେ ଥିଲା ସୁଗନ୍ଧିତ ॥ ୫ ॥

## ଶ୍ଲୋକ -୬

ମୁକ୍ତାଯଜ୍ଞୋପବୀତାନି
ବିଭ୍ରତୋ ହୈମବଲ୍କଳା ।
ରତ୍ନାକ୍ଷସୂତ୍ରାଃ ପ୍ରବ୍ରଜ୍ୟାଂ
କଳ୍ପବୃକ୍ଷା ଇବାଶ୍ରିତାଃ ॥ ୬ ॥

ଅନ୍ୱୟ - ମୁକ୍ତାଯଜ୍ଞୋପବୀତାନି ବିଭ୍ରତଃ ହୈମବଲ୍କଳାଃ ରତ୍ନାକ୍ଷସୂତ୍ରାଃ ପ୍ରବ୍ରଜ୍ୟାଂ ଆଶ୍ରିତାଃ କଳ୍ପବୃକ୍ଷାଃ ଇବ ସ୍ଥିତାଃ ତେ ପ୍ରାଦୁରାସନ୍ ଇତି ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

ମୁକ୍ତାରେ ନିର୍ମିତ ଯଜ୍ଞ ଉପବୀତ
ସ୍କନ୍ଧେ ଥିଲା ସୁଶୋଭିତ
ସୁବର୍ଣ୍ଣ ଖଚିତ ବଲ୍କଳର ବସ୍ତ୍ର
ହୋଇଥିଲେ ପରିହିତ ।
ରତ୍ନର ରୁଦ୍ରାକ୍ଷ- ମାଳ ଧରିଥିଲେ
ଋଷିମାନେ ନିଜ ହସ୍ତ
ଲାଗୁଥିଲେ ସତେ କଳ୍ପବୃକ୍ଷ ଅବା
ସନ୍ନ୍ୟାସୀ ରୂପେ ଭୂଷିତ ॥ ୬ ॥

## ଶ୍ଲୋକ- ୭

ଅଧଃ ପ୍ରସ୍ଥାପିତାଶ୍ୱେନ
ସମାବର୍ଜିତକେତୁନା ।
ସହସ୍ରରଶ୍ମିନା ସାକ୍ଷାତ-
ସପ୍ରଣାମମୁଦୀକ୍ଷିତାଃ ॥ ୭ ॥

ଅନ୍ୱୟ - ଅଧଃ ପ୍ରସ୍ଥାପିତାଶ୍ୱେନ ସମାବର୍ଜିତକେତୁନା ସହସ୍ରରଶ୍ମିନା ସାକ୍ଷାତ ସପ୍ରଣାମମ୍ ଉଦୀକ୍ଷିତାଃ ତେ ପ୍ରାଦୁରାସନ୍ ଇତି ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

ସହସ୍ର କିରଣ- ଧାରୀ ଅଂଶୁମାନ
ସପ୍ତର୍ଷି ମଣ୍ଡଳ ତଳେ
ରଥର ଅଶ୍ୱକୁ ଅଟକାଇଥାନ୍ତି
ନିଜର ଗମନ କାଳେ ।
ନମ୍ରତା ସହିତ ଧ୍ୱଜା ଅବନତ
କରି ନୟନ ଉଠାଇ
ସେ ମହାନ ଋଷି ମାନଙ୍କୁ ପ୍ରଣାମ
କରିଥାନ୍ତି ଊର୍ଦ୍ଧ୍ୱେ ଚାହିଁ ॥ ୭ ॥

### ଶ୍ଳୋକ- ୮

ଆସକ୍ତବାହୁଲତୟା
ସାର୍ଧମୁଦ୍ଧୃତୟା ଭୁବା ।
ମହାବରାହଦଂଷ୍ଟ୍ରାୟାଂ
ବିଶ୍ରାନ୍ତାଃ ପ୍ରଳୟପଦି ।। ୮ ।।

ଅନ୍ୱୟ - ପ୍ରଳୟପଦି ଆସକ୍ତବାହୁଲତୟା ଉଦ୍ଧୃତୟା ଭୁବା ସାର୍ଧଂ ମହାବରାହଦଂଷ୍ଟ୍ରାୟାଂ ବିଶ୍ରାନ୍ତାଃ ତେ ପ୍ରାଦୁରାସନ୍ ଇତି ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

ଏହି ରଷିଗଣ ପ୍ରଳୟକାଳୀନ
ବିପଦ ପଡିବା କାଳେ
ମହାବରାହଙ୍କ ଦନ୍ତୋପରିସ୍ଥିତ
ପୃଥିବୀକୁ ସେହିବେଳେ ।
ଧରିଥାନ୍ତି ନିଜ ନିଜ ବାହୁଦ୍ୱାରା
ବିପଦୁ ଉଦ୍ଧାର ପାଇଁ
ବିପଦ ନଯିବା ପର୍ଯ୍ୟନ୍ତ ସେମାନେ
ବିଶ୍ରାମ କରନ୍ତି ନାହିଁ ।। ୮ ।।

### ଶ୍ଳୋକ- ୯

ସର୍ଗଶେଷପ୍ରଣୟନାତ୍
ବିଶ୍ୱଯୋନେରନନ୍ତରମ୍ ।
ପୁରାତନାଃ ପୁରାବିଭିଃ
ଧାତାର ଇତି କୀର୍ତିତାଃ ।। ୯ ।।

ଅନ୍ୱୟ - ବିଶ୍ୱଯୋନେଃ ଅନନ୍ତରଂ ସର୍ଗଶେଷପ୍ରଣୟନାତ୍ ପୁରାବିଭିଃ ପୁରାତନାଃ ଧାତାର ଇତି କୀର୍ତିତାଃ ତେ ପ୍ରାଦୁରାସନ୍ ଇତି ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

ବିଶ୍ୱସ୍ରଷ୍ଟା ବ୍ରହ୍ମା ନିଜର ସର୍ଜନା
କଳାପରେ ଏ ସପ୍ତର୍ଷି ।
ରଚିଛନ୍ତି ଯେତେ ଶେଷ ସୃଷ୍ଟି ସବୁ
ଯତନରେ ବସି ବସି ।
ତେଣୁ ପୌରାଣିକ କଥା ଜାଣିଥିବା
ଲୋକମାନେ ଏମାନଙ୍କୁ
ପ୍ରାଚୀନ ବିଧାତା ଭାବେ ସମ୍ବୋଧନ
କରିଥାନ୍ତି ଡାକିବାକୁ ॥ ୯ ॥

**ଶ୍ଳୋକ- ୧୦**

ପ୍ରାକ୍ତନାନାଂ ବିଶୁଦ୍ଧାନାଂ
ପରିପାକମୁପେୟୁଷାମ୍ ।
ତପସାମୁପଭୁଞ୍ଜାନାଃ
ଫଳାନ୍ୟପି ତପସ୍ୱିନଃ ॥ ୧୦ ॥

ଅନ୍ୱୟ - ପ୍ରାକ୍ତନାନାଂ ବିଶୁଦ୍ଧାନାଂ ପରିପାକମ୍ ଉପେୟୁଷାମ୍ ତପସାଂ ଫଳାନି ଉପଭୁଞ୍ଜାନାଃ ଅପି ତପସ୍ୱିନଃ ତେ ପ୍ରାଦୁରାସନ୍ ଇତି ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

ଏ ସପ୍ତର୍ଷିଗଣ ପୂର୍ବଜନ୍ମ ପୁଣ୍ୟ
ଏବଂ ପୂର୍ବତପ ଫଳ
ଉପଭୋଗ ଭଲ ଭାବେ କରୁଛନ୍ତି
ଜୀବନ ତାଙ୍କ ସଫଳ ।
ତଥାପି ସେମାନେ ଏ ଜନ୍ମରେ ଛାଡ଼ି
ନାହାଁନ୍ତି ତପ କରମ
ଜୀବନ ଜିଇବା ସହ ଆଚରଣ
କରୁଛନ୍ତି ତପଧର୍ମ ॥ ୧୦ ॥

## ଶ୍ଲୋକ- ୧୧

ତେଷାଂ ମଧ୍ୟଗତା ସାଧ୍ୱୀ
ପତ୍ୟୁଃ ପାଦାର୍ପିତେକ୍ଷଣା ।
ସାକ୍ଷାଦିବ ତପଃସିଦ୍ଧିଃ
ବଭାସେ ବହ୍ୱରୁନ୍ଧତୀ ॥ ୧୧ ॥

ଅନ୍ୱୟ - ତେଷାଂ ମଧ୍ୟଗତା ସାଧ୍ୱୀ ପତ୍ୟୁଃ ପାଦାର୍ପିତେକ୍ଷଣା
ଅରୁନ୍ଧତୀ ସାକ୍ଷାତ୍ ତପଃସିଦ୍ଧିଃ ଇବ ବହୁ ବଭାସେ ।

ପଦ୍ୟାନୁବାଦ -

ସପ୍ତଋଷିଗଣ ମଧ୍ୟେ ଅରୁନ୍ଧତୀ
ସ୍ୱାମୀଙ୍କ ଚରଣ ପ୍ରତି
ଦୃଷ୍ଟି ରଖି ଶୋଭା ପାଉଥିଲେ ଯେହ୍ନେ
ସିଦ୍ଧି କେହି ମୂର୍ତ୍ତିମତୀ ॥ ୧୧ ॥

## ଶ୍ଲୋକ- ୧୨

ତାମଗୌରବଭେଦେନ
ମୁନୀଂଶ୍ଚାପଶ୍ୟଦୀଶ୍ୱରା ।
ସ୍ତ୍ରୀପୁମାନିତ୍ୟନାସ୍ଥୈଷା
ବୃତ୍ତଂ ହି ମହିତଂ ସତାମ୍ ॥ ୧୨ ॥

ଅନ୍ୱୟ - ଈଶ୍ୱରଃ ତାଂ ମୁନୀନ୍ ଚ ଅଗୌରବଭେଦେନ ଅପଶ୍ୟତ୍ । ହି ଯତଃ ସ୍ତ୍ରୀଃ
ପୁମାନ୍ ଇତି ଏଷା ଅନାସ୍ଥା । କିନ୍ତୁ ସତାଂ ବୃତ୍ତଂ ମହିତଂ ଭବତି ।

ପଦ୍ୟାନୁବାଦ -

ସପ୍ତର୍ଷିଙ୍କ ସହ ଅରୁନ୍ଧତୀ ଦେଖି
ନ ରଖିଣ ଭେଦଭାବ
ଆଦର ସତ୍କାର କଲେ ମହାଦେବ
ଦେଇ ସମ୍ମାନ ଗୌରବ ।

ସ୍ତ୍ରୀ ଓ ପୁରୁଷ ମଧ୍ୟରେ ପାର୍ଥକ୍ୟ
ଦେଖନ୍ତିନି ସାଧୁଜନ
କେବଳ ସେମାନେ ଚରିତ୍ର ଉପରେ
ଦିଅନ୍ତି ଅଧିକ ଧ୍ୟାନ ॥ ୧୨ ॥

## ଶ୍ଲୋକ- ୧୩

ତଦ୍ଦର୍ଶନାଦଭୂଚ୍ଛମ୍ଭୋ-
ର୍ଭୂୟାନ୍ ଦାରାର୍ଥମାଦରଃ ।
କ୍ରିୟାଣାଂ ଖଲୁ ଧର୍ମ୍ୟାଣାଂ
ସତ୍ପତ୍ନ୍ୟୋ ମୂଳକାରଣମ୍ ॥ ୧୩ ॥

ଅନ୍ୱୟ - ତଦ୍ଦର୍ଶନାତ୍ ଶମ୍ଭୋଃ ଦାରାର୍ଥଂ ଆଦରଃ ଭୂୟାନ୍ ଅଭୂତ ।
ଧର୍ମ୍ୟାଣାଂ କ୍ରିୟାଣାଂ ସତ୍ପତ୍ନ୍ୟଃ ମୂଳକାରଣଂ ଖଲୁ ।

ପଦ୍ୟାନୁବାଦ -

ସପ୍ତ ଋଷିଙ୍କର ମଧ୍ୟେ ଅରୁନ୍ଧତୀ
ଦେଖିକରି ମହାଦେବ
ସ୍ତ୍ରୀ-ପରିଗ୍ରହଣ ପାଇଁ ମନେ ତାଙ୍କ
ବଢ଼ିଲା ଆଦର ଭାବ ।
କାରଣ ଉତ୍ତମ ଧାର୍ମିକ ସ୍ୱଭାବ
ରଖିଥିବା ପତ୍ନୀମାନେ
ସମସ୍ତ ଧର୍ମୀୟ କାର୍ଯ୍ୟର କାରଣ
ହୋଇଥାନ୍ତି ସର୍ବ ସ୍ଥାନେ ॥ ୧୩ ॥

## ଶ୍ଲୋକ- ୧୪

ଧର୍ମେଣାପି ପଦଂ ଶର୍ବେ
କାରିତେ ପାର୍ବତୀଂ ପ୍ରତି ।
ପୂର୍ବାପରାଧଭୀତସ୍ୟ
କାମସ୍ୟୋଚ୍ଛ୍ୱସିତଂ ମନଃ ॥ ୧୪ ॥

ଅନ୍ୱୟ - ଧର୍ମେଣ ଅପି ଶର୍ବେ ପାର୍ବତୀଂ ପ୍ରତି ପଦଂ କାରିତେ ସତି,
ପୂର୍ବାପରାଧଭୀତସ୍ୟ କାମସ୍ୟ ମନଃ ଉଚ୍ଛ୍ୱସିତମ୍ ।

ପଦ୍ୟାନୁବାଦ -

ଗୌରୀଙ୍କ ନିକଟେ ପୂରି ରହିଥିଲା
ସମସ୍ତ ଧାର୍ମିକ ଗୁଣ
ସେ ପାଇଁ ଗୌରୀଙ୍କୁ ଗ୍ରହଣ କରିବା
ଶିବଙ୍କ ମୂଳ କାରଣ ।
ତଥାପି ପୂର୍ବର ଅପରାଧ ଡରେ
ଭୟଭୀତ କାମଦେବ
ପୁନଶ୍ଚ ଜୀବନ ପାଇବାର ଆଶା
ମନେ କରେ ଅନୁଭବ ॥ ୧୪ ॥

**ଶ୍ଳୋକ- ୧୫**

ଅଥ ତେ ମୁନୟଃ ସର୍ବେ
ମାନୟିତ୍ୱା ଯଗଦ୍ଗୁରୁମ୍ ।
ଇଦମୂଚୁରନୂଚାନାଃ
ପ୍ରୀତିକଣ୍ଟକିତତ୍ୱଚଃ ॥ ୧୫ ॥

ଅନ୍ୱୟ - ଅଥ ଅନୂଚାନାଃ ପ୍ରୀତିକଣ୍ଟକିତତ୍ୱଚଃ ତେ ସର୍ବେ ମୁନୟଃ
ଜଗଦ୍ଗୁରୁଂ ମାନୟିତ୍ୱା ଇଦମ୍ ଉଚୁଃ ।

ପଦ୍ୟାନୁବାଦ -

ପ୍ରେମେ ରୋମାଞ୍ଚିତ ସାମବେଦଜ୍ଞାତା
ସେହି ସପ୍ତଋଷିଗଣ
ଜଗଦ୍ଗୁରୁ ଶିବେ ପୂଜାର୍ଚ୍ଚନା କରି
ବୋଇଲେ ଏହି ବଚନ ॥ ୧୫ ॥

## ଶ୍ଲୋକ- ୧୬

ଯଦ୍ ବ୍ରହ୍ମ ସମ୍ୟଗାମ୍ନାତଂ
ଯଦଗ୍ନୌ ବିଧିନା ହୃତମ୍।
ଯଚ୍ଚ ତପ୍ତଂ ତପସ୍ତସ୍ୟ
ବିପକ୍ୱଂ ଫଳମଦ୍ୟ ନଃ ॥ ୧୬ ॥

ଅନ୍ୱୟ - ବ୍ରହ୍ମ ସମ୍ୟକ୍ ଆମ୍ନାତଂ ଯତ୍, ଅଗ୍ନୌ ବିଧିନା ହୃତଂ ଯତ୍, ତପଃ ତପ୍ତଂ ଯତ୍, ତସ୍ୟ ଫଳମ୍ ଅଦ୍ୟ ନଃ ବିପକ୍ୱମ୍।

ପଦ୍ୟାନୁବାଦ -

ଯାହା ଅଧ୍ୟୟନ ଯଜ୍ଞାହୁତି ଦାନ
ଅବା ତପ ଏପର୍ଯ୍ୟନ୍ତ
ଯାହା ବି କରିଛୁ ସେ ସବୁର ଫଳ
ହୋଇଛି ଆମ୍ଭଙ୍କୁ ପ୍ରାପ୍ତ ॥ ୧୬ ॥

## ଶ୍ଲୋକ -୧୭

ଯଦଧ୍ୟକ୍ଷେଣ ଜଗତାଂ
ବୟୋମାରୋପିତାସ୍ତ୍ୱୟା।
ମନୋରଥସ୍ୟାବିଷୟଂ
ମନୋବିଷୟମାତ୍ମନଃ ॥ ୧୭ ॥

ଅନ୍ୱୟ - ଯତ୍ ଜଗତାମ୍ ଅଧ୍ୟକ୍ଷେଣ ତ୍ୱୟା ବୟଂ ମନୋରଥସ୍ୟ ଅବିଷୟମ୍ ଆତ୍ମନଃ ମନୋବିଷୟମ୍ ଆରୋପିତାଃ।

ପଦ୍ୟାନୁବାଦ -

ସାରା ଜଗତର ସ୍ୱାମୀ ହିଁ ଆପଣ
ଆପଣଙ୍କ ମନ ପାଶ
ପହଞ୍ଚି ପାରେନା ଏ ସାରା ଜଗତେ
କାହାରି ବି ଅଭିଳାଷ।

ଏପରି ସେ ମନ କରିଛି ସ୍ମରଣ
ଆମ୍ଭଙ୍କୁ ଏ ସମୟରେ
ଏହାଠାରୁ ବଳି ବଡ ଭାଗ୍ୟଫଳ
କଣ ଅବା ହୋଇପାରେ ? ॥ ୧୭ ॥

**ଶ୍ଳୋକ- ୧୮**

ଯସ୍ୟ ଚେତସି ବର୍ତ୍ତେଥାଃ
ସ ତାବତ୍କୃତିନାଂ ବରଃ ।
କିଂ ପୁନର୍ବ୍ରହ୍ମଯୋନେଃ ଯଃ
ତବ ଚେତସି ବର୍ତ୍ତତେ ॥ ୧୮ ॥

ଅନ୍ୱୟ - ଯସ୍ୟ ଚେତସି ବର୍ତ୍ତେଥାଃ ସ ତାବତ୍ କୃତିନାଂ ବରଃ ଅସ୍ତି, ବ୍ରହ୍ମଯୋନେଃ ତବ ଚେତସି ଯଃ ବର୍ତ୍ତତେ ସ କିଂ ପୁନଃ ।

ପଦ୍ୟାନୁବାଦ -

ଯା ହୃଦେ ଆପଣ ଅଟ ବିଦ୍ୟମାନ
ସେ ସବଠୁ ଭାଗ୍ୟବାନ
କି କହିବା ତାଙ୍କ ବିଷୟରେ ଯା'ର
ଆପଣଙ୍କ ହୃଦେ ସ୍ଥାନ ॥ ୧୮ ॥

**ଶ୍ଳୋକ- ୧୯**

ସତ୍ୟମର୍କାଚ୍ଚ ସୋମାଚ୍ଚ
ପରମଧ୍ୟାସ୍ମହେ ପଦମ୍ ।
ଅଦ୍ୟ ତୂଚ୍ଚୈସ୍ତରଂ ତାଭ୍ୟାଂ
ସ୍ମରଣାନୁଗ୍ରହାତ୍ତବ ॥ ୧୯ ॥

ଅନ୍ୱୟ - ଅର୍କାତ୍ ସୋମାତ୍ ଚ ପରଂ ପଦମ୍ ଅଧ୍ୟାସ୍ମହେ ସତ୍ୟମ । ଅଦ୍ୟ ତୁ ତବ ସ୍ମରାଣାନୁଗ୍ରହାତ୍ ତାଭ୍ୟାମ୍ ଉଚ୍ଚୈସ୍ତରଂ ପଦମ୍ ଅଧ୍ୟାସ୍ମହେ ।

ପଦ୍ୟାନୁବାଦ -

ସୂର୍ଯ୍ୟ ଆଉ ଚନ୍ଦ୍ର ଠାରୁ ବି ଉପର
ଅଟଇ ସ୍ଥାନ ଆମ୍ଭର
ଆମ୍ଭଙ୍କୁ ସ୍ମରଣ କରନ୍ତେ ସେ ସ୍ଥାନ
ହେଲା ବେଶି ଉଚ୍ଚତର ।। ୧୯ ।।

## ଶ୍ଳୋକ- ୨୦

ତ୍ୱତ୍ସମ୍ଭାବିତମାତ୍ମନଂ
ବହୁ ମନ୍ୟାମହେ ବୟଂ ।
ପ୍ରାୟଃ ପ୍ରତ୍ୟୟମାଧତେ
ସ୍ୱଗୁଣେଷୁତ୍ତମାଦରଃ ।। ୨୦ ।।

ଅନ୍ୱୟ - ବୟଂ ତ୍ୱତ୍ସମ୍ଭାବିତମ୍ ଆତ୍ମାନଂ ବହୁ ମନ୍ୟାମହେ ।
ଉତ୍ତମାଦରଃ ସ୍ୱଗୁଣେଷୁ ପ୍ରାୟଃ ପ୍ରତ୍ୟୟମ୍ ଆଧତେ ।

ପଦ୍ୟାନୁବାଦ -

ଯେତିକି ଆପଣ ଆଦର ସମ୍ମାନ
ଦେଇ ଅଛନ୍ତି ଆମ୍ଭଙ୍କୁ
ସେଥିପାଇଁ ଆଜି ଧନ୍ୟ ଧନ୍ୟ ଆମେ
ମଣୁଛୁ ନିଜ ନିଜକୁ ।
କାରଣ ଯେ ଜନ ପାଆନ୍ତି ସମ୍ମାନ
ମହତ ଲୋକଙ୍କ ଠାରୁ
ନିଜ ଗୁଣ ପ୍ରତି ବଢଇ ବିଶ୍ୱାସ
ସମ୍ମାନ ପ୍ରାପ୍ତି ହେତୁରୁ ।। ୨୦ ।।

## ଶ୍ଲୋକ- ୨୧

ଯା ନଃ ପ୍ରୀତିର୍ବିରୂପାକ୍ଷ !
ତ୍ୱଦନୁଧ୍ୟାନସମ୍ଭବା ।
ସା କିମାବେଦ୍ୟତେ ତୁଭ୍ୟମ୍
ଅନ୍ତରାତ୍ମାଽସି ଦେହିନାମ୍ ॥ ୨୧ ॥

ଅନ୍ୱୟ - ହେ ବିରୂପାକ୍ଷ ! ନଃ ତ୍ୱଦନୁଧ୍ୟାନସମ୍ଭବା ଯା ପ୍ରୀତିଃ, ସା ତୁଭ୍ୟମ୍ କିମ୍ ଆବେଦ୍ୟତେ । ତ୍ୱଂ ଦେହିନାମ୍ ଅନ୍ତରାତ୍ମା ଅସି ।

ପଦ୍ୟାନୁବାଦ -

ଆହେ ତ୍ରିଲୋଚନ ଆପଣ ସ୍ମରଣ
କଲେ ମିଳେ ଯେ ସନ୍ତୋଷ
ସେ ସବୁ ପ୍ରକାଶ ଆପଣଙ୍କ ପାଶ
ଦରକାର ଅବା କିସ ।
କାରଣ ଆପଣ ସବୁ ପ୍ରାଣୀଙ୍କର
ହୃଦୟରେ ଅଧିଷ୍ଠିତ
ସମସ୍ତ ପ୍ରାଣୀଙ୍କ ଅନ୍ତରର କଥା
ଭଲ ଭାବେ ଅବଗତ ॥ ୨୧ ॥

## ଶ୍ଲୋକ- ୨୨

ସାକ୍ଷାତ ଦୃଷ୍ଟୋଽସି ନ
ପୁନର୍ବିଦ୍ମସ୍ତ୍ୱାଂ ବୟମଞ୍ଜସା ।
ପ୍ରସୀଦ କଥୟାତ୍ମାନଂ
ନ ଧିୟାଂ ପଥି ବର୍ତ୍ତସେ ॥ ୨୨ ॥

ଅନ୍ୱୟ - ହେ ଦେବ ! ସାକ୍ଷାତ୍ ଦୃଷ୍ଟଃ ଅସି ଅଞ୍ଜସା ପୁନଃ ତ୍ୱାଂ ବୟଂ ନ ବିଦ୍ମଃ, ଅତଃ ପ୍ରସୀଦ, ଆତ୍ମାନଂ କଥୟ, ଧିୟାଂ ପଥି ନ ବର୍ତ୍ତସେ ।

ପଦ୍ୟାନୁବାଦ -

ପ୍ରତ୍ୟକ୍ଷ ଦର୍ଶନ　　　କରି ଆମେ ମଧ୍ୟ
ଆହେ ପ୍ରଭୁ ମହେଶ୍ୱର
ଜାଣି ପାରୁନାହୁଁ　　　ଆମ୍ଭେ ସପ୍ତଋଷି
ସ୍ୱରୂପ ଆପଣଙ୍କର।
ବୁଦ୍ଧି ଦ୍ୱାରା ମଧ୍ୟ　　　ଅଗମ୍ୟ ଆପଣ
ଜାଣିବା ନୁହେଁ ସହଜ
ଏଣୁ କୃପାକରି　　　ନିଜ ରୂପ ନିଜେ
ଦେଖାନ୍ତୁ ହେ ମହାଦେବ ॥ ୨୨ ॥

**ଶ୍ଳୋକ- ୨୩**

କିଂ ଯେନ ସୃଜସି ବ୍ୟକ୍ତମ୍
ଉତ ଯେନ ବିଭର୍ଷି ତତ୍।
ଅଥ ବିଶ୍ୱସ୍ୟ ସଂହର୍ତା
ଭାଗଃ କତମ ଏଷ ତେ ॥ ୨୩ ॥

ଅନ୍ୱୟ - ହେ ଦେବ! ଏଷ ତେ ଭାଗଃ, କିଂ ଯେନ ବ୍ୟକ୍ତଂ ସୃଜସି ସଃ, ଉତ ଯେନ ତତ୍ ବିଭର୍ଷି ସଃ, ଅଥ ଯଃ ବିଶ୍ୱସ୍ୟ ସଂହର୍ତା ସଃ, କତମଃ ?

ପଦ୍ୟାନୁବାଦ -

ଆହେ ମହାଦେବ　　　ଯେଉଁ ମୂର୍ତ୍ତି ତବ
ଦେଖୁଅଛୁ ଆମ୍ଭେ ନେତ୍ରେ
ସେହି ମୂର୍ତ୍ତି କଣ　　　କରିଛ ସୃଜନ
ଏ ସଂସାରେ ନିଜ ହସ୍ତେ।
ସେହି ମୂର୍ତ୍ତି କଣ　　　କରୁଛି ପାଳନ
ସମସ୍ତ ଜଡ ଚେତନ
ସେହି ମୂର୍ତ୍ତି କଣ　　　କରଇ ସଂହାର
ଯେବେ ତାର ହୁଏ ମନ ॥ ୨୩ ॥

### ଶ୍ଳୋକ- ୨୪

ଅଥବା ସୁମହତ୍ୟେଷା
ପ୍ରାର୍ଥନା ଦେବ ! ତିଷ୍ଠତୁ ।
ଚିନ୍ତିତୋପସ୍ଥିତାଂସ୍ତାବତ୍
ଶାଧି ନଃ କରବାମ୍ କିମ୍ ॥ ୨୪ ॥

ଅନ୍ୱୟ - ଅଥବା ହେ ଦେବ ! ସୁମହତୀ ଏଷା ପ୍ରାର୍ଥନା ତିଷ୍ଠତୁ ।
ଚିନ୍ତିତୋପସ୍ଥିତାନ୍ ନଃ ତାବତ୍ ଶାଧି, କିଂ କରବାମ୍ ?

ପଦ୍ୟାନୁବାଦ -

ଆହେ ମହାଦେବ ଆମ ଏ ପ୍ରାର୍ଥନା
ହୋଇପାରେ ଅତି ଲମ୍ବ
ତେଣୁ ଆହେ ଦେବ ଏଠାରେ ଏହାକୁ
ବିରାମ ଦେବାକୁ ହେବ ।
କାହିଁକି ସ୍ମରଣ ଆମ୍ଭଙ୍କୁ ଆପଣ
କରିଲେ ପ୍ରଥମେ ଦେବ
କୁହନ୍ତୁ ଆମ୍ଭଙ୍କୁ କେଉଁ କାର୍ଯ୍ୟ ଏଠି
କରିବାକୁ ଏବେ ହେବ ॥ ୨୪ ॥

### ଶ୍ଳୋକ- ୨୫

ଅଥ ମୌଳିଗତସ୍ୟେନ୍ଦୋଃ
ବିଶଦୈର୍ଦ୍ଦଶନାଂଶୁଭିଃ ।
ଉପଚିନ୍ୱନ୍ପ୍ରଭାଂ ତନ୍ୱୀଂ
ପ୍ରତ୍ୟାହ ପରମେଶ୍ୱରଃ ॥ ୨୫ ॥

ଅନ୍ୱୟ - ଅଥ ପରମେଶ୍ୱରଃ ମୌଳିଗତସ୍ୟ ଇନ୍ଦୋଃ ତନ୍ୱୀଂ
ପ୍ରଭାଂ ବିଶଦୈଃ ଦଶନାଂଶୁଭିଃ ଉପଚିନ୍ୱନ୍ ପ୍ରତ୍ୟାହ

ପଦ୍ୟାନୁବାଦ -

ସପ୍ତଋଷିଙ୍କର ପ୍ରାର୍ଥନା ଶୁଣିବା
ପରେ ପରମ ଈଶ୍ୱର
ସ୍ୱ ମସ୍ତକେ ସ୍ଥିତ ଚନ୍ଦ୍ରକଳା କ୍ଷୀଣ-
କାନ୍ତି କରିବାକୁ ଦୂର।
ସ୍ୱ ଦନ୍ତ ଉଜ୍ଜ୍ୱଳ କିରଣରେ ଚନ୍ଦ୍ର-
କଳା ପ୍ରଭା ବୃଦ୍ଧି କରି
ଏହିପରି ଭାବେ କହିବା ଆରମ୍ଭ
କରିଲେ ପିନାକଧାରୀ ॥ ୨୫ ॥

**ଶ୍ଳୋକ -୨୬**

ବିଦିତଂ ବୋ ଯଥା ସ୍ୱାର୍ଥା
ନ ମେ କଶ୍ଚିତ୍‌ପ୍ରବୃତ୍ତୟଃ।
ନନୁ ମୂର୍ତିଭିରଷ୍ଟାଭିଃ
ଇତ୍ଥଂଭୂତୋଽସ୍ମି ସୂଚିତଃ ॥ ୨୬ ॥

ଅନ୍ୱୟ - ହେ ମୁନୟଃ ! କଶ୍ଚିତ୍ ମେ ପ୍ରବୃତ୍ତୟଃ ଯଥା ସ୍ୱାର୍ଥା ନ ତଥା ବଃ ବିଦିତମ୍। ଅଷ୍ଟାଭିଃ ମୂର୍ତିଭିଃ ଇତ୍ଥମ୍ଭୂତଃ ସୂଚିତଃ ଅସ୍ମି।

ପଦ୍ୟାନୁବାଦ -

ଆହେ ମୁନିଗଣ ଶୁଣନ୍ତୁ ଆପଣ
ମୋର କୌଣସି ପ୍ରବୃତ୍ତି
ସ୍ୱାର୍ଥ ପ୍ରଣୋଦିତ ନୁହେଁ ଏହି କଥା
ଆପଣମାନେ ଜାଣନ୍ତି।
ଏହି କଥା ମଧ୍ୟ ମୋର ଅଷ୍ଟମୂର୍ତ୍ତି
ଦ୍ୱାରା ବି ହୁଏ ସୂଚିତ
ଏହି ବିଷୟରେ ଆପଣମାନେ ହି
ଭଲ ଭାବରେ ବିଦିତ ॥ ୨୬ ॥

## ଶ୍ଲୋକ- ୨୭

ସୋଽହଂ ତୃଷ୍ଣାତୁରୈର୍ବୃଷ୍ଟିଂ
ବିଦ୍ୟୁତ୍ୱାନିବ ଚାତକୈଃ।
ଅରିବିପ୍ରକୃତୈର୍ଦେବୈଃ
ପ୍ରସୂତିଂ ପ୍ରତି ଯାଚିତଃ ॥ ୨୭ ॥

ଅନ୍ୱୟ    ସ ଅହଂ ତୃଷ୍ଣାତୁରୈଃ ଚାତକୈଃ ବୃଷ୍ଟିଂ ବିଦ୍ୟୁତ୍ୱାନ୍ ଇବ ଅରିବିପ୍ରକୃତୈଃ ଦେବୈଃ ପ୍ରସୂତିଂ ପ୍ରତି ଯାଚିତଃ ଅସ୍ମି।

ପଦ୍ୟାନୁବାଦ -

ତୃଷିତ ଚାତକ    ମେଘକୁ ଯେପରି
ମାଗିଥାନ୍ତି ବୃଷ୍ଟିଜଳ
ସେପରି ମୋ ଠାରୁ    ପୁତ୍ର ପ୍ରାପ୍ତି ପାଇଁ
ବ୍ୟାକୁଳ ଦେବ ସକଳ ॥ ୨୭ ॥

## ଶ୍ଲୋକ- ୨୮

ଅତ ଆହର୍ତୁମିଚ୍ଛାମି
ପାର୍ବତୀମାତ୍ମଜନ୍ମନେ।
ଉତ୍ପତ୍ତୟେ ହବିର୍ଭୋକ୍ତୁଃ
ଯଜମାନ ଇବାରଣିମ୍ ॥ ୨୮ ॥

ଅନ୍ୱୟ - ଅତଃ ଆତ୍ମଜନ୍ମନେ ପାର୍ବତୀଂ ଯଜମାନଃ ହବିର୍ଭୋକ୍ତୁଃ ଉତ୍ପତ୍ତୟେ ଅରଣିମ୍ ଇବ ଆହର୍ତୁମ୍ ଇଚ୍ଛାମି।

ପଦ୍ୟାନୁବାଦ -

ଅଗ୍ନିର ଉତ୍ପନ    ପାଇଁ ଯଜମାନ
ଆଣେ ଯେପରି ଅରଣି
ସନ୍ତାନର ପ୍ରାପ୍ତି    ହୋଇବ ସେପରି
ପାର୍ବତୀଙ୍କୁ ଗୃହେ ଆଣି ॥ ୨୮ ॥

### ଶ୍ଲୋକ- ୨୯

ତାମସ୍ମଦର୍ଥେ ଯୁଷ୍ମାଭିଃ
ଯାଚିତବ୍ୟୋ ହିମାଳୟଃ ।
ବିକ୍ରିୟାୟୈ ନ କଳ୍ପନ୍ତେ
ସମ୍ବନ୍ଧାଃ ସଦନୁଷ୍ଠିତାଃ ॥ ୨୯ ॥

ଅନ୍ୱୟ - ଅସ୍ମଦର୍ଥେ ଯୁଷ୍ମାଭିଃ ତାଂ ହିମାଳୟଃ ଯାଚିତବ୍ୟଃ,
ସଦନୁଷ୍ଠିତାଃ ସମ୍ବନ୍ଧାଃ ବିକ୍ରିୟାୟୈ ନ କଳ୍ପନ୍ତେ ।

ପଦ୍ୟାନୁବାଦ -

ଏଣୁ ମୋ ନିମିତ୍ତ ପାର୍ବତୀଙ୍କ ହସ୍ତ
ହିମାଳୟଙ୍କୁ ଯାଚନା
କରନ୍ତୁ ଆପଣ ସପ୍ତଋଷିଗଣ
ଏହା ହିଁ ମୋର କାମନା ।
ସଂପର୍କ ସ୍ଥାପନ ଯଦି ସାଧୁଜନ
ମାନଙ୍କ ଦ୍ୱାରା ସଂପନ୍ନ
ହୋଇଥାଏ ତହିଁ କୌଣସି ବିକାର
ହୋଇ ପାରେନା ଉତ୍ପନ୍ନ ॥ ୨୯ ॥

### ଶ୍ଲୋକ- ୩୦

ଉନ୍ନତେନ ସ୍ଥିତିମତା
ଧୁରମୁଦ୍‌ବହତା ଭୁବଃ ।
ତେନ ଯୋଜିତସମ୍ବନ୍ଧଂ
ବିତ୍ତ ମାମପ୍ୟବଞ୍ଚିତମ୍ ॥ ୩୦ ॥

ଅନ୍ୱୟ - ଉନ୍ନତେନ ସ୍ଥିତିମତା ଭୂବଃ ଧୁରମ୍ ଉଦ୍‌ବହତା
ତେନ ଯୋଜିତସମ୍ବନ୍ଧଂ ମାମପି ଅବଞ୍ଚିତଂ ବିତ୍ତ ।

ପଦ୍ୟାନୁବାଦ -

ଅତ୍ୟଧିକ ଉଚ୍ଚ ପ୍ରତିଷ୍ଠା ସମ୍ପନ୍ନ
ପୃଥ୍ୱୀର ଭାର ଧାରଣ
କରିଥିବା ହିମା- ଳୟ ସହ ମୋର
ସମ୍ବନ୍ଧ ହେଲେ ସ୍ଥାପନ।
ଜାଣନ୍ତୁ ଆପଣ ମାନେ ନିଶ୍ଚେ ମୁହିଁ
ଭାବିବି ହେଲି କୃତାର୍ଥ
ଆହେ ଋଷିଗଣ ଏ ମୋର ବଚନ
ନାହିଁ ଏଥିରେ ଦ୍ୱିମତ ॥ ୩୦ ॥

## ଶ୍ଳୋକ- ୩୧

ଏବଂ ବାଚ୍ୟଃ ସ କନ୍ୟାର୍ଥମ୍
ଇତି ବୋ ନୋପଦିଶ୍ୟତେ।
ଭବତ୍ପ୍ରଣିତମାଚାରମ୍
ଆମନନ୍ତି ହି ସାଧବଃ ॥ ୩୧ ॥

ଅନ୍ୱୟ - 'କନ୍ୟାର୍ଥଂ ସ ଏବଂ ବାଚ୍ୟଃ' ଇତି ବଃ ନ ଉପଦିଶ୍ୟତେ। ହି ସାଧବଃ ଭବତ୍ପ୍ରଣୀତମ୍ ଆଚାରମ୍ ଆମନନ୍ତି।

ପଦ୍ୟାନୁବାଦ -

ମୁଁ କହିବି କ'ଣ କିପରି ଆପଣ
ହିମାଳୟଙ୍କୁ ଯାଚନା
କନ୍ୟାଦାନ ପାଇଁ କରିବେ ସେ କଥା
ଆପଣମାନଙ୍କୁ ଜଣା।
କାରଣ ସଜ୍ଜନ ଯେ ନୀତି ନିୟମ
କରିଥାଆନ୍ତି ପାଳନ
ସେ ନୀତି ନିୟମ ଆପଣମାନେ ହିଁ
କରିଛନ୍ତି ପ୍ରଣୟନ ॥ ୩୧ ॥

## ଶ୍ଲୋକ- ୩୨

ଆର୍ଯାପ୍ୟରୁନ୍ଧତୀ ତତ୍ର
ବ୍ୟାପାରଂକର୍ତ୍ତୁମର୍ହତି ।
ପ୍ରାୟେଣୈବଂବିଧେ କାର୍ଯେ
ପୁରନ୍ଧ୍ରୀଣାଂ ପ୍ରଗଲ୍ଭତା ॥ ୩୨ ॥

ଅନ୍ୱୟ - ଆର୍ଯ୍ୟା ଅରୁନ୍ଧତୀ ଅପି ତତ୍ର ବ୍ୟାପାରଂ କର୍ତ୍ତୁମ୍ ଅର୍ହତି ।
ପ୍ରାୟେଣ ଏବଂବିଧେ କାର୍ଯ୍ୟେ ପୁରନ୍ଧ୍ରୀଣାଂ ପ୍ରଗଲ୍ଭତା ଭବତି ।

ପଦ୍ୟାନୁବାଦ -

ବିବାହ କାର୍ଯ୍ୟରେ କୁଟୁମ୍ବିନୀ ନାରୀ-
ମାନେ କୁଶଳୀ ଅଟନ୍ତି
ଏଣୁ ଏ କାର୍ଯ୍ୟରେ ସାହାଯ୍ୟ କରିବା
ହେବେ ଆର୍ଯ୍ୟା ଅରୁନ୍ଧତୀ ॥ ୩୨ ॥

## ଶ୍ଲୋକ- ୩୩

ତତ୍ପ୍ରୟାତୌଷଧିପ୍ରସ୍ଥଂ
ସିଦ୍ଧୟେ ହିମବତ୍ପୁରମ୍ ।
ମହାକୋଶୀପ୍ରପାତେଽସ୍ମିନ୍
ସଙ୍ଗମଃ ପୁନରେବ ନଃ ॥ ୩୩ ॥

ଅନ୍ୱୟ - ତତ୍ ଓଷଧିପ୍ରସ୍ଥଂ ହିମବତ୍ପୁରଂ ସିଦ୍ଧୟେ ପ୍ରୟାତ ।
ଅସ୍ମିନ୍ ମହାକୋଶୀ ପ୍ରପାତେ ଏବ ନଃ ପୁନଃ ସଙ୍ଗମଃ ଭବତୁ ।

ପଦ୍ୟାନୁବାଦ -

ଏ କାର୍ଯ୍ୟ ସମ୍ପନ୍ନ ପାଇଁକି ଆପଣ-
ମାନେ କରନ୍ତୁ ଗମନ
ହିମାଳୟର ସେ ନଗର ଯା ନାମ
ଓଷଧିପ୍ରସ୍ଥ ହିଁ ଜାଣ ।

ମହାକୋଶୀ ନାମେ ନଦୀର ଯେ ସ୍ଥାନେ
ରହିଛି ଏକ ପ୍ରପାତ
ସେ ପ୍ରପାତ ପାଶେ ଆମ୍ଭମାନଙ୍କର
ହୋଇବ ପୁନଃ ସାକ୍ଷାତ ॥ ୩୩ ॥

### ଶ୍ଳୋକ- ୩୪

ତସ୍ମିନ୍ସଂଯମିନାମାଦ୍ୟେ
ଜାତେ ପରିଣୟୋନ୍ମୁଖେ ।
ଜହୁ ପରିଗ୍ରହବ୍ରୀଡାଂ
ପ୍ରାଜାପତ୍ୟାସ୍ତପସ୍ୱିନଃ ॥ ୩୪ ॥

ଅନ୍ୱୟ - ସଂଯମିନାମ୍ ଆଦ୍ୟେ ତସ୍ମିନ୍ ପରିଣୟୋନ୍ମୁଖେ ଜାତେ
ସତି ପ୍ରାଜାପତ୍ୟାଃ ତପସ୍ୱିନଃ ପରିଗ୍ରହବ୍ରୀଡାଂ ଜହୁଃ

ପଦ୍ୟାନୁବାଦ -

ସଂଯମୀଙ୍କ ଶ୍ରେଷ୍ଠ ଶିବଙ୍କ ଆଗ୍ରହ
ଦେଖି ବିବାହ ନିମିତ୍ତ
ସପ୍ତଋଷିଙ୍କର ନିଜ ବିବାହର
ଲଜ୍ଜା ହୋଇଲା ସମାପ୍ତ ॥ ୩୪ ॥

### ଶ୍ଳୋକ- ୩୫

ତତଃ ପରମିତ୍ୟୁକ୍ତ୍ୱା
ପ୍ରତସ୍ଥେ ମୁନିମଣ୍ଡଳମ୍ ।
ଭଗବାନପି ସମ୍ପ୍ରାପ୍ତଃ
ପ୍ରଥମୋଦ୍ଦିଷ୍ଟମାସ୍ପଦମ୍ ॥ ୩୫ ॥

ଅନ୍ୱୟ - ତତଃ ମୁନିମଣ୍ଡଳଂ ପରମମ୍ ଇତି ଉକ୍ତ୍ୱା ପ୍ରତସ୍ଥେ ।
ଭଗବାନ୍ ଅପି ପ୍ରଥମୋଦ୍ଦିଷ୍ଟମ୍ ଆସ୍ପଦଂ ସମ୍ପ୍ରାପ୍ତଃ ।

ପଦ୍ୟାନୁବାଦ -

ତପୂରେ ବହୁତ ଭଲ ବୋଲି କହି
ସପ୍ତର୍ଷି ତହୁଁ ଚଳିଲେ
ଶିବ ମଧ୍ୟ ପୂର୍ବ ନିର୍ଦ୍ଧାରିତ ସ୍ଥାନେ
ଯାଇ ଉପସ୍ଥିତ ହେଲେ ॥ ୩୫ ॥

## ଶ୍ଳୋକ- ୩୬

ତେ ଚାକାଶମସିଶ୍ୟାମମ୍
ଉତ୍ପତ୍ୟ ପରମର୍ଷୟଃ ।
ଆସେଦୁରୋଷଧିପ୍ରସ୍ଥଂ
ମନସା ସମରଂହସଃ ॥ ୩୬ ॥

ଅନ୍ୱୟ- ମନସା ସମରଂହସଃ ତେ ପରମର୍ଷୟଶ୍ଚ ଅସିଶ୍ୟାମମ୍ ଆକାଶମ୍ ଉତ୍ପତ୍ୟ ଓଷଧିପ୍ରସ୍ଥମ୍ ଆସେଦୁଃ ।

ପଦ୍ୟାନୁବାଦ -

ମନ ସମ ଅତି ବେଗେ କରି ଗତି
ନୀଳ ଆକାଶେ ସପ୍ତର୍ଷି
ଓଷଧିପ୍ରସ୍ଥ ସେ ନାମକ ନଗରେ
ଉପସ୍ଥିତ ହେଲେ ଆସି ॥ ୩୬ ॥

## ଶ୍ଳୋକ- ୩୭

ଅଳକାମତିବାହ୍ୟେବ
ବସତିଂ ବସୁସମ୍ପଦାମ୍ ।
ସ୍ୱର୍ଗାଭିଷ୍ୟନ୍ଦବମନଂ
କୃତ୍ୱେବୋପନିବେଶିତମ୍ ॥ ୩୭ ॥

ଅନ୍ୱୟ - ବସୁ ସମ୍ପଦାଂ ବସତିମ୍ ଅଳକାମ୍ ଅତିବାହ୍ୟ ଇବ ସ୍ୱର୍ଗାଭିଷ୍ୟନ୍ଦବମନଂ କୃତ୍ୱା ଇବ ଉପନିବେଶିତମ୍ ଓଷଧିପ୍ରସ୍ଥମାସେଦୁରିତି ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

କୁବେର ଅଳକା- ପୁରୀ ଠାରୁ ବଳି
ଅଧିକ ଧନ ସମ୍ପତ୍ତି
ସେ ଓଷଧିପ୍ରସ୍ଥ ନଗରୀରେ ଥିଲା
ଯାହା ହୁଅଇ ପ୍ରତୀତି ।
ସେ ସବୁ ସମ୍ପତ୍ତି ସମସ୍ତ ବିଭୂତି
ସ୍ୱର୍ଗରେ ନ ପାଇ ସ୍ଥାନ
ଅଣାହୋଇ ସବୁ ରଖା ଯାଇଛନ୍ତି
ସେହି ନଗରୀରେ ଜାଣ ॥ ୩୭ ॥

## ଶ୍ଳୋକ- ୩୮

ଗଙ୍ଗାସ୍ରୋତଃପରିକ୍ଷିପ୍ତଂ
ବପ୍ରାନ୍ତର୍ଜ୍ୱଳିତୌଷଧି ।
ବୃହନ୍ମଣିଶିଳାସାଳଂ
ଗୁପ୍ତାବପି ମନୋହରମ୍ ॥ ୩୮ ॥

ଅନ୍ୱୟ - ଗଙ୍ଗାସ୍ରୋତଃ ପରିକ୍ଷିପ୍ତଂ ବପ୍ରାନ୍ତର୍ଜ୍ୱଳିତୌଷଧି ବୃହନ୍ମଣିଶିଳାସାଳଂ ଗୁପ୍ତୌ ଅପି ମନୋହରମ୍ ଓଷଧିପ୍ରସ୍ଥମାସେଦୁରିତି ପୂର୍ବେଣାନ୍ୱୟଃ ।

ପଦ୍ୟାନୁବାଦ -

ନଗରୀର ଘେରି ପାର୍ଶ୍ୱେ ଖାଇ ରୂପେ
ପ୍ରବାହିତ ଗଙ୍ଗା ସ୍ରୋତ
ସେ ନଗରୀ ଘେରି ପାର୍ଶ୍ୱେ ମଧ୍ୟ ହୋଇ
ଥିଲା ପ୍ରାଚୀର ନିର୍ମିତ ।
ପ୍ରାଚୀର ଉପରେ ଶୋଭା ପାଉଥିଲା
ଔଷଧୀୟ ବନସ୍ପତି
ସେ ପ୍ରାଚୀର ମଣି ପ୍ରସ୍ତରୁ ନିର୍ଗତ
ହେଉଥିଲା ଶୁଭ୍ର ଜ୍ୟୋତି ॥ ୩୮ ॥

## ଶ୍ଳୋକ- ୩୯

ଜିତସିଂହଭୟା ନାଗା
ଯତ୍ରାଶ୍ୱା ବିଳଯୋନୟଃ ।
ଯକ୍ଷାଃ କିମ୍ପୁରୁଷା ପୌରା
ଯୋଷିତୋ ବନଦେବତାଃ ॥ ୩୯ ॥

ଅନ୍ୱୟ - ଯତ୍ର ନାଗାଃ ଜିତସିଂହଭୟା, ଅଶ୍ୱା ବିଳଯୋନୟଃ,
ଯକ୍ଷାଃ କିମ୍ପୁରୁଷାଃ ପୌରାଃ, ବନଦେବତାଃ ଯୋଷିତଃ ।

ପଦ୍ୟାନୁବାଦ -

ସେ ସ୍ଥାନରେ ହାତୀ ମାନଙ୍କର ଭୀତି
ନଥାଏ ସିଂହମାନଙ୍କୁ
ବିଳ ଜାତି ରୁପେ ସେ ସ୍ଥାନରେ ନେଇ
ଥାଆନ୍ତି ଅଶ୍ୱମାନଙ୍କୁ ।
ନାଗରିକ ଭାବେ ଗଣା ହୋଇଥାନ୍ତି
ଯକ୍ଷ କିନ୍ନର ସେ ସ୍ଥାନେ
ସ୍ତ୍ରୀ ରୂପେ ମାନ୍ୟତା ପ୍ରାପ୍ତ ହୋଇଛନ୍ତି
ତହିଁ ବନଦେବୀମାନେ ॥ ୩୯ ॥

## ଶ୍ଳୋକ- ୪୦

ଶିଖରାସକ୍ତମେଘାନାଂ
ବ୍ୟଜ୍ୟନ୍ତେ ଯତ୍ର ବେଶ୍ମନାମ୍ ।
ଅନୁଗର୍ଜିତସନ୍ଦିଗ୍ଧାଃ
କରଣୈର୍ମୁରଜସ୍ୱନାଃ ॥ ୪୦ ॥

ଅନ୍ୱୟ - ଯତ୍ର ଶିଖରାସକ୍ତମେଘାନାଂ ବେଶ୍ମନାମ୍ ଅନୁଗର୍ଜିତସନ୍ଦିଗ୍ଧାଃ
ମୁରଜସ୍ୱନାଃ କରଣୈଃ ବ୍ୟଜ୍ୟନ୍ତେ ।

ପଦ୍ୟାନୁବାଦ -

ସେ ନଗ୍ରେ ମହଲ ଉପରେ ବାଦଲ
ରହୁଥିଲା ଛାଇ ହୋଇ
ଗୃହରେ ମୃଦଙ୍ଗ ନାଦ ମେଘ ଶବ୍ଦ
ପ୍ରାୟ ପ୍ରଥମେ ଶୁଭଇ ।
ପରେ ପରେ ତାଳ ଲୟ ସହ ମେଳ
ହୋଇଣ ସେଇ ଶବଦ
ଜଣାପଡେ ନୁହେଁ ମେଘ ଗରଜନ
ଅଟଇ ମୃଦଙ୍ଗ ବାଦ୍ୟ ॥ ୪୦ ॥

## ଶ୍ଳୋକ- ୪୧

ଯତ୍ର କଳ୍ପଦ୍ରୁମୈରେବ
ବିଲୋଳବିଟପାଂଶୁକୈଃ ।
ଗୃହଯନ୍ତ୍ରପତାକାଶ୍ରୀଃ
ଅପୌରାଦରନିର୍ମିତା ॥ ୪୧ ॥

ଅନ୍ୱୟ - ଯତ୍ର ବିଲୋଳବିଟପାଂଶୁକୈଃ କଳ୍ପଦ୍ରୁମୈଃ ଏବ
ଅପୌରାଦରନିର୍ମିତା ଗୃହଯନ୍ତ୍ରପତାକା ଶ୍ରୀଃ ଭବତି ।

ପଦ୍ୟାନୁବାଦ -

ନାଗରିକମାନେ ଗୃହର ଉପରେ
ବାନ୍ଧି ନଥିଲେ ପତାକା
ପତାକା ପରିକା ଲାଗୁଥିଲା କଳ୍ପ
ଦ୍ରୁମଙ୍କ ଦୋଳିତ ଶାଖା ॥ ୪୧ ॥

### ଶ୍ଲୋକ- ୪୨

ଯତ୍ର ସ୍ଫଟିକହର୍ମ୍ମ୍ୟେଷୁ
ନକ୍ତମାପାନଭୂମିଷୁ ।
ଜ୍ୟୋତିଷାଂ ପ୍ରତିବିମ୍ବାନି
ପ୍ରାପ୍ନୁବନ୍ତ୍ୟୁପହାରତାମ୍ ॥ ୪୨ ॥

ଅନ୍ୱୟ - ଯତ୍ର ନକ୍ତଂ ସ୍ଫଟିକହର୍ମ୍ମ୍ୟେଷୁ ଅପାନଭୂମିଷୁ ଜ୍ୟୋତିଷାଂ ପ୍ରତିବିମ୍ବାନି ଉପହାରତାମ୍ ପ୍ରାପ୍ନୁବନ୍ତୀ ।

ପଦ୍ୟାନୁବାଦ -

ସେ ନଗରେ ସ୍ଥିତ ସ୍ଫଟିକ ନିର୍ମିତ
ଭବନରେ ମଧୁଶାଳା
ରାତ୍ରେ ତାରକାଙ୍କ ପ୍ରତିବିମ୍ବରେ ସେ
ଭବନ ଝଟକୁଥିଲା ।
ତାରକାଙ୍କ ପ୍ରତି- ବିମ୍ବରେ ଭବନ
ଦିଶୁଥିଲା ଚମତ୍କାର
ପ୍ରତେ ହେଉଥିଲା ସତେ ଅବା ତାହା
ଉଜ୍ଜ୍ୱଳ ମୁକୁତା ହାର ॥ ୪୨ ॥

### ଶ୍ଲୋକ- ୪୩

ଯତ୍ରୌଷଧି ପ୍ରକାଶେନ
ନକ୍ତଂ ଦର୍ଶିତସଞ୍ଚରାଃ ।
ଅନଭିଜ୍ଞାସ୍ତମିସ୍ରାଣାଂ
ଦୁର୍ଦ୍ଦିନେଷ୍ୱଭିସାରିକାଃ ॥ ୪୩ ॥

ଅନ୍ୱୟ - ଯତ୍ର ଦୁର୍ଦ୍ଦିନେଷୁ ନକ୍ତମ୍ ଓଷଧିପ୍ରକାଶେନ ଦର୍ଶିତସଞ୍ଚରାଃ ଅଭିସାରିକାଃ ତମିସ୍ରାଣାଂ ଅନଭିଜ୍ଞାଃ ଭବନ୍ତି ।

ପଦ୍ୟାନୁବାଦ -

ନଗର ମାର୍ଗରେ ରାତ୍ରି ସମୟରେ
ଔଷଧୀୟ ବୃକ୍ଷମାନ
ରାତ୍ର ଅନ୍ଧକାର କରୁଥିଲେ ଦୂର
ପ୍ରକାଶ କରି ପ୍ରଦାନ ।
ପ୍ରକାଶ ଔଜ୍ଜଲ୍ୟ ଏତେ ନିରିମଳ
ଥିଲା ବରଷା ରାତ୍ରିରେ
ଅନ୍ଧକାର ବୋଧ ଅଭିସାରିକାଙ୍କୁ
ହେଉ ନଥିଲା ପଥରେ ॥ ୪୩ ॥

### ଶ୍ଳୋକ- ୪୪

ଯୌବନାନ୍ତଂ ବୟୋ ଯସ୍ମିନ୍-
ନାନ୍ତକଃ କୁସୁମାୟୁଧାତ୍ ।
ରତିଖେଦସମୁତ୍ପନ୍ନା
ନିଦ୍ରା ସଂଜ୍ଞାବିପର୍ଯ୍ୟୟଃ ॥ ୪୪ ॥

ଅନ୍ୱୟ - ଯସ୍ମିନ୍ ଅୟଃ ଯୌବନାନ୍ତଂ, କୁସୁମାୟୁଧାତ୍ (ଅନ୍ୟଃ) ଅନ୍ତକଃ ନ,
ରତିଖେଦମୁତ୍ପନ୍ନା ନିଦ୍ରା ଏବ ସଂଜ୍ଞାବିପର୍ଯ୍ୟୟଃ ।

ପଦ୍ୟାନୁବାଦ -

ଜୀବନର ଅନ୍ତ ପର୍ଯ୍ୟନ୍ତ ଯୌବନ
ଥିଲା ସେହି ନଗରରେ
କନ୍ଦର୍ପଙ୍କ ବିନା କେ କାହାର ବଧ
କରୁନଥିଲେ ସେଠାରେ ।
ସମ୍ଭୋଗୋପରାନ୍ତ ନିଦ୍ରା ଅତିରିକ୍ତ
ଅନ୍ୟ ଅଚେତ ଅବସ୍ଥା
ନଥିଲା ସେ ନଗ୍ରେ ନଗରବାସୀଙ୍କ
ଏ ଅଟଇ ସତ୍ୟ କଥା ॥ ୪୪ ॥

## ଶ୍ଲୋକ- ୪୫

ଭ୍ରୂଭେଦିଭିଃ ସକମ୍ପୋଷ୍ଠୈଃ
ଲଳିତାଙ୍ଗୁଳିତର୍ଜନୈଃ ।
ଯତ୍ର କୋପୈଃ କୃତାଃ ସ୍ତ୍ରୀଣାମ୍
ଆପ୍ରସାଦାର୍ଥିନଃ ପ୍ରିୟାଃ ॥ ୪୫ ॥

ଅନ୍ୱୟ - ଯତ୍ର ପ୍ରିୟାଃ ଭ୍ରୂଭେଦିଭିଃ ସକମ୍ପୋଷ୍ଠୈଃ ଲଳିତାଙ୍ଗୁଳିତର୍ଜନୈଃ ସ୍ତ୍ରୀଣାଂ କୋପୈଃ ଆପ୍ରସାଦାର୍ଥିନଃ କୃତାଃ ।

ପଦ୍ୟାନୁବାଦ -

ସେ ନଗ୍ରେ ରମଣୀ ତୀର୍ଯ୍ୟକ ଭ୍ରୂଠାଣି
କରି କମ୍ପିତ ଅଧର
କ୍ରୋଧରେ ପ୍ରେମୀକୁ ଅଙ୍ଗୁଳି ଦେଖାଇ
କରୁଥିଲେ ଥରହର ।
ଯେ ପର୍ଯ୍ୟନ୍ତ ସିଏ ନ କରିଛି ପ୍ରେମେ
ଆଦର ଓ ଆଲିଙ୍ଗନ
ସେ ପର୍ଯ୍ୟନ୍ତ ତାର ଉପରେ ଏପରି
ଚାଲିଥାଏ ଆକ୍ରମଣ ॥ ୪୫ ॥

## ଶ୍ଲୋକ- ୪୬

ସନ୍ତାନକତରୁଚ୍ଛାୟା-
ସୁପ୍ତବିଦ୍ୟାଧରାଧ୍ୱଗମ୍ ।
ଯସ୍ୟ ଚୋପବନ ବାହ୍ୟଂ
ଗନ୍ଧବଦ୍ ଗନ୍ଧମାଦନମ୍ ॥ ୪୬ ॥

ଅନ୍ୱୟ - ସନ୍ତାନକତରୁଚ୍ଛାୟାସୁପ୍ତବିଦ୍ୟାଧରାଧ୍ୱଗମ୍ ଗନ୍ଧବଦ୍ ଯସ୍ୟ ବାହ୍ୟମ୍ ଉପବନମ୍ ଅସ୍ତି ।

ପଦ୍ୟାନୁବାଦ -

ସେ ନଗରେ ରହି ଅଛି ଉପବନ
ପର୍ବତ ଗନ୍ଧମାଦନ
ସେହି ଉପବନେ ଛାୟା ପ୍ରଦାୟିନୀ
କଳ୍ପବୃକ୍ଷ ବିଦ୍ୟମାନ ।
ଚାଲି ଚାଲି ଥକି ପଡିଲେ ଛାୟାରେ
ପାନ୍ଥ ବିଦ୍ୟାଧରମାନେ
ଥକା ମେଣ୍ଟାଇବା ପାଇଁକି ବିଶ୍ରାମ
ନେଇଥାନ୍ତି ସେହି ସ୍ଥାନେ ॥ ୪୬ ॥

## ଶ୍ଳୋକ- ୪୭

ଅଥ ମୁନୟୋ ଦିବ୍ୟାଃ
ପ୍ରେକ୍ଷ୍ୟ ହୈମବତଂ ପୁରମ୍ ।
ସ୍ୱର୍ଗାଭିସନ୍ଧିସୁକୃତଂ
ବଞ୍ଚନାମିବ ମେନିରେ ॥ ୪୭ ॥

ଅନ୍ୱୟ - ଅଥ ତେ ଦିବ୍ୟାଃ ମୁନୟଃ ହୈମବତଂ ପୀରଂ ପ୍ରେକ୍ଷ୍ୟ ସ୍ୱର୍ଗାଭିସନ୍ଧିସୁକୃତଂ ବଞ୍ଚନାମ୍ ଇବ ମେନିରେ ।

ପଦ୍ୟାନୁବାଦ -

ହିମାଦ୍ରୀ ଉପରେ ଦେଖି ସେ ନଗର
ସପ୍ତର୍ଷି ମନେ ଭାବନ୍ତି
ସ୍ୱର୍ଗଠୁ ସୁନ୍ଦର ଅଟେ ଏ ନଗର
ହେଲା ନୂଆ ଅନୁଭୂତି ।
ଭାବନ୍ତି ମନରେ ସ୍ୱର୍ଗ ପ୍ରାପ୍ତି ପାଇଁ
ଅର୍ଜିଥିଲେ ଯେତେ ପୁଣ୍ୟ
ବୃଥାହେଲା ସବୁ ଠକିଗଲେ ଆମ୍ଭେ
କରି ଏ ନଗ୍ର ଦର୍ଶନ ॥ ୪୭ ॥

### ଶ୍ଳୋକ -୪୮

ତେ ସଦ୍ମନି ଗିରେର୍ବେଗାଦ୍
ଉନ୍ମୁଖଦ୍ୱାଃସ୍ଥବୀକ୍ଷିତା ।
ଅବତେରୁର୍ଜଟାଭାରୈଃ
ଲିଖିତାନଳନିଶ୍ଚଳୈଃ ॥ ୪୮ ॥

ଅନ୍ୱୟ - ଲିଖିତାନଳନିଶ୍ଚଳୈଃ ଜଟାଭାରୈଃ ଉପଲକ୍ଷିତାଃ ତେ ଉନ୍ମୁଖଦ୍ୱାଃସ୍ଥବୀକ୍ଷିତାଃ ସନ୍ତଃ ଗିରେଃ ସଦ୍ମନି ବେଗାଦ୍ ଅବତେରୁଃ ।

ପଦ୍ୟାନୁବାଦ -

ଚିତ୍ରରେ ନିଶ୍ଚଳ ଅଙ୍କିତ ଅନଳ
ଶିଖା ସମ ଜଟାଯୁକ୍ତ
ସପ୍ତଋଷି ଗଣ ଅତ୍ୟନ୍ତ ବେଗରେ
ହିମାଳୟପରେ ସ୍ଥିତ ।
ଭବନ ଉପରେ ଓହ୍ଲାଇଲେ ଯେବେ
ଦ୍ୱାରପାଳମାନେ ତହିଁ
ଉପରକୁ ମୁହଁ କରି ଅନେଇଲେ
ଆଶ୍ଚର୍ଯ୍ୟ ଚକିତ ହୋଇ ॥ ୪୮ ॥

### ଶ୍ଳୋକ- ୪୯

ଗଗନାଦବତୀର୍ଣ୍ଣା ସା
ଯଥାବୃଦ୍ଧପୁରଃସରା ।
ତୋୟାନ୍ତର୍ଭାସ୍କରାଳୀବ
ରେଜେ ମୁନିପରମ୍ପରା ॥ ୪୯ ॥

ଅନ୍ୱୟ - ଗଗନାଦ୍ ଅବତୀର୍ଣ୍ଣା ଯଥାବୃଦ୍ଧପୁରଃସରା ସା ମୁନିପରମ୍ପରା ତୋୟାନ୍ତଃ ଭାସ୍କରାଳୀ ଇବ ରେଜେ ।

ପଦ୍ୟାନୁବାଦ -

ବଡ ପରେ ସାନ କ୍ରମାବତରଣ
ସପ୍ତଋଷି ମାନଙ୍କର
ଦୃଶ୍ୟ ଥିଲା ଏକ ଅତି ଆକର୍ଷକ
ମହାନ ଋଷିପ୍ରଥାର ।
ପ୍ରବାହିତ ଜଳ ମଧ୍ୟେ ସୂର୍ଯ୍ୟଙ୍କର
ଏକ ପ୍ରତିବିମ୍ବ ପଂକ୍ତି
ପ୍ରତେ ହେଉଥିଲା ସତେକି ଜଳର
ଲହରୀରେ ବହୁଛନ୍ତି ॥ ୪୯ ॥

**ଶ୍ଳୋକ- ୫୦**

ତାନର୍ଘ୍ୟାନର୍ଘ୍ୟମାଦାୟ
ଦୂରାତ୍‌ପ୍ରତ୍ୟୁଦ୍‌ୟୌ ଗିରିଃ ।
ନମୟନ୍ସାରଗୁରୁଭିଃ
ପାଦନ୍ୟାସୈର୍ବସୁନ୍ଧରାମ୍ ॥ ୫୦ ॥

ଅନ୍ୱୟ - ଗିରିଃ ଅର୍ଘ୍ୟମ୍ ଆଦାୟ ସାରଗୁରୁଭିଃ ପାଦନ୍ୟାସୈଃ ବସୁନ୍ଧରାଂ ନମୟନ୍ ଅର୍ଘ୍ୟାନ୍ ତାନ୍ ଦୂରାତ୍ ପ୍ରତ୍ୟୁଦ୍‌ୟୌ ।

ପଦ୍ୟାନୁବାଦ -

ଅର୍ଘ୍ୟ ହସ୍ତେ ଧରି ହିମାଳୟ ଗିରି
ସପ୍ତଋଷିଙ୍କର ପାଇଁ
ଯାଇ ଦୂରପଥ କରିଲେ ସ୍ୱାଗତ
ସପ୍ତଋଷିଙ୍କୁ ସେ ତହିଁ ।
ଚାଲିବା ସମୟେ ହିମବାନଙ୍କର
ଭାରଯୁକ୍ତ ପଦପାତେ
ଦବିଗଲା ପ୍ରାୟ ଲାଗିଲା ଧରିତ୍ରୀ
ପ୍ରତି ପଦପାତ ଅନ୍ତେ ॥ ୫୦ ॥

### ଶ୍ଳୋକ- ୫୧

ଧାତୁତାମ୍ରାଧରଃ
ପ୍ରାଂଶୁର୍ଦେବଦାରୁବୃହଦଭୁଜଃ ।
ପ୍ରକୃତ୍ୟୈବ ଶିଳୋରସ୍କଃ
ସୁବ୍ୟକ୍ତୋ ହିମବାନିତି ॥ ୫୧ ॥

ଅନ୍ୱୟ - ଧାତୁତାମ୍ରାଧରଃ ପ୍ରାଂଶୁଃ ଦେବଦାରୁବୃହଦଭୁଜଃ ପ୍ରକୃତ୍ୟା
ଏବ ଶିଳୋରସ୍କଃ ଅତଃ ହିମବାନ୍ ଇତି ସୁବ୍ୟକ୍ତଃ ଅଭୂତ୍

ପଦ୍ୟାନୁବାଦ -

ଗେରୁ ତାମ୍ର ବର୍ଣ୍ଣ ଆଦି ଶିଳାମାନ
ଥିଲେ ଅଧର ସ୍ୱରୂପ
ସୁଉଚ୍ଚ ଦେବ୍‌ଦାରୁ ବୃକ୍ଷମାନେ ସତେ
ଅବା ତା ଭୁଜାନୁରୂପ ।
ସ୍ୱଭାବତଃ ତାର ବକ୍ଷଦେଶ ଥିଲା
ଦୃଢ ପ୍ରସ୍ତରେ ନିର୍ମିତ
ଦେଖି ଏ ସମସ୍ତ ଜାଣିଲେ ସପ୍ତର୍ଷି
ଏହା ହିମ ପରବତ ॥ ୫୧ ॥

### ଶ୍ଳୋକ- ୫୨

ବିଧିପ୍ରଯୁକ୍ତସତ୍କାରୈଃ
ସ୍ୱୟଂ ମାର୍ଗସ୍ୟ ଦର୍ଶକଃ ।
ସ ତୈରାକ୍ରମୟାମାସ
ଶୁଦ୍ଧାନ୍ତଂ ଶୁଦ୍ଧକର୍ମଭିଃ ॥ ୫୨ ॥

ଅନ୍ୱୟ - ସଃ ବିଧିପ୍ରଯୁକ୍ତସତ୍କାରୈଃ ଶୁଦ୍ଧକର୍ମଭିଃ ତୈଃ ସ୍ୱୟଂ ମାର୍ଗସ୍ୟ ଦର୍ଶକଃ ସନ୍ ଶୁଦ୍ଧାନ୍ତମ୍ ଆକ୍ରମୟାମାସ ।

ପଦ୍ୟାନୁବାଦ -

ବିଧି ଅନୁସାରେ ଅତିଥି ସତ୍କାର
କରି ସ୍ୱୟଂ ହିମାଳୟ
ପଥପ୍ରଦର୍ଶକ ହୋଇ ସପ୍ତର୍ଷିଙ୍କୁ
ଘେନିଗଲେ ସ୍ୱ ଆଳୟ ॥ ୫୨ ॥

**ଶ୍ଳୋକ- ୫୩**

ତତ୍ର ବେତ୍ରାସନାସୀନାନ୍
କୃତାସନପରିଗ୍ରହଃ ।
ଇତ୍ୟୁବାଚେଶ୍ୱରାନ୍ୱାଚଂ
ପ୍ରାଞ୍ଜଳିର୍ଭୂଧରେଶ୍ୱରଃ ॥ ୫୩ ॥

ଅନ୍ୱୟ - ତତ୍ର ବେତ୍ରାସନାସୀନାନ୍ ଈଶ୍ୱରାନ୍ ଭୂଧରେଶ୍ୱରଃ
କୃତାସନପରିଗ୍ରହଃ ପ୍ରାଞ୍ଜଳିଃ ସନ୍ ଇତି ଉବାଚ ।

ପଦ୍ୟାନୁବାଦ -

ଏଥୁ ଅନନ୍ତରେ ବେତ୍ର ଆସନରେ
ବସାଇ ସପ୍ତରଷିଙ୍କୁ
ନିଜେ ଗିରିବର ବସି ଯୋଡି କର
ଆରମ୍ଭିଲେ କହିବାକୁ ॥ ୫୩ ॥

**ଶ୍ଳୋକ- ୫୪-୫୫**

ଅପମେଘୋଦୟଂ ବର୍ଷମ୍
ଅଦୃଷ୍ଟକୁସୁମ ଫଳଂ ।
ଅତର୍କିତୋପପନ୍ନଂ ବୋ
ଦର୍ଶନଂ ପ୍ରତିଭାତି ମେ ॥ ୫୪ ॥

ମୁଢଂ ବୁଦ୍ଧମିବାତ୍ମନଂ
ହୈମୀଭୂତମିବାୟସମ୍ ।
ଭୂମେର୍ଦିବମିବାରୁଢଂ
ମନ୍ୟେ ଭବଦନୁଗ୍ରହାତ୍ ॥ ୫୫ ॥

ଅନ୍ୱୟ - ଅତର୍କିତୋପପନ୍ନଂ ବଃ ଦର୍ଶନଂ ମେ ଅପମେଘୋଦୟଂ ବର୍ଷମ୍,
ଅଦୃଷ୍ଟକୁସୁମଂ ଫଳଂ ପ୍ରତିଭାତି ॥ ୫୪ ॥
ଭବଦନୁଗ୍ରହାତ୍ ଆତ୍ମାନଂ ମୁଢଂ ବୁଦ୍ଧଂ ଇବ, ଆୟସଂ ହୈମୀଭୂତମ୍ ଇବ ଭୂମେଃ
ଦିବମ୍ ଆରୁଢମ୍ ଇବ, ମନ୍ୟେ ॥ ୫୫ ॥

ପଦ୍ୟାନୁବାଦ -

ଆପଣମାନଙ୍କ ଏହି ଆକସ୍ମିକ
ଦର୍ଶନ ସତେ ଯେପରି
ଲାଗୁଅଛି ମୋତେ ବିନା ମେଘେ ବୃଷ୍ଟି
ବିନା ପୁଷ୍ପେ ଫଳ ପରି ॥ ୫୪ ॥
ଆପଣମାନଙ୍କ କୃପାରୁ ମୁଁ ମୂର୍ଖ
ମଣେ ନିଜେ ଜ୍ଞାନବାନ
ଥିଲି ମୁହିଁ ଲୌହ ସତେ ଅବା ଆଜ
ହୋଇଯାଇଛି ସୁବର୍ଣ୍ଣ ।
ଭୂଲୋକବାସୀ ମୁଁ କାହିଁପାଇଁ ଆଜି
ଲାଗଇ ମୋତେ ଏପରି
ଅକସ୍ମାତେ ସତେ ଅବା ମୁଁ ପହଞ୍ଚି
ଯାଇଛି କି ସ୍ୱର୍ଗପୁରୀ ॥ ୫୫ ॥

**ଶ୍ଳୋକ- ୫୬**

ଅଦ୍ୟପ୍ରଭୃତି ଭୂତାନାମ୍
ଅଧିଗମ୍ୟୋଽସ୍ମି ଶୁଦ୍ଧୟେ ।
ଯଦଧ୍ୟାସିତମର୍ହଦ୍ଭିଃ
ତଦ୍ଧି ତୀର୍ଥ ପ୍ରଚକ୍ଷତେ ॥ ୫୬ ॥

ଅନ୍ୱୟ- ଅଦ୍ୟପ୍ରଭୃତି ଭୂତାନାଂ ଶୁଦ୍ଧୟେ ଅଧିଗମ୍ୟଃ ଅସ୍ମି।
ହି ଯଦ୍ ଅର୍ହଦ୍ଭିଃ ଅଧ୍ୟାସିତଂ, ତତ୍ ତୀର୍ଥଂ ପ୍ରଚକ୍ଷତେ।

ପଦ୍ୟାନୁବାଦ -

ଆଜିଠାରୁ ମୁହିଁ ପ୍ରାଣୀମାନଙ୍କର
ପୂତ ଆତ୍ମଶୁଦ୍ଧି ସ୍ଥାନ
ପ୍ରକୃତରେ ହୋଇ ଗଲି ବୋଲି ମନେ
ଭାବୁଅଛି ଏହା ଜାଣ।
କାରଣ ଯେ ସ୍ଥାନେ ମୁନିଋଷିମାନେ
କରିଥାନ୍ତି ଅବସ୍ଥାନ
କଥିତ ଅଛି ସେ ସ୍ଥାନକୁ ସମସ୍ତେ
କହିଥାନ୍ତି ତୀର୍ଥସ୍ଥାନ ॥ ୫୬ ॥

### ଶ୍ଳୋକ- ୫୭

ଅବୈମି ପୂତମାତ୍ମନଂ
ଦ୍ୱୟେନୈବ ଦ୍ୱିଜୋତ୍ତମାଃ।
ମୂର୍ଦ୍ଧ୍ନି ଗଙ୍ଗା ପ୍ରପାତେନ
ଧୌତପାଦାମ୍ଭସା ଚ ବଃ ॥ ୫୭ ॥

ଅନ୍ୱୟ - ହେ ଦ୍ୱିଜୋତ୍ତମାଃ। ମୂର୍ଦ୍ଧ୍ନି ଗଙ୍ଗାପ୍ରପାତେନ ବଃ ଧୌତପାଦାମ୍ଭସା
ଚ ଦ୍ୱୟେନ ଏବ ଆତ୍ମାନଂ ପୂତମ ଅବୈମି।

ପଦ୍ୟାନୁବାଦ -

ହେ ସପ୍ତର୍ଷିଗଣ ନିଜକୁ ପାବନ
ବୋଲି ଭାବେ ଯେଉଁ ପାଇଁ
ସେ ଦୁଇ କାରଣ ଏକ ପରେ ଆନ
କହୁଛି ଶୁଣନ୍ତୁ ମୁହିଁ।

ପ୍ରଥମ କାରଣ ପୂତ ମନ୍ଦାକିନୀ
ବହେ ମୋ ବକ୍ଷଦେଶରେ
ଦ୍ୱିତୀୟେ ଆପଣ ମାନଙ୍କ ଚରଣ-
ଧୌତ ଜଳର ସ୍ପର୍ଶରେ ॥

### ଶ୍ଳୋକ- ୫୮

ଜଙ୍ଗମଂ ପ୍ରୈଷ୍ୟଭାବେ ବଃ
ସ୍ଥାବରଂ ଚରଣାଙ୍କିତମ୍ ।
ବିଭକ୍ତାନୁଗ୍ରହଂ ମନ୍ୟେ
ଦ୍ୱିରୂପମପି ମେ ବପୁଃ ॥ ୫୮ ॥

ଅନ୍ୱୟ- ହେ ମୁନୟଃ ! ଦ୍ୱିରୂପମ୍ ଅପି ମେ ବପୁଃ, ଜଙ୍ଗମଂ ବଃ ପ୍ରୈଷ୍ୟଭାବେ, ସ୍ଥାବରଂ ଚରଣାଙ୍କିତମ୍, ଅତଃ ବିଭକ୍ତାନୁଗ୍ରହଂ ମନ୍ୟେ ।

ପଦ୍ୟାନୁବାଦ -

ସପ୍ତର୍ଷି ପ୍ରବର ଶୁଣନ୍ତୁ ମୋ ଗିର
ହୁଏ ଯା ମୋ ଅନୁଭବ
ଆପଣ ମାନଙ୍କ ମୋର ଏ ଶରୀର
ପ୍ରତି ଅଛି ଦୟାଭାବ ।
ମୋର ଏ ଜଙ୍ଗମ ଶରୀରକୁ ନିଜ
ସେବାରେ ଲଗାଇଛନ୍ତି
ସ୍ଥାବର ଶରୀର ଉପରେ ମୋହର
ପୂତ ପଦ ରଖିଛନ୍ତି ॥ ୫୮ ॥

### ଶ୍ଳୋକ- ୫୯

ଭବତ୍ସମ୍ଭାବନୋତ୍ଥାୟ
ପରିତୋଷାୟ ମୂର୍ଚ୍ଛତେ ।
ଅପି ବ୍ୟାପ୍ତଦିଗନ୍ତାନି
ନାଙ୍ଗାନି ପ୍ରଭବନ୍ତି ମେ ॥ ୫୯ ॥

ଅନ୍ୱୟ - ବ୍ୟାପ୍ତଦିଗନ୍ତାନି ଅପି ମେ ଅଙ୍ଗାନି ଭବତ୍ସମ୍ଭାବନୋତ୍ଥାୟ ମୂର୍ଚ୍ଛିତେ
ପରିତୋଷାୟ ନ ପ୍ରଭବନ୍ତି।

ପଦ୍ୟାନୁବାଦ -

ଆପଣ ମାନଙ୍କ ଆଗମନ ଆଉ
କୃପା କାରଣରୁ ସତେ
କେତେ ଯେ ଆନନ୍ଦ ହୁଏ ଅନୁଭବ
ବର୍ଣ୍ଣିବି ତାହା କେମନ୍ତେ।
ଦିଗନ୍ତ ପର୍ଯ୍ୟନ୍ତ ହୋଇଛି ବିସ୍ତୃତ
ଏତେ ବଡ ମୋର ଅଙ୍ଗ
ସେ ସବୁ ଆନନ୍ଦ କରିପାରେ ନାହିଁ
ପୂର୍ଣ୍ଣରୂପେ ଅନୁଭବ ॥ ୫୯ ॥

ଶ୍ଲୋକ- ୬୦

ନକେବଳଂ ଦରୀସଂସ୍ଥଂ
ଭାସ୍ୱତାଂ ଦର୍ଶନେବ ବଃ।
ଅନ୍ତର୍ଗତମପାସ୍ତଂ ମେ
ରଜସୋଽପିପରଂ ତମଃ ॥ ୬୦ ॥

ଅନ୍ୱୟ - ଭାସ୍ୱତାଂ ବଃ ଦର୍ଶନେନ କେବଳଂ ଦରୀସଂସ୍ଥଂ ତମଃ ନ ଅପାସ୍ତଂ,
କିନ୍ତୁ ମେ ଅନ୍ତର୍ଗତଂ ରଜସଃ ପରଂ ତମଃ ଅପି ଅପାସ୍ତମ୍

ପଦ୍ୟାନୁବାଦ -

ଆପଣମାନଙ୍କ ପରି ତେଜସ୍ୱୀଙ୍କ
ଦର୍ଶନ ହେତୁରୁ ମୋର
ଗୁମ୍ଫାମାନଙ୍କରେ ଥିବା ଅନ୍ଧକାର
କେବଳ ହୋଇନି ଦୂର।

ସେ ତେଜରେ ମୋର　　　ମନ ମଧ୍ୟେ ଥିବା
　　　　ଅଜ୍ଞାନ ରୂପୀ ଅନ୍ଧାର
ଆପଣମାନଙ୍କ　　　　　ଦର୍ଶନ କରନ୍ତେ
　　　　ହୋଇଛି ଅଚିରେ ଦୂର ॥ ୬୦ ॥

### ଶ୍ଳୋକ- ୬୧

କର୍ତ୍ତବ୍ୟଂ ବୋ ନ ପଶ୍ୟାମି
ସ୍ୟାଚ୍ଚେତ୍କିଂ ନୋପପଦ୍ୟତେ ।
ମନ୍ୟେ ମତ୍ପାବନାୟୈବ
ପ୍ରସ୍ଥାନଂ ଭବତାମିହ ॥ ୬୧ ॥

ଅନ୍ୱୟ - କର୍ତ୍ତବ୍ୟଂ ବଃ ନ ପଶ୍ୟାମି, ଅଥ ସ୍ୟାତ୍ ଚେତ୍ କିଂ ନ ଉପପଦ୍ୟତେ । ମତ୍ପାବନାୟ ଏବ ଭବତାମ୍ ଇହ ପ୍ରସ୍ଥାନଂ ମନ୍ୟେ ।

ପଦ୍ୟାନୁବାଦ -

ଯାହା ମୁଁ ଭାବୁଛି　　　　　ଆପଣମାନଙ୍କ
　　　　ନାହିଁ ଏଠି କାର୍ଯ୍ୟ କିଛି
ଥିଲେ କିଛି କାର୍ଯ୍ୟ　　　　ସମ୍ପନ୍ନ କରିବା
　　　　ସାମର୍ଥ୍ୟ ନିଜର ଅଛି ।
ମୋର ଯା ଚିନ୍ତନ　　　　ମୋ ଅଙ୍ଗ ପାବନ
　　　　ପାଇଁକି ଆପଣମାନେ
ଅନୁଗ୍ରହ ବାରି　　　　　ବର୍ଷିବା ପାଇଁକି
　　　　ଆସିଛନ୍ତି ଏହି ସ୍ଥାନେ ॥ ୬୧

### ଶ୍ଳୋକ- ୬୨

ତଥାପି ତାବତ୍କସ୍ମିଂଶ୍ଚିଦ୍
ଆଜ୍ଞାଂ ମେ ଦାତୁମର୍ହଥ ।
ବିନିଯୋଗପ୍ରସାଦା ହି
କିଙ୍କରାଃ ପ୍ରଭବିଷ୍ଣୁଷୁ ॥ ୬୨ ॥

ଅନ୍ୱୟ - ତଥାପି କସ୍ମିଶ୍ଚିଦ୍ ଆଜ୍ଞାଂ ତାବଦ୍ ମେ ଦାତୁମ୍ ଅର୍ହଥ। ହି କିଙ୍କରାଃ ପ୍ରଭବିଷ୍ଣୁଷୁ ବିନିଯୋଗପ୍ରସାଦାଃ ଭବନ୍ତି।

ପଦ୍ୟାନୁବାଦ -

ତଥାପି ଭାବୁଛି ମୋତେ କାର୍ଯ୍ୟ କିଛି
ଦିଅନ୍ତୁ ଆପଣମାନେ
ନିଜକୁ ସେବକ ଆପଣମାନଙ୍କ
ଭାବୁଅଛି ମୁହିଁ ମନେ।
ସେବକ ତା କାର୍ଯ୍ୟ କରିଲେ ସଂପନ୍ନ
ସ୍ୱାମୀମାନଙ୍କର ମନ
ସେବକ ନିଯୁକ୍ତି କରିଥିବା ହେତୁ
ହୁଅଇ ଅତି ପ୍ରସନ୍ନ ॥ ୬୨ ॥

### ଶ୍ଲୋକ- ୬୩

ଏତେ ବୟମମୀ ଦାରାଃ
କନ୍ୟେୟଂ କୁଳଜୀବିତମ୍।
ବ୍ରୂତ ଯେନାତ୍ର ବଃ କାର୍ଯମ୍
ଅନାସ୍ଥା ବାହ୍ୟବସ୍ତୁଷୁ ॥ ୬୩ ॥

ଅନ୍ୱୟ - ଏତେ ବୟମ୍, ଅମୀ ଦାରାଃ, ଇୟଂ କୁଳଜୀବିତଂ କନ୍ୟା, ଅତ୍ର ଯେନ ବଃ କାର୍ଯଂ ଭବତି, ବ୍ରୂତ, ବାହ୍ୟବସ୍ତୁଷୁ ଅନାସ୍ଥା।

ପଦ୍ୟାନୁବାଦ -

ସ୍ୱୟଂ ମୁଁ ଯେ ଏହି ଅଛି ଠିଆ ହୋଇ
ଏମାନେ ସବୁ ମୋ ପତ୍ନୀ
ଏ ଆମ କୁଳର ଜୀବନ ସମାନ
ଅଟଇ ମୋର ନନ୍ଦିନୀ।

ଯଦି ସେମାନଙ୍କ ଦ୍ୱାରା ଆପଣଙ୍କ
କାର୍ଯ୍ୟ କିଛି ହୋଇପାରେ
କରନ୍ତୁ ଆଦେଶ ପାଳନ ଅବଶ୍ୟ
କରିବେ ବିନା ଦ୍ୱିଧାରେ ।
ବାହ୍ୟବସ୍ତୁ ଯାହା ଅଛି ସବୁ ତାହା
ଆପଣମାନଙ୍କ ପାଇଁ
ପ୍ରୟୋଜନ ବୋଲି ଏକଥା ମୋହର
ବିଶ୍ୱାସ ବି ହେଉନାହିଁ ॥ ୬୩ ॥

## ଶ୍ଳୋକ -୬୪

ଇତ୍ୟୂଚିବାଂସ୍ତମେବାର୍ଥ
ଗୁହାମୁଖବିସର୍ପିଣା ।
ଦ୍ୱିରିବ ପ୍ରତିଶବ୍ଦେନ
ବ୍ୟାଜହାର ହିମାଳୟ ॥ ୬୪ ॥

ଅନ୍ୱୟ - ଇତି ଉଚିତବାନ୍ ହିମାଳୟଃ ଗୁହାମୁଖବିସର୍ପିଣା
ପ୍ରତିଶବ୍ଦେନ ତମ୍ ଏବ ଅର୍ଥ ଦ୍ୱିଃ ବ୍ୟାଜହାର ଇବ ।

ପଦ୍ୟାନୁବାଦ -

ଏତିକି କହିବା ଅନ୍ତେ ହିମାଳୟ
କଥା ତରଙ୍ଗର ଧ୍ୱନି
ତା ବକ୍ଷରେ ସ୍ଥିତ ଗୁମ୍ଫାରେ ପ୍ରବେଶି
ସୃଷ୍ଟିକଲା ପ୍ରତିଧ୍ୱନି ।
ସେ ପ୍ରତିଧ୍ୱନିରୁ ପ୍ରତେ ହେଉଥିଲା
ସତେ କି ସେ ଗିରିବର
ନିଜ କହିଥିବା କଥାକୁ କି ଅବା
କହୁଛନ୍ତି ଦୁଇବାର ॥ ୬୪ ॥

### ଶ୍ଲୋକ- ୬୫

ଯଥାଙ୍ଗିରସମଗ୍ରଣ୍ୟମ୍
ଉଦାହରଣବସ୍ତୁଷୁ।
ଋଷୟଃ ନୋଦୟାମାସୁଃ
ପ୍ରତ୍ୟୁବାଚ ସ ଭୂଧରମ୍ ॥ ୬୫ ॥

ଅନ୍ୱୟ- ଅଥ ଋଷୟଃ ଉଦାହରଣବସ୍ତୁଷୁ ଅଗ୍ରଣ୍ୟମ୍ ଅଙ୍ଗିରସଂ
ନୋଦୟାମାସୁଃ। ସ ଭୂଧରଂ ପ୍ରତ୍ୟୁବାଚ।

ପଦ୍ୟାନୁବାଦ -

କଥା କହିବାରେ ଅତ୍ୟନ୍ତ କୁଶଳ
ଅଟନ୍ତି ଅଙ୍ଗିରା ଋଷି
ହିମାଳୟ ସହ କଥା ହେବା ପାଇଁ
ତାଙ୍କୁ ବାଛିଲେ ସପ୍ତର୍ଷି।
ହିମାଳୟ ପାଶେ ଅଙ୍ଗିରା ଋଷିଙ୍କୁ
ସପ୍ତର୍ଷି କଲେ ପ୍ରେରଣ
ତାପରେ ଅଙ୍ଗିରା ପର୍ବତରାଜଙ୍କୁ
ବୋଇଲେ ଏହି ବଚନ ॥ ୬୫ ॥

### ଶ୍ଲୋକ- ୬୬

ଉପପନ୍ନମିଦଂ ସର୍ବମ୍
ଅତଃ ପରମପି ତ୍ୱୟି।
ମନସଃ ଶିଖରାଣାଂ ଚ
ସଦୃଶୀ ତେ ସମୁନ୍ନତିଃ ॥ ୬୬ ॥

ଅନ୍ୱୟ - ଇଦଂ ସର୍ବମ୍ ଅତଃ ପରମ୍ ଅପି ତ୍ୱୟି ଉପପନ୍ନଂ।
ତେ ମନସଃ ଶିଖରାଣାଂ ଚ ସମୁନ୍ନତିଃ ସଦୃଶୀ।

ପଦ୍ୟାନୁବାଦ -

ଯାହା ବି କହିଛ ଉଚିତ କହିଛ
ଆହେ ହିମଗିରିବର
ଏହାଠୁ ଅଧିକ ଯାହା ବି କହିବ
ତାହା ବି ଯୋଗ୍ୟ ତୁମ୍ଭର ।
କାରଣ ତୁମ୍ଭର ଉନ୍ନତ ଶିଖର
ସର୍ବଦା ଉଚ୍ଚା ଦିଶଇ
ସେହିପରି ତୁମ୍ଭ ମନ ଓ ହୃଦୟ
ସର୍ବଦା ଉଚ୍ଚା ଅଟଇ ॥ ୬୬ ॥

### ଶ୍ଳୋକ- ୬୭

ସ୍ଥାନେ ତ୍ୱାଂ ସ୍ଥାବରାତ୍ମନଂ
ବିଷ୍ଣୁମାହୁସ୍ତଥା ହି ତେ ।
ଚରାଚରଣାଂ ଭୂତାନାଂ
କୁକ୍ଷିରାଧାରତାଂ ଗତଃ ॥ ୬୭ ॥

ଅନ୍ୱୟ - ସ୍ଥାବରାତ୍ମନଂ ତ୍ୱାଂ ବିଷ୍ଣୁମ୍ ଆହୁଃ, ସ୍ଥାନେ । ତଥା ହି ତେ କୁକ୍ଷିଃ ଚରାଚରାଣାଂ ଭୂତାନାମ୍ ଆଧାରତାଂ ଗତଃ ଅସ୍ତିଃ ।

ପଦ୍ୟାନୁବାଦ -

ତୁମ୍ଭଙ୍କୁ ସ୍ଥାବର ରୂପ ବିଷ୍ଣୁଙ୍କର
କୁହାଯାଏ ତା ଉଚିତ
କାରଣ କୋଳରେ ଧରିଅଛ ପ୍ରାଣୀ
ଚର ଅଚର ସମସ୍ତ ॥ ୬୭ ॥

## ଶ୍ଳୋକ- ୬୮

ଗାମଧାସ୍ୟତ୍ କଥଂ ନାଗୋ
ମୃଣାଳମୃଦୁଭିଃ ଫଣୈଃ ।
ଆ ରସାତଳମୂଳାତ୍ ତ୍ୱମ୍
ଅବାଲମ୍ବିଷ୍ୟଥା ନ ଚେତ୍ ॥ ୬୮ ॥

ଅନ୍ୱୟ - ନାଗଃ ମୃଣାଳମୃଦୁଭିଃ ଫଣୈଃ ଗାଂ କଥମ୍ ଅଧାସ୍ୟତ୍ ?
ତ୍ୱମ୍ ଆ ରସାତଳମୂଳାଦ୍ ନ ଅବାଲମ୍ବିଷ୍ୟଥାଃ ଚେତ୍ ।

ପଦ୍ୟାନୁବାଦ -

ହେ ହିମ ପର୍ବତ ପାତାଳ ପର୍ଯ୍ୟନ୍ତ
ପୃଥିବୀର ଏହି ଭାର
ଧରିଥିବା ହେତୁ ଶେଷନାଗ ପରେ
ହେଉନି ଏତେ ଅସର ।
ମୃଣାଳର ନାଳ ପରି ସେ କୋମଳ
ଫଣା ଅଟଇ ତାଙ୍କର
କେବେ କଣ ସହି ପାରନ୍ତା କି ସେହି
ପୃଥିବୀ ମାତାଙ୍କ ଭାର ? ॥ ୬୮ ॥

## ଶ୍ଳୋକ- ୬୯

ଅଚ୍ଛିନ୍ନାମଳସନ୍ତାନାଃ
ସମୁଦ୍ରୋର୍ମ୍ମ୍ୟନିବାରିତାଃ ।
ପୁନନ୍ତି ଲୋକାନ୍ପୁଣ୍ୟତ୍ୱାତ୍
କୀର୍ତ୍ତୟଃ ସରିତଶ୍ଚ ତେ ॥ ୬୯ ॥

ଅନ୍ୱୟ - ଅଚ୍ଛିନ୍ନାମଳସନ୍ତାନାଃ ସମୁଦ୍ରୋର୍ମ୍ମ୍ୟନିବାରିତାଃ ତେ
କୀର୍ତ୍ତୟଃ ସରିତଶ୍ଚ ପୁଣ୍ୟତ୍ୱାତ୍ ଲୋକାନ୍ ପୁନନ୍ତି ।

ପଦ୍ୟାନୁବାଦ -

ନିତ୍ୟ ନିରିମଳ ପ୍ରବାହ ସମ୍ପନ୍ନା
ସାଗର ଉର୍ମି ଚୁମ୍ବିତା
ତୁମ୍ଭଠୁ ନିର୍ଗତା ସକଳ ସରିତା
ପବିତ୍ରତା ପାଇଁ ଖ୍ୟାତା ।
ପବିତ୍ରତା ଦ୍ୱାରା ଲୋକଙ୍କୁ ଯେପରି
କରିଅଛନ୍ତି ପବିତ୍ର
ତୁମ୍ଭ କୀର୍ତ୍ତିଚୟ ଲୋକଙ୍କୁ ସେପରି
କରିବ ମଧ ପବିତ୍ର ॥ ୬୯ ॥

### ଶ୍ଳୋକ- ୭୦

ଯଥୈବ ଶ୍ଳାଘ୍ୟତେ ଗଙ୍ଗା
ପାଦେନ ପରମେଷ୍ଠିନଃ ।
ପ୍ରଭବେଣ ଦ୍ୱିତୀୟେନ
ତଥୈବୋଚ୍ଛିରସା ତ୍ୱୟା ॥ ୭୦ ॥

ଅନ୍ୱୟ - ଗଙ୍ଗା ପ୍ରଭବେଣ ପରମେଷ୍ଠିନଃ ପାଦେନ ଯଥା ଏବ ଶ୍ଳାଘ୍ୟତେ, ତଥା ଏବ ଦ୍ୱିତୀୟେନ ପ୍ରଭବେଣ ଉଚ୍ଛିରସା ତ୍ୱୟା ଶ୍ଳାଘ୍ୟତେ ।

ପଦ୍ୟାନୁବାଦ -

ବିଷ୍ଣୁପଦୁ ଜାତ କାରଣରୁ ଗଙ୍ଗା
ମଣେ ସେ ଆଦରଣୀୟା
ତୁମ୍ଭର ଉନ୍ନତ ଶିରରୁ ସଂଭୂତା
ବୋଲି ଭାବେ ପୂଜନୀୟା ॥ ୭୦ ॥

## ଶ୍ଳୋକ- ୭୧

ତୀର୍ଯଗୂର୍ଦ୍ଧ୍ୱମଧସ୍ତାଚ୍ଚ
ବ୍ୟାପକୋ ମହିମା ହରେଃ ।
ତ୍ରିବିକ୍ରମୋଦ୍ୟତସ୍ୟାସୀତ୍
ସ ତୁ ସ୍ୱାଭାବିକସ୍ତବ ॥ ୭୧ ॥

ଅନ୍ୱୟ - ତୀର୍ଯଗ୍ ଊର୍ଦ୍ଧ୍ୱମ୍ ଅଧସ୍ତାବଚ୍ଚ ବ୍ୟାପକଃ ମହିମା ହରେଃ ତ୍ରିବିକ୍ରମୋଦ୍ୟତସ୍ୟ ଆସୀତ୍ ।
ତବ ତୁ ସଃ ବ୍ୟାପକଃ ମହିମା ସ୍ୱାଭାବିକଃ ଅସ୍ତି ।

ପଦ୍ୟାନୁବାଦ -

ଯେତେବେଳେ ବିଷ୍ଣୁ ଊର୍ଦ୍ଧ୍ୱ ଅଧ ଆଉ
ତୀର୍ଯଗ୍ ତିନି ପାଦରେ
ମାପିଦେଲେ ତିନି ପୁରକୁ ମହିମା
ପ୍ରସରିଲା ଏ ସଂସାରେ ।
କିନ୍ତୁ ହେ ଶଙ୍କର ମହିମା ତୁମ୍ଭର
ବିନା କୌଣସି ଚେଷ୍ଟାରେ
ସ୍ୱାଭାବିକ ଭାବେ ବିଦିତ ହୋଇଛି
ସମଗ୍ର ଏହି ସଂସାରେ ॥ ୭୧ ॥

## ଶ୍ଳୋକ- ୭୨

ଯଜ୍ଞଭାଗଭୁଜାଂ ମଧ୍ୟେ
ପଦମାତସ୍ଥୁଷା ତ୍ୱୟା ।
ଉଚ୍ଚୈର୍ହିରଣ୍ମୟଂ ଶୃଙ୍ଗଂ
ସୁମେରୋର୍ବିତଥିକୃତମ୍ ॥ ୭୨ ॥

ଅନ୍ୱୟ - ଯଜ୍ଞଭାଗଭୁଜାଂ ମଧ୍ୟେ ପଦମ୍ ଆତସ୍ଥୁଷା ତ୍ୱୟା ସୁମେରୋଃ
ହିରଣ୍ୟମ୍ ଉଚ୍ଚୈଃଶୃଙ୍ଗଂ ବିତଥିକୃତମ୍ ।

ପଦ୍ୟାନୁବାଦ -

ଯଜ୍ଞଭାଗ ପ୍ରାପ୍ତ ଦେବତାଙ୍କ ମଧ୍ୟେ
ପାଇଥିବା ହେତୁ ସ୍ଥାନ
ସୁମେରୁ ପର୍ବତ ସ୍ୱର୍ଣ୍ଣିମ ଉନ୍ନତ
ଶିଖର ତୁମଠୁ ସାନ ॥ ୭୨ ॥

**ଶ୍ଳୋକ- ୭୩**

କାଠିନ୍ୟଂ ସ୍ଥାବରେ କାୟେ
ଭବତା ସର୍ବମର୍ପିତମ୍ ।
ଇଦଂ ତୁ ତେ ଭକ୍ତିନମ୍ରଂ
ସତାମାରାଧନଂ ବପୁଃ ॥ ୭୩ ॥

ଅନ୍ୱୟ - ଭବତା ସର୍ବଂ କାଠିନ୍ୟଂ ସ୍ଥାବରେ କାୟେ ଅର୍ପିତମ୍ ।
ସତାମ୍ ଆରାଧନଂ ତେ ଇଦଂ ବପୁସ୍ତୁ ଭକ୍ତିନମ୍ରମ୍ ଅସ୍ତି ।

ପଦ୍ୟାନୁବାଦ -

କରିଛ ଅର୍ପଣ କଠୋରତା ପଣ
ଚଳ ଶରୀରକୁ ତୁମ୍ଭେ
ସଚଳ ଶରୀର ସଜ୍ଜନ ସେବାରେ
ରତ ଅଛି ଭକ୍ତି ଭାବେ ।
ଭକ୍ତି ସହକାରେ ସଜ୍ଜନ ସେବାରେ
ରତ ଚଳମାନ ଅଙ୍ଗ
ସେ ପାଇଁ କୋମଳ ବିନମ୍ର ହୋଇଛି
ପାଇ ସଜ୍ଜନଙ୍କ ସଙ୍ଗ ॥ ୭୩ ॥

### ଶ୍ଳୋକ- ୭୪

ତଦାଗମନାକାର୍ଯ୍ୟଂ ନଃ
ଶୃଣୁ କାର୍ଯ୍ୟଂ ତବୈବ ତତ୍ ।
ଶ୍ରେୟସାମୁପଦେଶାତ୍ତୁ
ବୟମତ୍ରାଂଶଭାଗିନଃ ॥ ୭୪ ॥

ଅନ୍ୱୟ - ତଦ୍ ନଃ ଆଗମନକାର୍ଯ୍ୟ ଶୃଣୁ । ତତ୍ ତବ ଏବ କାର୍ଯ୍ୟମ୍ ।
ବୟଂ ତୁ ଶ୍ରେୟସାମ୍ ଉପଦେଶାଦ୍ ଅତ୍ର ଅଂଶଭାଗିନଃ ସ୍ମ ।

ପଦ୍ୟାନୁବାଦ -

ଆମ୍ଭ ଆଗମନ କାରଣ ଶ୍ରବଣ
କର ଆହେ ହିମାଳୟ
ସତ କହିବାକୁ ଗଲେ ଏହି କାର୍ଯ୍ୟ
ତୁମ ଦ୍ୱାରା କରଣୀୟ ।
ସମ୍ମତି ପ୍ରଦାନ କଲେ ତୁମ୍ଭପାଇଁ
ହେବ ତାହା ଶ୍ରେୟସ୍କର
ସେ ଶ୍ରେୟରୁ କିଛି ଅଂଶ ହେବ ପ୍ରାପ୍ତି
ନିଶ୍ଚେ ଆମ୍ଭମାନଙ୍କର ॥ ୭୪ ॥

### ଶ୍ଳୋକ- ୭୫

ଅଣିମାଦିଗୁଣୋପେତମ୍
ଅସ୍ପୃଷ୍ଟପୁରୁଷାନ୍ତରମ୍ ।
ଶବ୍ଦମୀଶ୍ୱର ଇତ୍ୟୁଚ୍ଚୈଃ
ସାର୍ଦ୍ଧଚନ୍ଦ୍ରଂ ବିଭର୍ତି ଯଃ ॥ ୭୫ ॥

ଅନ୍ୱୟ - ଯଃ ଅଣିମାଦିଗୁଣୋପେତମ୍ ଅସ୍ପୃଷ୍ଟପୁରୁଷାନ୍ତରମ୍ ଉଚ୍ଚୈଃ
ଈଶ୍ୱର ଇତି ଶବ୍ଦ ସାର୍ଦ୍ଧଚନ୍ଦ୍ରଂ ବିଭର୍ତି ।

ପଦ୍ୟାନୁବାଦ -

ଅଷ୍ଟ ଅଣିମାଦି ସିଦ୍ଧି ପ୍ରାପ୍ତ ଶିରେ
ଅର୍ଦ୍ଧ ଚନ୍ଦ୍ରମା ଶୋଭିତ
ସେ ଅଟନ୍ତି ଶିବ ଈଶ୍ୱର ନାମରେ
ସେହି ହିଁ ଏକା ଆଖ୍ୟାତ ॥ ୭୫ ॥

**ଶ୍ଳୋକ- ୭୬**

କଳିତାନ୍ୟୋନ୍ୟସାମର୍ଥ୍ୟୈଃ
ପୃଥିବ୍ୟାଦିଭିରାତ୍ମଭିଃ ।
ଯେନେଦଂ ଧ୍ରିୟତେ ବିଶ୍ୱଂ
ଧୁର୍ଯ୍ୟୈର୍ଯାନମିବାଧ୍ୱନି ॥ ୭୬ ॥

ଅନ୍ୱୟ - ଯେନ କଳିତାନ୍ୟୋନ୍ୟସାମର୍ଥ୍ୟୈଃ ପୃଥିବ୍ୟାଦିଭିଃ ଆତ୍ମଭିଃ ଇଦଂ ବିଶ୍ୱଂ ଧୁର୍ଯ୍ୟୈଃ ଅଧ୍ୱନି ଯାନମ୍ ଇବ ଧ୍ରିୟତେ ।

ପଦ୍ୟାନୁବାଦ -

ପୃଥ୍ୱୀ ଜଳ ଆଦି ନିଜ ଅଷ୍ଟମୂର୍ତ୍ତି
ମାନଙ୍କୁ କରି ସାଧନ
ସେହି ମହାଦେବ ଏ ସାରା ବିଶ୍ୱକୁ
କରିଅଛନ୍ତି ଧାରଣ ।
ଏକକୁ ଆରେକ ସାହାଯ୍ୟେ ସଂସାର
ହୋଇଅଛି ଗତିମାନ
ଯେପରି ପଥରେ ଅଶ୍ୱମାନେ ମିଳି
ଚଳାଇଥାନ୍ତି ସ୍ୟନ୍ଦନ ॥ ୭୬ ॥

### ଶ୍ଳୋକ- ୭୭

ଯୋଗିନୋ ଯଂ ବିଚିନ୍ୱନ୍ତି
କ୍ଷେତ୍ରାଭ୍ୟନ୍ତରବର୍ତିନମ୍
ଅନାବୃତ୍ତିଭୟଂ ଯସ୍ୟ
ପଦମାହୁର୍ମନୀଷିଣଃ ॥ ୭୭ ॥

ଅନ୍ୱୟ - ଯୋଗିନଃ କ୍ଷେତ୍ରାଭ୍ୟନ୍ତରବର୍ତିନମ୍ ବିଚିନ୍ୱନ୍ତି, ମନୀଷିଣଃ ଯସ୍ୟ ପଦମ୍ ଅନାବୃତ୍ତିଭୟଂ ଆହୁଃ ।

ପଦ୍ୟାନୁବାଦ -

ନିଜ ଶରୀରରେ ବିଦ୍ୟମାନ ଜାଣି
ଶଙ୍କର ଭଗବାନଙ୍କୁ
ଯୋଗୀମାନେ ନିଜ ଶରୀର ଭିତରେ
ଖୋଜୁ ଅଛନ୍ତି ତାହାଙ୍କୁ ।
ସେପରି ଶିବଙ୍କ ପ୍ରକୃତ ସ୍ୱରୂପ
କରନ୍ତି ଯିଏ ଦର୍ଶନ
ଜନ୍ମ ମୃତ୍ୟୁ ରୂପୀ ବନ୍ଧନରୁ ମକ୍ତି
ହୁଏ କହନ୍ତି ବିଦ୍ୱାନ ॥ ୭୭ ॥

### ଶ୍ଳୋକ- ୭୮

ସ ତେ ଦୁହିତରଂ ସାକ୍ଷାତ୍
ସାକ୍ଷୀ ବିଶ୍ୱସ୍ୟ କର୍ମଣାମ୍ ।
ବୃଣୁତେ ବରଦଃ ଶମ୍ଭୁଃ
ଅସ୍ମତ୍ସଂକ୍ରାମିତୈଃ ପଦୈଃ ॥ ୭୮ ॥

ଅନ୍ୱୟ - ବିଶ୍ୱସ୍ୟ କର୍ମଣାଂ ସାକ୍ଷୀ ବରଦଃ ସ ଶମ୍ଭୁଃ ଅସ୍ମତ୍ସଂକ୍ରାମିତୈଃ ପଦୈଃ ତେ ଦୁହିତରଂ ସାକ୍ଷାତ୍ ବୃଣୁତେ ।

ପଦ୍ୟାନୁବାଦ -

ସାରା ସଂସାରର ଭଲ ମନ୍ଦ କଥା
ସାକ୍ଷାତ ଯେ ଦେଖିଛନ୍ତି
ସେ ସାକ୍ଷାତ ଦ୍ରଷ୍ଟା ବରଦାନ କର୍ତ୍ତା
ସ୍ୱୟଂ ଶଂକର ଅଟନ୍ତି ।
ନିଜ ପାଇଁ ତୁମ୍ଭ ପୁତ୍ରୀ ପାର୍ବତୀକୁ
ଯାଚନା କରିବା ପାଇଁ
ଆମ୍ଭ ମୁଖେ ନିଜ ସନ୍ଦେଶ କହିବା
ପାଇଁ ଅଛନ୍ତି ପଠାଇ ॥ ୭୮ ॥

### ଶ୍ଳୋକ- ୭୯

ତମର୍ଥମିବ ଭାରତ୍ୟା
ସୁତୟା ଯୋକ୍ତୁମର୍ହସି ।
ଅଶୋଚ୍ୟା ହି ପିତୁଃ କନ୍ୟା
ସଭର୍ତୃପ୍ରତିପାଦିତା ॥ ୭୯ ॥

ଅନ୍ୱୟ - ତଂ ଭାରତ୍ୟା ଅର୍ଥମ୍ ଇବ ସୁତୟା ଯୋକ୍ତୁମ୍ ଅର୍ହସି ।
ସଭର୍ତୃପ୍ରତିପାଦିତା କନ୍ୟା ପିତୁଃ ଅଶୋଚ୍ୟା ଭବତି ।

ପଦ୍ୟାନୁବାଦ -

କଥାର ଆରମ୍ଭ ସମ୍ବନ୍ଧ ଅର୍ଥରେ
ହୋଇଛି ଯେଉଁ ପ୍ରକାରେ
ତୁମ୍ଭ କନ୍ୟା ସହ ଶିବଙ୍କ ସମ୍ବନ୍ଧ
କରିଦିଅ ସେ ପ୍ରକାରେ ।
କାରଣ କନ୍ୟାର ବିବାହ ଉତ୍ତମ
ପତି ସହ ହୋଇଗଲେ
କନ୍ୟାର ବିବାହ ଚିନ୍ତାରୁ ପିତାଙ୍କୁ
ମୁକ୍ତି ମିଳିଥାଏ ଭଲେ ॥ ୭୯ ॥

### ଶ୍ଳୋକ- ୮୦

ଯାବନ୍ତ୍ୟେତାନି ଭୂତାନି
ସ୍ଥାବରାଣି ଚରାଣି ଚ।
ମାତରଂ କଳ୍ପୟନ୍ତ୍ୱେନାମ୍
ଈଶୋ ହି ଜଗତଃ ପିତା ॥ ୮୦ ॥

ଅନ୍ୱୟ - ସ୍ଥାବରାଣି ଚରାଣି ଚ ଯାବନ୍ତି ଏତାନି ଭୂତାନି ଏନାଂ ମାତରଂ କଳ୍ପୟନ୍ତୁ। ହି ଈଶଃ ପିତା ଅସ୍ତି।

ପଦ୍ୟାନୁବାଦ -

ଏପରି ହୋଇଲେ ସଂସାରର ସର୍ବ
ଚର ଓ ଅଚର ପ୍ରାଣୀ
ତୁମ୍ଭର ଦୁହିତା ଗୌରୀଙ୍କୁ ସମସ୍ତେ
ମାନିବେ ନିଜ ଜନନୀ।
କାରଣ ସମସ୍ତ ସଂସାର ମାନଇ
ଶିବଙ୍କୁ ବିଶ୍ୱର ପିତା
ପାର୍ବତୀ ତାଙ୍କର ପତ୍ନୀ ଭାବେ ନିଶ୍ଚେ
ହେବେ ସମସ୍ତଙ୍କ ମାତା ॥ ୮୦ ॥

### ଶ୍ଳୋକ- ୮୧

ପ୍ରଣମ୍ୟ ଶିତିକଣ୍ଠାୟ
ବିବୁଧାସ୍ତଦନନ୍ତରମ୍।
ଚରଣୌ ରଞ୍ଜୟନ୍ତ୍ୱସ୍ୟାଃ
ଚଚୂଡାମଣିମରୀଚିଭିଃ ॥ ୮୧ ॥

ଅନ୍ୱୟ - ବିବୁଧାଃ ଶିତିକଣ୍ଠାୟ, ପ୍ରଣମ୍ୟ, ତଦନନ୍ତରମ୍ ଅସ୍ୟାଃ ଚରଣୌ ଚୂଡାମଣି ମରୀଚିଭିଃ ରଞ୍ଜୟନ୍ତୁ।

ପଦ୍ୟାନୁବାଦ -

ଶିବଙ୍କୁ ପ୍ରଣାମ କରି ଦେବଗଣ
ନିଜ ମସ୍ତକ ମଣିର
ଉଜ୍ଜ୍ୱଳ କିରଣେ ରଞ୍ଜନ କରିଲେ
ଚରଣ ପାର୍ବତୀଙ୍କର ॥ ୮୧ ॥

## ଶ୍ଳୋକ- ୮୨

ଉମା ବଧୂର୍ଭବାନ୍ଦାତା
ଯାଚିତାର ଇମେ ବୟମ୍।
ବରଃ ଶମ୍ଭୁରଳଂ ହ୍ୟେଷ
ତ୍ୱତ୍କୁଲୋଦ୍ଭୂତୟେ ବିଧିଃ ॥ ୮୨ ॥

ଅନ୍ୱୟ - ଉମା ବଧୂଃ, ଭାବାନ୍ ଦାତା, ଇମେ ବୟଂ ଯାଚିତାର, ଶମ୍ଭୁଃ ବରଃ ଏଷଃ ବିଧିଃ ତ୍ୱତ୍କୁଳଭୂତୟେ ଅଳଂ ହି।

ପଦ୍ୟାନୁବାଦ -

ଗୌରୀ ଯହିଁ ବଧୂ ଶିବ ହେବେ ବର
ତୁମ୍ଭେ ଅଟ କନ୍ୟା କର୍ତ୍ତା
ଆମ୍ଭେମାନେ ସବୁ ଏହି ବିବାହରେ
କରୁଅଛୁ ମଧ୍ୟସ୍ଥତା।
ଏହାଠାରୁ ବଳି ତୁମ୍ଭ କୁଳ ପାଇଁ
ପ୍ରତିଷ୍ଠା କି ଉଚ୍ଚତର
ମିଳି କି ପାରିବ କୁହ ମନ ଖୋଲି
ପଚ୍ଚରୁଛି ଗିରିବର ॥ ୮୨ ॥

### ଶ୍ଲୋକ- ୮୩

ଅସ୍ତୋତୁଃ ସ୍ତୂୟମାନସ୍ୟ
ବନ୍ଦ୍ୟସ୍ୟାନନ୍ୟବନ୍ଦୀନଃ।
ସୁତାସମ୍ବନ୍ଧବିଧିନା
ଭବ ବିଶ୍ୱଗୁରୋର୍ଗୁରୁଃ ॥ ୮୩ ॥

ଅନ୍ୱୟ - ଅସ୍ତୋତୁଃ ସ୍ତୂୟମାନସ୍ୟ ବନ୍ଦ୍ୟସ୍ୟ ଅନନ୍ୟବନ୍ଦୀନଃ
ବିଶ୍ୱଗୁରୋଃ ସୁତାସମ୍ବନ୍ଧବିଧିନାଃ ଗୁରୁ ଭବ।

ପଦ୍ୟାନୁବାଦ -

ଯେ କାହାର ସ୍ତୁତି କରନ୍ତିନି ସର୍ବେ
କରନ୍ତି ତାଙ୍କ ଚିନ୍ତନ
ଯେ କା'ର ବନ୍ଦନା କରନ୍ତିନି ସର୍ବେ
କରନ୍ତି ତାଙ୍କ ବନ୍ଦନ।
ସେହି ଜଗଦ୍‌ଗୁରୁ ସହ ତୁମ୍ଭ କନ୍ୟା
ସମ୍ବନ୍ଧ କରିଲେ ତୟ
ଗୁରୁଙ୍କର ଗୁରୁ ବୋଲାଇବ ତୁମ୍ଭେ
ଏହି ଯଗତେ ନିଶ୍ଚୟ ॥ ୮୩ ॥

### ଶ୍ଲୋକ- ୮୪

ଏବଂବାଦିନୀ ଦେବର୍ଷୌ
ପାର୍ଶ୍ୱେ ପିତୁରଧୋମୁଖୀ।
ଲୀଳାକମଳପତ୍ରାଣି
ଗଣୟାମାସ ପାର୍ବତୀ ॥ ୮୪ ॥

ଅନ୍ୱୟ - ଦେବର୍ଷୌ ଏବଂବାଦିନୀ ସତି, ପାର୍ବତୀ ପିତୁଃ ପାର୍ଶ୍ୱେ
ଅଧୋମୁଖୀ ସତୀ ଲୀଳାକମଳପତ୍ରାଣି ଗଣୟାମାସ।

ପଦ୍ୟାନୁବାଦ -

ଯେକାଳେ ଅଙ୍ଗିରା ଋଷି ଏ ପ୍ରକାର
କହୁଥିଲେ ତାଙ୍କ କଥା
ସେକାଳେ ପାର୍ବତୀ ପିତା ପାର୍ଶ୍ୱେ ବସି
ନତ କରିଥିଲେ ମଥା ।
ସଲଜ୍ଜ ବଦନେ କ୍ରୀଡାପଦ୍ମ ଏକ
ହସ୍ତରେ ପାର୍ବତୀ ଧରି
ସେ କ୍ରୀଡା ପଦ୍ମର ପାଖୁଡାକୁ ଗଣୁ-
ଥିଲେ ଗୋଟି ଗୋଟି କରି ॥ ୮୪ ॥

## ଶ୍ଳୋକ- ୮୫

ଶୈଳଃ ସମ୍ପୂର୍ଣ୍ଣକାମୋଽପି
ମେନାମୁଖମୁଦୈକ୍ଷତ ।
ପ୍ରାୟେଣ ଗୃହିଣୀନେତ୍ରାଃ
କନ୍ୟାର୍ଥେଷୁ କୁଟୁମ୍ବିନଃ ॥ ୮୫ ॥

ଅନ୍ୱୟ - ଶୈଳଃ ସମ୍ପୂର୍ଣ୍ଣକାମଃ ଅପି ମେନାମୁଖମ୍ ଉଦୈକ୍ଷତ ।
ତଥା ହି ପ୍ରାୟେଣ କୁଟୁମ୍ବିନଃ କନ୍ୟାର୍ଥେଷୁ ଗୃହିଣୀନେତ୍ରାଃ ଭବନ୍ତି ।

ପଦ୍ୟାନୁବାଦ -

ଯଦିଓ ହିମାଦ୍ରି ପାର୍ବତୀଙ୍କ ହସ୍ତ
ଶଙ୍କରଙ୍କୁ ଦେବା ପାଇଁ
କରିଥିଲେ ତୟ ତଥାପି ସ୍ୱ ପତ୍ନୀ
ମେନାଙ୍କୁ ରହିଲେ ଋହିଁ ।
ପ୍ରାୟତଃ ଗୃହସ୍ଥ ଲୋକମାନେ ନିଜ
କନ୍ୟାଦାନ ସମ୍ବନ୍ଧରେ
ନିଜ ପତ୍ନୀଙ୍କର ମତକୁ ପ୍ରାଧାନ୍ୟ
ଦେଇଥାନ୍ତି ନିର୍ଦ୍ୱନ୍ଦ୍ୱରେ ॥ ୮୫ ॥

### ଶ୍ଲୋକ- ୮୬

ମେନେ ମେନାପି ତତ୍ସର୍ବମ୍
ପତ୍ୟୁଃ କାର୍ଯମଭୀପ୍ସିତମ୍ ।
ଭବନ୍ତ୍ୟବ୍ୟଭିଚାରିଣ୍ୟୋ
ଭର୍ତ୍ତୁରିଷ୍ଟେ ପତିବ୍ରତା ॥ ୮୬ ॥

ଅନ୍ୱୟ - ମେନା ଅପି ପତ୍ୟୁଃ ତତ୍ ସର୍ବମ୍ ଅଭୀପ୍ସିତଂ କାର୍ଯ୍ୟମ୍ ମେନେ ।
ତଥା ହି ପତିବ୍ରତାଃ ଭର୍ତ୍ତୁଃ ଇଷ୍ଟେ ଅବ୍ୟଭିଚାରିଣ୍ୟଃ ଭବନ୍ତି ।

ପଦ୍ୟାନୁବାଦ -

ମେନା ମଧ୍ୟ ପତି ଇଚ୍ଛାରେ ସ୍ୱୀକୃତି
ଶିବେ କନ୍ୟାଦାନ ପାଇଁ
କରିଲେ ପ୍ରଦାନ ନକରି ଅମାନ୍ୟ
ପତିଙ୍କୁ ସମ୍ମାନ ଦେଇ ।
ପତିବ୍ରତା ସତୀ ନାରୀ କେବେ ପତି
ଇଚ୍ଛା ବିରୁଦ୍ଧରେ ଯାଇ
କୌଣସି ବି କାର୍ଯ୍ୟ କରିବା ପାଇଁକି
କେବେ ବି ଚାହାଁନ୍ତି ନାହିଁ ॥ ୮୬ ॥

### ଶ୍ଲୋକ- ୮୭

ଇଦମତ୍ରୋତ୍ତରଂ ନ୍ୟାଯ୍ୟମ୍
ଇତି ବୁଦ୍ଧୟା ବିମୃସ୍ୟ ସଃ ।
ଆଦଦେ ବଚସାମନ୍ତେ
ମଙ୍ଗଳାଲଙ୍କୃତାଂ ସୁତାମ୍ ॥ ୮୭ ॥

ଅନ୍ୱୟ - ସଃ ବଚସାମ୍ ଅନ୍ତେ 'ଅତ୍ର ଇଦଂ ନ୍ୟାୟମ୍ ଉତ୍ତରମ୍'
ଇତି ବୁଦ୍ଧୟା ବିମୃଶ୍ୟ ମଙ୍ଗଳାଲଙ୍କୃତା ସୁତାମ୍ ଆଦଦେ ।

ପଦ୍ୟାନୁବାଦ -

କଥା ସମାପନ ଅନ୍ତେ ହିମବାନ
କିଭଳି ଦେବେ ଉତ୍ତର
ସେହି ବିଷୟରେ ଚିନ୍ତା କରି ମନେ
କରିଲେ ତାହା ସେ ସ୍ଥିର ।
ମାଙ୍ଗଳିକ ବସ୍ତ୍ରେ ସଜ୍ଜିତା ସ୍ୱ କନ୍ୟା
ପାର୍ବତୀଙ୍କୁ ସମ୍ବୋଧିତ
କରି କହିବାକୁ ଆରମ୍ଭ କରିଲେ
ହିମାଳୟ ପରବତ ॥ ୮୭ ॥

## ଶ୍ଳୋକ- ୮୮

ଏହି ବିଶ୍ୱାତ୍ମନେ ବତ୍ସେ !
ଭିକ୍ଷାଽସି ପରିକଳ୍ପିତା ।
ଅର୍ଥିନୋ ମୁନୟଃ ପ୍ରାପ୍ତଂ
ଗୃହମେଧିଫଳଂ ମୟା ॥ ୮୮ ॥

ଅନ୍ୱୟ - ହେ ବତ୍ସେ ! ଏହି ତ୍ୱଂ ବିଶ୍ୱାତ୍ମନେ ଭିକ୍ଷା ପରିକଳ୍ପିତା ଅସି ।
ମୁନୟଃ ଅର୍ଥିନଃ, ମୟା ଗୃହମେଧିଫଳଂ ପ୍ରାପ୍ତମ୍ ।

ପଦ୍ୟାନୁବାଦ -

ଶୁଣ ଆହେ ବତ୍ସ ଆସ ମୋର ପାଶ
ଶିବଙ୍କ ପାଇଁ ତୁମ୍ଭଙ୍କୁ
ସପ୍ତ ଋଷିମାନେ ମାଗିଛନ୍ତି ଭିକ୍ଷା
ରୂପେ ଆସି ମୋ ଗୃହକୁ ।
ତୁମ୍ଭଙ୍କୁ ମୁଁ ଦାନ କରି ଭିକ୍ଷା ରୂପେ
ବିଶ୍ୱ ଆତ୍ମାଙ୍କ ନିମିତ୍ତ
ଗୃହସ୍ଥ ଜୀବନ ଫଳ ଆଜି ମୋତେ
ହୋଇଗଲା ଜାଣ ପ୍ରାପ୍ତ ॥ ୮୮ ॥

## ଶ୍ଳୋକ- ୮୯

ଏତାବଦୁକ୍ତ୍ୱା ତନୟାମ୍
ଋଷିନାହ ମହୀଧରଃ ।
ଇୟଂ ନମତି ବଃ ସର୍ବାନ୍
ତ୍ରିଲୋଚନବଧୂରିତି ॥ ୮୯ ॥

ଅନ୍ୱୟ - ମହୀଧରଃ ତନୟାମ୍ ଏତାବଦ୍ ଉକ୍ତ୍ୱା, 'ଇୟଂ ତ୍ରିଲୋଚନବଧୂ ବଃ ସର୍ବାନ୍ ନମତି' ଇତି ଋଷିନ୍ ଆହ ।

ପଦ୍ୟାନୁବାଦ -

ଏହିପରି ନିଜ କନ୍ୟା ପାର୍ବତୀଙ୍କୁ
କହିସାରି ହିମବାନ
ସପ୍ତର୍ଷିମାନଙ୍କୁ ଏହି ପରକାରେ
ବୋଇଲେ ନିଜ ବଚନ ।
ଏହି ମୋ ଦୁହିତା ଗିରିରାଜ ସୁତା
ଭାବି ପତ୍ନୀ ଶିବଙ୍କର
ଆପଣ ମାନଙ୍କୁ କର ଯୋଡି ସିଏ
କରୁଅଛି ନମସ୍କାର ॥ ୮୯ ॥

## ଶ୍ଳୋକ- ୯୦

ଈପ୍ସିତାର୍ଥକ୍ରିୟୋଦାରଂ
ତେଽଭିନନ୍ଦ୍ୟ ଗିରେର୍ବଚଃ ।
ଆଶୀର୍ଭିରେଧୟାମାସୁଃ
ପୁରଃ ପାକାଭିରମ୍ବିକାମ୍ ॥ ୯୦ ॥

ଅନ୍ୱୟ- ତେ ଈପ୍ସିତାର୍ଥକ୍ରିୟୋଦାରଂ ଗିରେଃ ବଚଃ ଅଭିନନ୍ଦ୍ୟ, ଅମ୍ବିକାଂ ପୁରଃ ପାକାଭିଃ ଆଶୀର୍ଭିଃ ଏଧୟାମାସୁଃ ।

ପଦ୍ୟାନୁବାଦ -

ସ୍ୱ ଅଭୀଷ୍ଟ କାର୍ଯ୍ୟ ସିଦ୍ଧିର ସୂଚନା
କରିବାରୁ ହିମବାନ
ସେ ବାଣୀର ଅଭି- ନନ୍ଦନ କରିଲେ
ଦିବ୍ୟ ସପ୍ତର୍ଷି ମହାନ।
ତତ୍ସଙ୍ଗେ ସପ୍ତର୍ଷି ମାନେ ପାର୍ବତୀଙ୍କୁ
ଦେଲେ ଏପରି ଆଶିଷ
ଯାହାକି ତତ୍କାଳ ହେବାର ସଫଳ
ରହିଥିଲା ପୂର୍ଣ୍ଣ ଆଶ ॥ ୯୦ ॥

### ଶ୍ଳୋକ- ୯୧

ତାଂ ପ୍ରଣାମାଦରସ୍ରସ୍ତ-
ଜାମ୍ବୁନଦବତଂସକାମ୍।
ଅଙ୍କମାରୋପୟାମାସ
ଲଜ୍ଜମାନାମରୁନ୍ଧତୀ ॥ ୯୧ ॥

ଅନ୍ୱୟ - ପ୍ରଣାମାଦରସ୍ରସ୍ତଜାମ୍ବୁନଦବତଂସକାମ୍ ଲଜ୍ଜମାନାଂ ତାମ୍ ଅରୁନ୍ଧତୀ ଅଙ୍କମ୍ ଆରୋପୟାମାସ।

ପଦ୍ୟାନୁବାଦ -

ସାଦରେ ପ୍ରଣାମ କରିବା ସମୟେ
ମଥାନତ କଲାବେଳେ
କର୍ଣ୍ଣରୁ ତାଙ୍କର ସ୍ୱର୍ଣ୍ଣ ଆଭୂଷଣ
ଖସି ପଡିଗଲା ତଳେ।
ବିବାହର କଥା ଶୁଣିଣ ଲଜ୍ଜିତା
ପାର୍ବତୀଙ୍କୁ ଅରୁନ୍ଧତୀ
ସାଦରେ ନିଜର କୋଳକୁ ନେଇଣ
ବସାଇଲେ ସେ ଝଟତି ॥ ୯୧ ॥

### ଶ୍ଲୋକ- ୯୨

ତନ୍ମାନ୍ତରଂ ଙଶ୍ରୁମୁଖୀଂ
ଦୁହିତୃସ୍ନେହବିକ୍ଳବାମ୍ ।
ବରସ୍ୟାନନ୍ୟପୂର୍ବସ୍ୟ
ବିଶୋକାମକରୋଦ୍ ଗୁଣୈଃ ॥ ୯୨ ॥

ଅନ୍ୱୟ - ଦୁହିତୃସ୍ନେହବିକ୍ଳବାମ୍ ଅଶ୍ରୁମୁଖୀଂ ତନ୍ମାନ୍ତରଂ ଚ ଅନନ୍ୟପୂର୍ବସ୍ୟ ବରସ୍ୟ ଗୁଣୈଃ ବିଶୋକାମ୍ ଅକରୋତ୍ ।

ପଦ୍ୟାନୁବାଦ -

ମାତା ମେନା କନ୍ୟା ସ୍ନେହରେ ଅତ୍ୟନ୍ତ
ହୋଇ ଉଠିଲେ ବିହ୍ୱଳ
କନ୍ୟାର ବିବାହ ଜାଣି ଚକ୍ଷୁ ଦ୍ୱୟ
ହୋଇ ଉଠିଲା ସଜଳ ।
କିନ୍ତୁ ଅରୁନ୍ଧତୀ ବର ଶିବଙ୍କର
ଦୁର୍ଲଭ ଗୁଣ ବଖାଣି
ଜନନୀ ମେନାଙ୍କୁ ଶୋକରୁ ବିମୁକ୍ତା
କରାଇଲେ ତତକ୍ଷଣି ॥ ୯୨ ॥

### ଶ୍ଲୋକ- ୯୩

ବୈବାହିକୀଂ ତିଥିଂ ପୃଷ୍ଟାଃ
ତକ୍ଷଣଂ ହରବନ୍ଧୁନା ।
ତେ ତ୍ର୍ୟହାଦୂର୍ଦ୍ଧ୍ୱମାଖ୍ୟାୟ
ଚେରୁର୍ଣ୍ଣିରପରିଗ୍ରହାଃ ॥ ୯୩ ॥

ଅନ୍ୱୟ - ଚିରପରିଗ୍ରହାଃ ତେ ତକ୍ଷଣଂ ହରବନ୍ଧୁନା ବୈବାହିକୀଂ ତିଥିଂ ପୃଷ୍ଟାଃ ସନ୍ତଃ ତ୍ର୍ୟହାଦ୍ ଊର୍ଦ୍ଧ୍ୱମ୍ ଆଖ୍ୟାୟ ଚେରୁଃ ।

ପଦ୍ୟାନୁବାଦ -

ବିବାହର ଦିନ ପିତା ହିମବାନ
ପଠାଇବେ ସପ୍ତର୍ଷିଙ୍କୁ
ଚତୁର୍ଥ ଦିନ ସେ କହିଦେଇ ଚଳି-
ଗଲେ ନିଜର ସ୍ଥାନକୁ ॥ ୯୩ ॥

### ଶ୍ଳୋକ- ୯୪

ତେ ହିମାଳୟମାମନ୍ତ୍ର୍ୟ
ପୁନଃ ପ୍ରାପ୍ୟ ଚ ଶୂଳିନମ୍ ।
ସିଦ୍ଧଂ ଚାସ୍ମୈ ନିବେଦ୍ୟାର୍ଥ
ତଦ୍ୱିସୃଷ୍ଟାଃ ଖମୁଦ୍ୟୟୁଃ ॥ ୯୪ ॥

ଅନ୍ୱୟ - ତେ ହିମାଳୟମ୍ ଆମନ୍ତ୍ର୍ୟ, ପୁନଃ ଶୂଳିନଂ ପ୍ରାପ୍ୟ, ସିଦ୍ଧମ୍ ଅର୍ଥମ୍ ଅସ୍ମୈ ନିବେଦ୍ୟ ଚ, ତଦ୍ୱିସୃଷ୍ଟାଃ ଖମ୍ ଉଦୟୁଃ ।

ପଦ୍ୟାନୁବାଦ -

ହିମାଳୟଠାରୁ ବିଦାୟ ନେଇଣ
ସେହି ସପ୍ତରଷିମାନେ
ପୁନଶ୍ଚ ଶିବଙ୍କୁ ସାକ୍ଷାତ କରିଲେ
ପୂର୍ବରୁ ସୂଚିତ ସ୍ଥାନେ ।
ଯେଉଁ କାମ ପାଇଁ ଆମ୍ଭଙ୍କୁ ପଠାଇ
ଥିଲେ ଆହେ ତ୍ରିଲୋଚନ
ସେହି କାମ ଏବେ ଆପଣଙ୍କ ପାଇଁ
କରିଛୁ ଆମ୍ଭେ ପୂରଣ ।
ଏବେ ଆମ୍ଭେମାନେ ବିଦାୟ ନେଉଛୁ
କହିଣ ତ୍ରିଲୋଚନଙ୍କୁ
ଆକାଶ ମାର୍ଗରେ ଉଡି ଚାଲିଗଲେ
ନିଜ ନିଜର ସ୍ଥାନକୁ ॥ ୯୪ ॥

### ଶ୍ଲୋକ- ୯୫

ପଶୁପତିରପି ତାନ୍ୟହାନି କୃଚ୍ଛ୍ରାଦ୍
ଅଗମୟଦଦ୍ରିସୁତାସମାଗମୋତ୍କଃ ।
କମପରବଶଂ ନ ବିପ୍ରକୁର୍ଯ୍ୟୁର୍ବିଭୁମ୍
ଅପି ତଂ ଯଦମୀ ସ୍ପୃଶନ୍ତି ଭାବାଃ ॥ ୯୫ ॥

ଅନ୍ୱୟ - ଅଦ୍ରିସୁତାସମାଗମୋତ୍କଃ ପଶୁପତିଃ ଅପି ତାନି ଅହାନି କୃଚ୍ଛ୍ରାଦ୍ ଅଗମୟତ୍। ଅମୀ ଭାବାଃ ଅବଶମ୍ ଅପରଂ କଂ ନ ବିପ୍ରକୁର୍ଯ୍ୟୁଃ, ଯଦ୍ ବିଭୁଂ ତମ୍ ଅପି ସ୍ପୃଶନ୍ତି।

ପଦ୍ୟାନୁବାଦ -

ହିମାଦ୍ରୀ ନନ୍ଦିନୀ ପାର୍ବତୀଙ୍କ ସହ
ମହାଦେବଙ୍କ ମିଳନ
ସମ୍ଭବ ହୋଇବ ବିତିଗଲାପରେ
ନିର୍ଦ୍ଧାରିତ ତିନିଦିନ।
ପାର୍ବତୀଙ୍କ ସହ ମିଳନ ପାଇଁକି
ଥିଲେ ସେ ଅତି ଉତ୍ସୁକ
ତିନି ଦିନ ତାଙ୍କ କିପିରି ବିତିବ
ଥିଲା ତା କଷ୍ଟଦାୟକ।
ଯଦି ଜିତେନ୍ଦ୍ରିୟ ଭଗବାନ ଶିବ
ଏପରି ହେବେ ଅସ୍ଥିର
ତେବେ ଅନ୍ୟ କେହି ନ ହୋଇବ କାହିଁ
ତାଙ୍କଠୁ ବେଶୀ ଅଧୀର ॥ ୯୫ ॥

***

**(ଷଷ୍ଠ ସର୍ଗଃ ସମାପ୍ତ)**

# ସପ୍ତମ ସର୍ଗଃ

ଶ୍ଳୋକ- ୧

ଅଥୌଷଧୀନାମଧିପସ୍ୟ ବୃଦ୍ଧୌ
ତିଥୌ ଚ ଜାମିତ୍ରଗୁଣାନ୍ୱିତାୟାମ୍।
ସମେତବନ୍ଧୁର୍ହିମବାନ୍ସୁତାୟା
ବିବାହଦୀକ୍ଷାବିଧିମନ୍ୱତିଷ୍ଠତ୍ ॥ ୧ ॥

ଅନ୍ୱୟ - ଅଥ ହିମବାନ୍ ଔଷଧୀନାମ୍ ଅଧିପସ୍ୟ ବୃଦ୍ଧୌ ତିଥୌ ଚ ଜାମିତ୍ରଗୁଣାନ୍ୱିତାୟାଂ ସମେତବନ୍ଧୁଃ ସୁତାୟାଃ ବିବାହଦୀକ୍ଷାବିଧିମ୍ ଅନ୍ୱତିଷ୍ଠତ୍।

ପଦ୍ୟାନୁବାଦ -

ଏହାପରେ ଶୁକ୍ଳ ସପ୍ତମୀ ତିଥିରେ
ଗିରିରାଜ ହିମବାନ
ଇଷ୍ଟବନ୍ଧୁ ଡାକି ପୁତ୍ରୀର ବିବାହ
ସଂସ୍କାର କଲେ ସଂପନ୍ନ ॥ ୧ ॥

ଶ୍ଳୋକ- ୨

ବୈବାହିକୈଃ କୌତୁକସଂବିଧାନୈଃ
ଗୃହେ ଗୃହେ ବ୍ୟଗ୍ରପୁରନ୍ଧ୍ରିବର୍ଗମ୍।
ଆସୀତ୍ପୁରଂ ସାନୁମତୋଽନୁରାଗାଦ୍
ଅନ୍ତଃପୁରଂ ଚୈକକୁଳୋପମେୟମ୍ ॥ ୨ ॥

ଅନ୍ୱୟ - ଅନୁରାଗାଦ୍ ଗୃହେ ଗୃହେ ବୈବାହିକୈଃ କୌତୁକସଂବିଧାନୈଃ ବ୍ୟଗ୍ରପୁରନ୍ଧ୍ରିବର୍ଗଂ ସାନୁମତଃ ପୁରମ୍ ଅନ୍ତଃପୁରଂ ଚ ଏକକୁଳୋପମେୟମ୍ ଆସୀତ୍ ।

ପଦ୍ୟାନୁବାଦ -

ପାର୍ବତୀଙ୍କ ପ୍ରତି ଅନୁରାଗ ଅତି
ଥିବାରୁ ସେହି ନଗରେ
ବିବାହ ସମ୍ବନ୍ଧି ମାଙ୍ଗଳିକ ନୀତି
ହେଲା ପ୍ରତି ଘରେ ଘରେ ।
ବିବାହ କାର୍ଯ୍ୟରେ ସବୁ ନାଗରିକ
ରହିଲେ ସମ୍ପୂର୍ଣ୍ଣ ମଗ୍ନ
ପତ୍ନୀମାନେ ତାଙ୍କ ଉତ୍ସବ ପାଳନେ
ରହିଲେ ହୋଇ ତଲ୍ଲୀନ ।
ଗିରିରାଜଙ୍କର ନିଜ ଅନ୍ତପୁର
ସହିତ ପୁରା ନଗର
ପ୍ରତେ ହେଉଥିଲା ସତେ ବା ଉଭୟେ
ଅଟେ ଏକ ପରିବାର ॥ ୨ ॥

### ଶ୍ଳୋକ- ୩

ସନ୍ତାନକାକୀର୍ଣ୍ଣମହାପଥଂ ତତ୍
ଚୀନାଂଶୁକୈଃ କଳ୍ପିତକେତୁମାଳମ୍ ।
ଭାସୋଜ୍ଜ୍ୱଳକାଞ୍ଚନତୋରଣାନାଂ
ସ୍ଥାନାନ୍ତରଂ ସ୍ୱର୍ଗ ଇବାବମାସେ ॥ ୩ ॥

ଅନ୍ୱୟ - ସନ୍ତାନକାକୀର୍ଣ୍ଣମହାପଥଂ ଚିନାଂଶୁକୈଃ କଳ୍ପିତକେତୁମାଳମ୍ କାଞ୍ଚନତୋରଣାନାଂ ଭାସା ଉଜ୍ଜ୍ୱଳତ୍ ତତ୍ ସ୍ଥାନାନ୍ତରଂ ଗତଃ ସ୍ୱର୍ଗ ଇବ ଆବଭାସେ ।

ପଦ୍ୟାନୁବାଦ -

ନଗ୍ର ରାଜପଥ ଥିଲା ଆଚ୍ଛାଦିତ
ସୁନ୍ଦର ମନ୍ଦାର ଫୁଲେ
ରେଶମୀ ବସ୍ତ୍ରରେ ନିର୍ମିତ ପତାକା
ସଜାହୋଇ ଝୁଲୁଥିଲେ ।
ସ୍ଥାନେ ସ୍ଥାନେ ସ୍ୱର୍ଣ୍ଣ ନିର୍ମିତ ତୋରଣ
ଅତ୍ୟନ୍ତ ଜାଜ୍ୱଲ୍ୟମାନ
ପ୍ରତେ ହେଉଥିଲା କରିଛି କି ସ୍ୱର୍ଗ
ସେ ନଗ୍ରେ ଅବତରଣ ॥ ୩ ॥

### ଶ୍ଳୋକ- ୪

ଏକୈବ ସତ୍ୟାମପି ପୁତ୍ରପଂକ୍ତୌ
ଚିରସ୍ୟ ଦୃଷ୍ଟେବ ମୃତୋତ୍ଥିତେବ ।
ଆସନ୍ନପାଣିଗ୍ରହଣେତି ପିତ୍ରୋଃ
ଉମା ବିଶେଷୋଚ୍ଛ୍ୱସିତଂ ବଭୂବ ॥ ୪ ॥

ଅନ୍ୱୟ - ପୁତ୍ରପଂକ୍ତୌ ସତ୍ୟାମ୍ ଅପି ଉମା ଏକା ଏବ ଚିରସ୍ୟ ଦୃଷ୍ଟା ଇବ, ମୃତୋତ୍ଥିତା ଇବ, ଆସନ୍ନପାଣିଗ୍ରହଣା ଇତି ପିତ୍ରୋଃ ବିଶେଷୋଚ୍ଛ୍ୱସିତଂ ବଭୂବ ।

ପଦ୍ୟାନୁବାଦ -

ଯଦିଓ ଅନେକ ପୁତ୍ର ଆଉ ପୁତ୍ରୀ
ହିମବାନଙ୍କର ଥିଲେ
ତଥାପି ଗୌରୀଙ୍କୁ ପିତା ଆଉ ମାତା
ବେଶୀ ଭଲ ପାଉଥିଲେ ।
ସତେ ବା ବହୁତ ଦିନପରେ ଦେଖୁ-
ଛନ୍ତି ସେମାନେ ଗୌରୀଙ୍କୁ
ଅଥବା ମରଣ ପରେ କି ଜୀବିତ
ମିଳି ଯାଇଅଛି ତାଙ୍କୁ ।

ବିବାହର ଦିନ ଥିବାରୁ ଆସନ୍ନ
ପିତାମାତା ଦୁଇ ଜଣ
ବେଶୀ ଭଲ ପାଉ ଥିଲେ ଗଉରୀଙ୍କୁ
ଥିଲା ଏ ମୂଳ କାରଣ ॥ ୪ ॥

### ଶ୍ଳୋକ- ୫

ଅଙ୍କାଦ୍ୟଯାବଙ୍କମୁଦୀରିତାଶୀଃ
ସା ମଣ୍ଡନାନ୍ମଣ୍ଡନମନ୍ୱଭୁଙ୍କ୍ତ ।
ସମ୍ବନ୍ଧିଭିନ୍ନୋଽପି ଗିରେଃ କୁଳସ୍ୟ
ସ୍ନେହସ୍ତଦେକାୟତନଂ ଯଗାମ ॥ ୫ ॥

ଅନ୍ୱୟ - ସା ଉଦୀରିତାଶୀଃ ସତୀ ଅଙ୍କାଦ୍ ଅଙ୍କମ୍ ଯଯୌ । ମଣ୍ଡନାଦ୍ ମଣ୍ଡନମ୍ ଅନ୍ୱଭୁଙ୍କ୍ତ । ସମ୍ବନ୍ଧିଭିନ୍ନଃ ଅପି ଗିରେଃ କୁଳସ୍ୟ ସ୍ନେହଃ ତଦେକାୟତନଂ ଯଗାମ ।

ପଦ୍ୟାନୁବାଦ -

ସମସ୍ତ କୁଟୁମ୍ବ ଏକ ପରେ ଏକ
ପାର୍ବତୀଙ୍କୁ କୋଳେ ନେଇ
ବସାଇଲେ ଆଶୀ- ର୍ବାଦର ସହିତ
ନାନାଳଙ୍କାରେ ସଜାଇ ।
ଯଦିଓ ପୁତ୍ରାଦି ଅନେକଙ୍କ ଦ୍ୱାରା
ପୂର୍ଣ୍ଣ ଥିଲା ପରିବାର
ପ୍ରତେ ହେଉଥିଲା ଗୌରୀଙ୍କ ଉପରେ
କେନ୍ଦ୍ରିତ ସବୁ ନଜର ॥ ୫ ॥

### ଶ୍ଳୋକ- ୬

ମୈତ୍ରେ ମୁହୂର୍ତ୍ତେ ଶଶଲାଞ୍ଛନେନ
ଯୋଗଂ ଗତାସୂତ୍ତରଫଲ୍‌ଗୁନୀଷୁ ।
ତସ୍ୟାଃ ଶରୀରେ ପ୍ରତିକର୍ମଂ ଚକ୍ରୁଃ
ବନ୍ଧୁସ୍ତ୍ରୀୟୋ ଯାଃ ପତିପୁତ୍ରବତ୍ୟଃ ॥ ୬ ॥

ଅନ୍ୱୟ - ଅଥ ମୈତ୍ରେ ମୁହୂର୍ତ୍ତେ ଉତ୍ତରଫଲ୍‌ଗୁନୀଷୁ ଶଶଲାଞ୍ଛନେନ ଯୋଗଂ ଗତାସୁ ତସ୍ୟାଃ
ଶରୀରେ ଯାଃ ପତିପୁତ୍ରବତ୍ୟଃ ତାଃ ବନ୍ଧୁସ୍ତ୍ରୀୟଃ ପ୍ରତିକର୍ମଂ ଚକ୍ରୁଃ ।

ପଦ୍ୟାନୁବାଦ -

ଏଥୁ ଅନନ୍ତରେ ସୂର୍ଯ୍ୟୋଦୟ ପରେ
ତିନି ମୁହୂର୍ତ୍ତ ବିତନ୍ତେ
ଉତ୍ତରା ଫାଲ୍‌ଗୁନୀ ନକ୍ଷତ୍ର ସହିତ
ଚନ୍ଦ୍ରମା ଯୋଗ ହୁଅନ୍ତେ ।
ପରିବାରେ ଥିବା ପୁତ୍ରବତୀ ଆଉ
ସୌଭାଗ୍ୟବତୀ ରମଣୀ
ପାର୍ବତୀଙ୍କ ଅଙ୍ଗେ ଶୃଙ୍ଗାର କରିଲେ
ସମସ୍ତ ବିଧାନ ମାନି ॥ ୬ ॥

### ଶ୍ଳୋକ -୭

ସା ଗୌରସିଦ୍ଧାର୍ଥନିବେଶବଦ୍ଭିଃ
ଦୂର୍ବାପ୍ରବାଳୈଃ ପ୍ରତିଭିନ୍ନଶୋଭମ୍ ।
ନିର୍ନାଭିକୌଶେୟମୁପାତ୍ତବାଣମ୍
ଅଭ୍ୟଙ୍ଗନେପଥ୍ୟମଳଙ୍କାର ॥ ୭ ॥

ଅନ୍ୱୟ - ସା ଗୌରସିଦ୍ଧାର୍ଥନିବେଶବଦ୍ଭିଃ ଦୂର୍ବାପ୍ରବାଳୈଃ ପ୍ରତିଭିନ୍ନଶୋଭମ୍
ନିର୍ନାଭିକୌଶେୟମ୍ ଉପାତ୍ତବାଣମ୍ ଅଭ୍ୟଙ୍ଗନେପଥ୍ୟମ୍ ଅଳଙ୍କାର ।

ପଦ୍ୟାନୁବାଦ -

ଧବଳ ସୋରିଷ ଶିର ଚତୁଃପାର୍ଶ୍ୱ
ବୁଲେଇକି ଫିଙ୍ଗାଗଲା
ନାଭିର ଉଛତା ଯାଏ ବିଭୂଷିତା
ପାଟ ବସ୍ତ୍ରେ କରାଗଲା ।

ସେ ରେଶମୀ ବସ୍ତ୍ରେ ଦୁର୍ବାଙ୍କୁର ସହ
ବାଣ ଏକ ଖୋଷାଗଲା
ଏଭଳି ଭାବରେ ସ୍ନାନ ସମୟରେ
ଶୃଙ୍ଗାର ସଂପନ୍ନ ହେଲା ॥ ୭ ॥

### ଶ୍ଳୋକ- ୮

ବଭୌ ଚ ସମ୍ପର୍କମୁପେତ୍ୟ ବାଳା
ନବେବ ଦୀକ୍ଷାବିଧିଶାୟକେନ ।
କରେଣ ଭାନୋର୍ବହୁଳାବସାନେ
ସନ୍ଧୁକ୍ଷ୍ୟମାଣେବ ଶଶାଙ୍କରେଖା ॥ ୮ ॥

ଅନ୍ୱୟ - ବାଳା ନବେବ ଦୀକ୍ଷାବିଧିଶାୟକେନ ସମ୍ପର୍କମ୍ ଉପେତ୍ୟ ବହୁଳାବସାନେ ଭାନୋଃ କରେଣ ସନ୍ଧୁକ୍ଷ୍ୟମାଣା ଶଶାଙ୍କରେଖା ଇବ ବଭୌ ।

ପଦ୍ୟାନୁବାଦ -

ସଂସ୍କାର ସମୟେ ପାର୍ବତୀଙ୍କ ଅଙ୍ଗେ
ଖୋଷାଯାଇଥିବା ବାଣ
ସୌନ୍ଦର୍ଯ୍ୟକୁ ତାଙ୍କ ସେହି ସମୟରେ
ବଢାଇଲା ବହୁ ଗୁଣ ।
ଶୁକ୍ଳ ପକ୍ଷ ବେଳେ ସୂର୍ଯ୍ୟ କର ସ୍ପର୍ଶେ
ଚନ୍ଦ୍ରକଳା ଶୋଭା ପରି
ସେହି ବାଣ ଯୋଗୁ ପାର୍ବତୀଙ୍କ ଶୋଭା
ଚମକିଲା ସେହିପରି ॥ ୮ ॥

### ଶ୍ଳୋକ- ୯

ତାଂ ଲୋଧ୍ରକଲ୍କେନ ହୃତାଙ୍ଗତୈଳାମ୍
ଆଶ୍ୟାନକାଳେୟକୃତାଙ୍ଗରାଗାମ୍ ।
ବାସୋ ବସାନାମଭିଷେକଯୋଗ୍ୟଂ
ନାର୍ଯଶ୍ଚତୁଷ୍କାଭିମୁଖଂ ବ୍ୟନୈଷୁଃ ॥ ୯ ॥

ଅନ୍ୱୟ - ଲୋଧ୍ରକଳ୍କେନ ହୃତାଙ୍ଗତୈଳାମ୍ ଆଶ୍ୟାନକାଳେୟକୃତାଙ୍ଗରାଗାମ୍
ଅଭିଷେକଯୋଗ୍ୟଂ ବାସଃ ବସାନାଂ ତାଂ ନାର୍ଯ୍ୟଃ ଚତୁଷ୍କାଭିମୁଖଂ ବ୍ୟନୈଷୁଃ ।

ପଦ୍ୟାନୁବାଦ -

ତତ୍ପରେ କେତେକ ସୁହାଗିନୀ ନାରୀ
ପାର୍ବତୀଙ୍କର ଦେହରେ
ଲାଗିଥିବା ତୈଳାଂ- ଶକୁ ଦୂର କଲେ
ଲୋଧ୍ରଚୂର୍ଣ୍ଣ ସାହାଯ୍ୟରେ ।
ତାହାପରେ କିଛି ସୁଗନ୍ଧିତ ଦ୍ରବ୍ୟ
ଲଗାଇ ତାଙ୍କ ଶରୀରେ
ସ୍ନାନ ଯୋଗ୍ୟ ବସ୍ତ୍ର ପିନ୍ଧାଇଣ ତାଙ୍କୁ
ନେଇଗଲେ ସ୍ନାନାଗାରେ ॥ ୯ ॥

**ଶ୍ଲୋକ- ୧୦**

ବିନ୍ୟସ୍ତବୈଦୂର୍ଯଶିଳାତଳେଽସ୍ମିନ୍ନ
ଆବଦ୍ଧମୁକ୍ତାଫଳଭକ୍ତିଚିତ୍ରେ ।
ଆବର୍ଜିତାଷ୍ଟାପଦକୁମ୍ଭତୋୟୈଃ
ସତୂର୍ଯମେନାଂ ସ୍ନପୟାମ୍ବଭୂବୁଃ ॥ ୧୦ ॥

ଅନ୍ୱୟ - ବିନ୍ୟସ୍ତବୈଦୂର୍ଯଶିଳାତଳେ ଆବଦ୍ଧମୁକ୍ତାଫଳଭକ୍ତିଚିତ୍ରେ ଅସ୍ମିନ୍ ଏନାମ୍
ଆବର୍ଜିତାଷ୍ଟାପଦକୁମ୍ଭତୋୟୈଃ ସତୂର୍ଯ ସ୍ନପୟାମ୍ବଭୂବୁଃ ।

ପଦ୍ୟାନୁବାଦ -

ଚତୁର୍ସ୍ତମ୍ଭଯୁକ୍ତ ମଣ୍ଡପେ ସଜ୍ଜିତ
ନାନା ରଙ୍ଗ ମୋତିମାଳା
ମଣ୍ଡପ ଉପରି- ଭାଗେ ପଡିଥିଲା
ମରକତମଣି ଶିଳା ।

ସେହି ସୁହାଗିନୀ ନାରୀମାନେ ଘେନି
ଗୌରୀଙ୍କୁ ଶିଳା ଉପରେ
ବସାଇଣ ସ୍ନାନ କଲେ ସମାପନ
ସୁବର୍ଣ୍ଣ କୁମ୍ଭ ଜଳରେ ।
ସ୍ନାନ ସମୟରେ ବାଜୁଥିଲା ନାନା
ମଙ୍ଗଳ ବାଜଣା ମାନ
ସ୍ୱର୍ଣ୍ଣ ପାତ୍ରୁ ଜଳ ଢାଳି ନାରୀମାନେ
କରୁଥିଲେ ଗୀତ ଗାନ ॥ ୧୦ ॥

### ଶ୍ଲୋକ- ୧୧

ସା ମଙ୍ଗଳସ୍ନାନବିଶୁଦ୍ଧଗାତ୍ରୀ
ଗୃହୀତପତ୍ୟୁଦ୍‌ଗମନୀୟବସ୍ତ୍ରା ।
ନିବୃତ୍ତପର୍ଜନ୍ୟଜଳାଭିଷେକା
ପ୍ରଫୁଲ୍ଲକାଶା ବସୁଧେବ ରେଜେ ॥ ୧୧ ॥

ଅନ୍ୱୟ - ମଙ୍ଗଳସ୍ନାନବିଶୁଦ୍ଧଗାତ୍ରୀ ଗୃହୀତପତ୍ୟୁଦ୍‌ଗମନୀୟବସ୍ତ୍ରା ସା, ନିବୃତ୍ତପର୍ଜନ୍ୟଜଳାଭିଷେକା ପ୍ରଫୁଲ୍ଲକାଶା ବସୁଧେବ ରେଜେ ।

ପଦ୍ୟାନୁବାଦ -

ସ୍ନାନ ସମାପନ ପରେ ଅପଘନ
ଗୌରୀଙ୍କ ଶୁଦ୍ଧ ପବିତ୍ର
ବିବାହ ନିମିତ୍ତ ପିନ୍ଧାଇଲେ ତାଙ୍କୁ
ଶୁଦ୍ଧ ଶୁଭ୍ର ଧୌତ ବସ୍ତ୍ର ।
ବର୍ଷା ପରେ ଶୁଭ୍ର କାଶ ପୁଷ୍ପେ ଧରା
ସୁଶୋଭିତ ହେବାପରି
ଶୁଭ୍ର ଧୌତ ବସ୍ତ୍ରେ ସୁଶୋଭିତ ଗୌରୀ
ଦିଶୁଥିଲେ ସେହିପରି ॥ ୧୧ ॥

### ଶ୍ଳୋକ- ୧୨

ତସ୍ମାତ୍‌ପ୍ରବେଶାଚ୍ଚ ବିତାନବନ୍ତଂ
ଯୁକ୍ତଂ ମଣିସ୍ତମ୍ଭଚତୁଷ୍ଟୟେନ ।
ପତିବ୍ରତାଭିଃ ପରିଗୃହ୍ୟ ନିନ୍ୟେ
କୢପ୍ତାସନଂ କୌତୁକବେଦିମଧ୍ୟମ୍ ॥ ୧୨ ॥

ଅନ୍ୱୟ - ସା ତସ୍ମାତ୍ ପ୍ରଦେଶାଦ୍ ବିତାନବନ୍ତଂ ମଣିସ୍ତମ୍ଭଚତୁଷ୍ଟୟେନ ଯୁକ୍ତଂ କୢପ୍ତାସନଂ କୌତୁକବେଦିମଧ୍ୟଂ ପତିବ୍ରତାଭିଃ ପରିଗୃହ୍ୟ ନିନ୍ୟେ ।

ପଦ୍ୟାନୁବାଦ -

ପତିବ୍ରତା ନାରୀ ପାର୍ବତୀଙ୍କୁ ଧରି
ବାହୁବଳୟ ଭିତରେ
ଗାଧୁଆ ଗୃହରୁ ମଙ୍ଗଳବେଦୀକୁ
ଆଣିଲେ ସୁରକ୍ଷିତରେ ।
ମଙ୍ଗଳବେଦୀର ଚାରିପାର୍ଶ୍ୱେ ଚାରି
ସ୍ତମ୍ଭ ମଣିରେ ନିର୍ମିତ
ଉପରେ ଚାନ୍ଦୁଆ ଶୋଭା ପାଉଥିଲା
ମଝିରେ ଆସନଯୁକ୍ତ ॥ ୧୨ ॥

### ଶ୍ଳୋକ- ୧୩

ତାଂ ପ୍ରାଙ୍‌-ମୁଖୀଂ ତତ୍ର ନିବେଶ୍ୟ ତନ୍ୱୀଂ
କ୍ଷଣଂ ବ୍ୟଲମ୍ବନ୍ତ ପୁରୋ ନିଷଣ୍ଣାଃ ।
ଭୂତାର୍ଥଶୋଭାହ୍ରିୟମାଣନେତ୍ରାଃ
ପ୍ରସାଧନେ ସନ୍ନିହିତେଽପି ନାର୍ଯ୍ୟଃ ॥ ୧୩ ॥

ଅନ୍ୱୟ - ନାର୍ଯ୍ୟଃ ତାଂ ତନ୍ୱୀଂ ତତ୍ର ପ୍ରାଙ୍‌-ମୁଖୀଂ ନିବେଶ୍ୟ ପୁରୋ ନିଷଣ୍ଣାଃ ପ୍ରସାଧନେ ସନ୍ନିହିତେ ଅପି ଭୂତାର୍ଥଶୋଭାହ୍ରିୟମାଣନେତ୍ରାଃ ସତ୍ୟଃ କ୍ଷଣଂ ବ୍ୟଲମ୍ବନ୍ତ ।

ପଦ୍ୟାନୁବାଦ -

ସେହି ସବୁ ନାରୀ ମଙ୍ଗଳବେଦୀକୁ
କୃଶାଙ୍ଗୀ ଗୌରୀଙ୍କୁ ନେଇ
ପୂର୍ବମୁହାଁ କରି ବସାଇଲେ ତାଙ୍କୁ
ନିଜେ ବି ବସିଲେ ତହିଁ।
ସମ୍ମୁଖେ ତାଙ୍କର ସମସ୍ତ ଶୃଙ୍ଗାର
ପଦାର୍ଥ ଥିଲା ପ୍ରସ୍ତୁତ
କିନ୍ତୁ ଗୌରୀଙ୍କର ମୁଖ ଶୋଭା ଦେଖି
ହେଲେ ସେମାନେ ମୋହିତ ॥ ୧୩ ॥

**ଶ୍ଳୋକ- ୧୪**

ଧୂପୋଷ୍ମଣା ତ୍ୟାଜିତମାର୍ଦ୍ରଭାବଂ
କେଶାନ୍ତମନ୍ତଃକୁସୁମଂ ତଦୀୟମ୍।
ପର୍ଯାକ୍ଷିପତ୍କାଚିଦୁଦାରବନ୍ଧଂ
ଦୂର୍ବାବତା ପାଣ୍ଡୁମଧୂକଦାମ୍ନା ॥ ୧୪ ॥

ଅନ୍ୱୟ - କାଚିଦ୍ ଧୂପୋଷ୍ମଣା ଆର୍ଦ୍ରଭାବଂ ତ୍ୟାଜିତମ୍ ଅନ୍ତଃ କୁସୁମଂ ତଦୀୟଂ କେଶାନ୍ତଂ ଦୂର୍ବାବତା ପାଣ୍ଡୁମଧୂକଦାମ୍ନା ଉଦାରବନ୍ଧଂ ପର୍ଯାକ୍ଷିପତ୍।

ପଦ୍ୟାନୁବାଦ -

ପ୍ରସାଧିକା କେହି ଧୂପଧୂମ୍ର ଦେଇ
ସେ ଧୂମ୍ରର ଉଷ୍ମତାରେ
ପାର୍ବତୀଙ୍କ ସିକ୍ତ କେଶ କଲେ ମୁକ୍ତ
ଆର୍ଦ୍ରତାରୁ ତାହାପରେ।
ଅନ୍ୟ ଜଣେ କେହି ଗୁନ୍ଥିଦେଲା ନେଇ
କୁସୁମ କେଶେ ତାଙ୍କର
ପାଣ୍ଡୁର ମଧୁକ ପୁଷ୍ପ ମାଳାରେ କେ
ବାନ୍ଧିଲା ଜୁଡା ତାଙ୍କର ॥ ୧୪ ॥

## ଶ୍ଳୋକ- ୧୫

ବିନ୍ୟସ୍ତଶୁକ୍ଳାଗୁରୁ ଚକ୍ରୁରଙ୍ଗଂ
ଗୋରୋଚନାପତ୍ରବିଭକ୍ତମସ୍ୟାଃ ।
ସା ଚକ୍ରବାକାଙ୍କିତସୈକତାୟାଃ
ତ୍ରିସ୍ରୋତସଃ କାନ୍ତିମତୀତ୍ୟ ତସ୍ଥୌ ॥ ୧୫ ॥

ଅନ୍ୱୟ - ତାଃ ଅସ୍ୟାଃ ଅଙ୍ଗଂ ବିନ୍ୟସ୍ତଶୁକ୍ଳାଗୁରୁ ଗୋରୋଚନାପତ୍ରବିଭକ୍ତଂ ଚକ୍ରୁଃ ।
ସା ଚକ୍ରବାକାଙ୍କିତସୈକତାୟାଃ ତ୍ରିସ୍ରୋତସଃ କାନ୍ତିମ୍ ଅତୀତ୍ୟ ତସ୍ଥୌ ।

ପଦ୍ୟାନୁବାଦ -

ଏହାପରେ ଗୌରୀ ଅଙ୍ଗେ ସେହି ନାରୀ
ଶ୍ୱେତ ଅଗୁରୁ ଲେପିଲେ
ତା ଉପରେ ଲାଲ ଗୋରୋଚନେ ଫୁଲ
ପତ୍ର ଚିତ୍ରମାନ କଲେ ।
ଚକ୍ରବାକ ଦଳ ଦ୍ୱାରା ସୁଶୋଭିତ
ମନ୍ଦାକିନୀ ତଟ ଶୋଭା
ଗୌରୀଙ୍କ ସୌନ୍ଦର୍ଯ୍ୟ ତୁଳନାରେ ଥିଲା
ଅତି ତୁଚ୍ଛ କ୍ଷୀଣ ଆଭା ॥ ୧୫ ॥

## ଶ୍ଳୋକ- ୧୬

ଲଗ୍ନଦ୍ୱିରେଫଂ ପରିଭୂୟ ପଦ୍ମଂ
ସମେଘଲେଖଂ ଶଶିନଶ୍ଚ ବିମ୍ବମ୍ ।
ତଦାନନଶ୍ରୀରଳକୈଃ ପ୍ରସିଦ୍ଧୈଃ
ଚିଚ୍ଛେଦ ସାଦୃଶ୍ୟକଥାପ୍ରସଙ୍ଗମ୍ ॥ ୧୬ ॥

ଅନ୍ୱୟ - ପ୍ରସିଦ୍ଧୈଃ ଅଳକୈଃ ତଦାନନଶ୍ରୀଃ ଲଗ୍ନଦ୍ୱିରେଫଂ ପଦ୍ମଂ, ସମେଘଲେଖଂ
ଶଶିନଃ ବିମ୍ବମ୍ ଚ ପରିଭୂୟ ସାଦୃଶ୍ୟକଥାପ୍ରସଙ୍ଗମ୍ ଚିଚ୍ଛେଦ ।

ପଦ୍ୟାନୁବାଦ -

ପୁଷ୍ପେ ଅଳଂକୃତ କେଶପାଶ ଯୁକ୍ତ
ପାର୍ବତୀଙ୍କ ମୁଖ ଶୋଭା
ଅଳିଯୁକ୍ତ ପଦ୍ମ ମେଘେ ଶଶୀ ବିମ୍ବ
ଶୋଭା ଠାରୁ ମନଲୋଭା ।
ପାର୍ବତୀଙ୍କ ମୁଖ ସୌନ୍ଦର୍ଯ୍ୟ ସମସ୍ତ
ଶୋଭା କରି ପରାଜିତ
ନିଜ ଯୋଗ୍ୟ ସର୍ବ ଉପମାନଙ୍କର
ଚର୍ଚ୍ଚା କରିଲା ସମାପ୍ତ ॥ ୧୬ ॥

## ଶ୍ଲୋକ- ୧୭

କର୍ଣ୍ଣାର୍ପିତୋ ଲୋଧ୍ରକଷାୟରକ୍ଷେ
ଗୋରୋଚନାକ୍ଷେପନିତାନ୍ତଗୌରେ ।
ତସ୍ୟା କପୋଳେ ପରଭାଗଲାଭାତ୍
ବବନ୍ଧ ଚକ୍ଷୁଁଷି ଯବପ୍ରରୋହଃ ॥ ୧୭ ॥

ଅନ୍ୱୟ - ତସ୍ୟାଃ କର୍ଣ୍ଣାର୍ପିତଃ ଯବପ୍ରରୋହଃ ଲୋଧ୍ରକଷାୟରକ୍ଷେ ଗୋରୋଚନାକ୍ଷେପନିତାନ୍ତଗୌରେ କପୋଳେ ପରଭାଗଲାଭାତ୍ ଚକ୍ଷୁଁଷି ବବନ୍ଧ ।

ପଦ୍ୟାନୁବାଦ -

ଲୋଧ୍ରଚୂର୍ଣ୍ଣ ଲେପ ହେତୁ ପାର୍ବତୀଙ୍କ
କପୋଳ ଅତି ଉଜ୍ୱଳ
ତଦୁପରି ଗୋରୋ- ଚନା ଲେପ ହେତୁ
ଦିଶୁଥିଲା ଅତି ଲାଲ ।
କର୍ଣ୍ଣରୁ ଝୁଲନ୍ତ ଯବାଙ୍କୁର ଦ୍ୱୟ
କପୋଳ ଉପରି ଭାଗେ
କର୍ଣ୍ଣ ଆଭୂଷଣ ରୂପେ ଆକର୍ଷଣ
କରୁଥିଲା ଦୃଷ୍ଟି ଆଗେ ॥ ୧୭ ॥

## ଶ୍ଲୋକ- ୧୮

ରେଖାବିଭକ୍ତଃ ସୁବିଭକ୍ତଗାତ୍ର୍ୟାଃ
କିଞ୍ଚିନ୍ମଧ୍ୟୋଚ୍ଛିଷ୍ଟବିମୃଷ୍ଟରାଗଃ ।
କାମପ୍ୟଭିଖ୍ୟାଂ ସ୍ଫୁରିତୈରପୁଷ୍ୟଦ୍
ଆସନ୍ନଲାବଣ୍ୟଫଳୋଽଧରୋଷ୍ଠଃ ॥ ୧୮ ॥

ଅନ୍ୱୟ - ସୁବିଭକ୍ତଗାତ୍ର୍ୟାଃ ରେଖାବିଭକ୍ତଃ କିଞ୍ଚିନ୍ମଧ୍ୟୋଚ୍ଛିଷ୍ଟବିମୃଷ୍ଟରାଗଃ ଆସନ୍ନଲାବଣ୍ୟଫଳଃ ଅଧରୋଷ୍ଠଃ, ସ୍ଫୁରିତୈଃ କାମ୍ ଅପି ଅଭିଖ୍ୟାମ୍ ଅପୁଷ୍ୟଦ୍ ।

ପଦ୍ୟାନୁବାଦ -

ସୁଢଳ ସୁନ୍ଦର ଗୌରୀଙ୍କ ଅଧର
ଦ୍ୱୟ ମଧ୍ୟେ ଏକ ରେଖା
ପରାଗ ସଂସ୍ପର୍ଶେ ଆସି ତା ଲାଲିମା
ଦିଶୁଥିଲା ଅତି ଚୋଖା ।
ନିଜ ସୁନ୍ଦରତା ଫଳ ପ୍ରାପ୍ତି ଯୋଗ୍ୟ
ଗୌରୀଙ୍କ ଅଧର ଦ୍ୱୟ
ଯେବେ ବି ସ୍ଫୁରିତ ହେଉଥିଲା ତା'ର
ଶୋଭା ଅନିର୍ବଚନୀୟ ॥ ୧୮ ॥

## ଶ୍ଲୋକ- ୧୯

ପତ୍ୟୁଃ ଶିରଶ୍ଚନ୍ଦ୍ରକଳାମନେନ
ସ୍ପୃଶେତି ସଖ୍ୟା ପରିହାସପୂର୍ବମ୍ ।
ସା ରଞ୍ଜୟିତ୍ୱା ଚରଣୌ କୃତାଶୀଃ
ମାଲ୍ୟେନ ତାଂ ନିର୍ବଚନଂ ଜଘାନ ॥ ୧୯ ॥

ଅନ୍ୱୟ - ତସ୍ୟା ଚରଣୌ ରଞ୍ଜୟିତ୍ୱା 'ଅନେନ ପତ୍ୟୁଃ ଶିରଶ୍ଚନ୍ଦ୍ରକଳାଂ ସ୍ପୃଶ' ଇତି ପରିହାସପୂର୍ବଂ କୃତାଶୀଃ ସା ତାଂ ମାଲ୍ୟେନ ନିର୍ବଚନଂ ଜଘାନ ।

ପଦ୍ୟାନୁବାଦ -

ଗୌରୀଙ୍କର ଏକ ସଖୀ ଅଳକ୍ତକ
ଦ୍ରବ୍ୟେ ତାଙ୍କର ଚରଣ
କରି ରଙ୍ଗାୟିତ ପରିହାସଯୁକ୍ତ
ଆଶୀର୍ବାଦ କଲେ ଦାନ ।
ପରିହାସ ଛଳେ ଏହି ଆଶୀର୍ବାଦ
କହିଲେ ସେ ଗଉରୀଙ୍କୁ
'ରଞ୍ଜିତ ଚରଣେ ସ୍ପର୍ଶ କର ଶିବ
ଶିରସ୍ଥ ଚନ୍ଦ୍ରକଳାକୁ' ।
ଶୁଣି ପରିହାସ ଗଉରୀ ଅବଶ୍ୟ
ସଖୀଙ୍କୁ କିଛି ନକହି
ପୁଷ୍ପମାଲ୍ୟ ଦ୍ୱାରା ମାରିଲେ ସଖୀଙ୍କୁ
ଲାଜ ସରସର ହୋଇ ॥ ୧୯ ॥

## ଶ୍ଳୋକ -୨୦

ତସ୍ୟାଃ ସୁଜାତୋତ୍ପଳପତ୍ରକାନ୍ତେ
ପ୍ରସାଧିକାର୍ଭିନୟନେ ନିରୀକ୍ଷ୍ୟ ।
ନ ଚକ୍ଷୁଷୋ କାନ୍ତିବିଶେଷବୃଦ୍ଧ୍ୟାଃ
କାଳାଞ୍ଜନଂ ମଙ୍ଗଳମିତ୍ୟୁପାତମ୍ ॥ ୨୦ ॥

ଅନ୍ୱୟ - ପ୍ରସାଧିକାଭିଃ ସୁଜାତୋତ୍ପଳପତ୍ରକାନ୍ତେ ତସ୍ୟାଃ ନୟନେ ନିରୀକ୍ଷ୍ୟ କାଳାଞ୍ଜନଂ ଚକ୍ଷୁଷୋ କାନ୍ତିବିଶେଷବୃଦ୍ଧ୍ୟାଃ ନ ଉପାତ୍ତଂ, କିନ୍ତୁ ମଙ୍ଗଳମ୍ ଇତି ଉପାତ୍ତମ୍ ।

ପଦ୍ୟାନୁବାଦ -

ପ୍ରସ୍ଫୁଟିତ ନୀଳ ପଦ୍ମଦଳ ସମ
ଗୌରୀଙ୍କ ଦୁଇ ନୟନ
ଶୃଙ୍ଗାରେ ନିଯୁକ୍ତ ରମଣୀ ସମସ୍ତ
ଭୂଷିତ କଲେ ଅଞ୍ଜନ ।

ଅଞ୍ଜନେ ଭୂଷିତା କରିବା ଉଦ୍ଦେଶ୍ୟ
ନଥିଲା ଶୋଭା ବର୍ଦ୍ଧନ
ଥିଲା ଏହା ଏକ ମଙ୍ଗଳ କାର୍ଯ୍ୟର
ମଙ୍ଗଳକୃତ୍ୟ ବିଧାନ ॥ ୨୦ ॥

**ଶ୍ଳୋକ- ୨୧**

ସା ସମ୍ଭବଭିଃ କୁସୁମୈର୍ଲତେବ
ଜ୍ୟୋତିର୍ଭିରୁଦ୍ୟଭିରିବ ତ୍ରିଯାମା ।
ସରିଦ୍ୱିହଙ୍ଗୈରିବ ଲୀୟମାନୈଃ
ଆମୁଚ୍ୟମାନାଭରଣା ଚକାସେ ॥୨୧ ॥

ଅନ୍ୱୟ- ଆମୁଚ୍ୟମାନାଭରଣା ସା ସମ୍ଭବଭିଃ କୁସୁମୈଃ ଲତା ଇବ, ଉଦ୍ୟଭିଃ ଜ୍ୟୋତିର୍ଭିଃ ତ୍ରିଯାମା ଇବ ଲୀୟମାନୈଃ ବିହଙ୍ଗୈଃ ସରିଦ୍ ଇବ, ଚକାସେ ।

ପଦ୍ୟାନୁବାଦ -

ସୁପୁଷ୍ପା ବଲ୍ଲରି ସତାର ଶର୍ବରୀ
ଦିଶେ ଯେପରି ସୁନ୍ଦର
ନାନା ରଙ୍ଗ ପକ୍ଷୀ ଆସନ୍ତେ ନଦୀର
ରୂପ ଯେହ୍ନେ ମନୋହର ।
ସେପରି ବିଭିନ୍ନ ଆଭୂଷଣମାନ
ଧାରଣ କରନ୍ତେ ଗୌରୀ
ଅଧିକ ପ୍ରକଟ ହେଲା ଶୋଭା ତାଙ୍କ
ଦିଶିଲେ ସେ ମନୋହାରୀ ॥ ୨୧ ॥

**ଶ୍ଳୋକ- ୨୨**

ଆତ୍ମାନମାଲୋକ୍ୟ ଚ ଶୋଭମାନମ୍
ଆଦର୍ଶବିମ୍ବେ ସ୍ତିମିତାୟତାକ୍ଷୀ ।
ହରୋପୟାନେ ତ୍ୱରିତା ବଭୂବ
ସ୍ତ୍ରୀଣାଂ ପ୍ରିୟାଲୋକଫଲୋ ହି ବେଷଃ ॥ ୨୨ ॥

ଅନ୍ୱୟ - ଗୌରୀ ଶୋଭମାନମ୍ ଆତ୍ମାନମ୍ ଆଦର୍ଶବିମ୍ବେ ଆଲୋକ୍ୟ ସ୍ତିମିତାୟତାକ୍ଷୀ ସତୀ ହରୋପୟାନେ ତ୍ୱରିତା ବଭୂବ। ହି ସ୍ତ୍ରୀଣାଂ ବେଷଃ ପ୍ରିୟଆଲୋକଫଳଃ ଭବନ୍ତି।

ପଦ୍ୟାନୁବାଦ -

ବିଭିନ୍ନ ପ୍ରକାର ଶୃଙ୍ଗାର ସମ୍ଭାରେ
ନିଜ ଅଙ୍ଗ ଅଳଂକୃତା
ଦର୍ପଣରେ ଦେଖି ଗୌରୀ ଆୟତାକ୍ଷୀ
ହୋଇଗଲେ ସ୍ତମ୍ଭୀଭୂତା।
ମନେ ତ୍ରିଲୋଚନ ସହିତ ମିଳନ
ଇଚ୍ଛା ହୋଇଲା ପ୍ରବଳ
କାରଣ ନାରୀଙ୍କ 'ସୌନ୍ଦର୍ଯ୍ୟ' ପ୍ରିୟଙ୍କ
ଦର୍ଶନେ ହୁଏ ସଫଳ ॥ ୨୨ ॥

### ଶ୍ଲୋକ- ୨୩, ୨୪

ଅଥାଙ୍ଗୁଳିଭ୍ୟାଂ ହରିତାଳମାର୍ଦ୍ରଂ
ମାଙ୍ଗଲ୍ୟମାଦାୟ ମନଃ ଶିଳାଂ ଚ।
କର୍ଣ୍ଣାବସକ୍ତାମଳଦନ୍ତପତ୍ରଂ
ମାତା ତ୍ୱଦୀୟଂ ମୁଖମୁନ୍ନମୟ୍ୟ ॥ ୨୩ ॥
ଉମାସ୍ତନୋଦ୍ଭେଦମନୁପ୍ରବୃଦ୍ଧୋ
ମନୋରଥ ଯଃ ପ୍ରଥମଂ ବଭୂବ।
ତମେବ ମେନା ଦୁହିତୁଃ କଥଞ୍ଚିତ୍
ବିବାହଦୀକ୍ଷାତିଳକଂ ଚକାର ॥ ୨୪ ॥

ଅନ୍ୱୟ - ଅଥ ମାତା ମାଙ୍ଗଲ୍ୟମ୍ ଆର୍ଦ୍ରଂ ହରିତାଳଂ ମନଃଶିଳାଂ ଚ ଅଙ୍ଗୁଳିଭ୍ୟାମ୍ ଆଦାୟ କର୍ଣ୍ଣାବସକ୍ତାମଳଦନ୍ତପତ୍ରଂ ତଦୀୟଂ ମୁଖମ୍ ଉନ୍ନମୟ୍ୟ ଉମାସ୍ତନୋଦ୍ଭେଦମ୍ ଅନୁପ୍ରବୃଦ୍ଧଃ ଯଃ ମନୋରଥଃ ପ୍ରଥମଂ ବଭୂବ, ମେନା ଦୁହିତୁଃ ତମ୍ ଏବ ବିବାହଦୀକ୍ଷାତିଳକଂ କଥଞ୍ଚିତ୍ ଚକାର।

ପଦ୍ୟାନୁବାଦ -

ଶୃଙ୍ଗାର ସମାପ୍ତ ପରେ ଉପସ୍ଥିତ
ହେଲେ ଗୌରୀଙ୍କର ମାତ
କର୍ଣ୍ଣ ଆଭୂଷଣେ ଭୂଷିତା ଗୌରୀଙ୍କ
ମୁଖକୁ କଲେ ଉହିତ ।
ସ୍ୱ ଅଙ୍ଗୁଳି ଦ୍ୱୟେ ଆର୍ଦ୍ର ହରିତାଳ
ସହ ମନଶିଳା ନେଇ
ମଙ୍ଗଳ ସୂଚକ ତିଳକ ପୁତ୍ରୀଙ୍କ
ମଥାରେ ଦେଲେ ଲଗାଇ ।
ଯେଦିନୁ ଗୌରୀଙ୍କ ବକ୍ଷରେ ବକ୍ଷୋଜ
ହୋଇଲାଣି ଅଙ୍କୁରିତ
ସେ ଦିନଠୁ ମାତା ମେନାଙ୍କର ମନେ
ଜାଗିଲା ଏ ମନୋରଥ ।
ଗୌରୀଙ୍କର ସ୍ତନ ଦିନୁ ପ୍ରତିଦିନ
ହେଉଥିଲା ବୃଦ୍ଧି ପ୍ରାପ୍ତ
ତା ସହିତ ବୃଦ୍ଧି ହେଉଥିଲା ମାତା
ମେନାଙ୍କର ମନୋରଥ ॥ ୨୩-୨୪ ॥

**ଶ୍ଲୋକ- ୨୫**

ବବନ୍ଧ ଚାସ୍ରାକୁଳଦୃଷ୍ଟିରସ୍ୟାଃ
ସ୍ଥାନାନ୍ତରେ କଳ୍ପିତସନ୍ନିବେଶମ୍ ।
ଧାତ୍ର୍ୟଙ୍ଗୁଳିଭିଃ ପ୍ରତିସାର୍ଯମାଣମ୍
ଊର୍ଣ୍ଣାମୟଂ କୌତୁକହସ୍ତସୂତ୍ରମ୍ ॥ ୨୫ ॥

ଅନ୍ୱୟ - ଅସ୍ରାକୁଳଦୃଷ୍ଟିଃ ସା ଅସ୍ୟାଃ ସ୍ଥାନାନ୍ତରେ କଳ୍ପିତସନ୍ନିବେଶମ୍ ଧାତ୍ର୍ୟଙ୍ଗୁଳିଭିଃ ପ୍ରତିସାର୍ଯମାଣମ୍ ଊର୍ଣ୍ଣାମୟଂ କୌତୁକହସ୍ତସୂତ୍ରମ୍ ବବନ୍ଧ ଚ ।

ପଦ୍ୟାନୁବାଦ -

ସେହି ସମୟରେ ମେନାଙ୍କ ଚକ୍ଷୁରେ
ଆନନ୍ଦାଶ୍ରୁ ଗଲା ଭରି
ସେ ପାଇଁ ଗୌରୀଙ୍କ ହସ୍ତକୁ ସେ ଦେଖି
ପାରିଲେନି ଭଲକରି ।
ପଶମେ ନିର୍ମିତ ମାଙ୍ଗଳିକ ସୂତ୍ର
କନ୍ୟା ଗୌରୀଙ୍କ ହସ୍ତରେ
ଅଜାଗାରେ ବାନ୍ଧି ଦେଲେ ଯା ଦେଖିଲେ
ଧାତ୍ରୀ ଯେ ଥିଲେ ପାଖରେ ।
ତେଣୁ ସେହି ଧାତ୍ରୀ ନିଜ ଅଙ୍ଗୁଳିରେ
ସେହି ମଙ୍ଗଳସୂତ୍ରକୁ
ବିଳମ୍ବ ନକରି ଘୁଞ୍ଚାଇ ଦେଲେ ସେ
ହସ୍ତର ଯଥା ସ୍ଥାନକୁ ॥ ୨୫ ॥

## ଶ୍ଳୋକ- ୨୬

କ୍ଷୀରୋଦବେଳେବ ସଫେନପୁଞ୍ଜା
ପର୍ଯାପ୍ତଚନ୍ଦ୍ରେବ ଶରତ୍ତ୍ରିଯାମା ।
ନବଂ ନବକ୍ଷୌମନିବାସିନୀ ସା
ଭୂୟ ବଭୌ ଦର୍ପଣମାଦଧାନ ॥ ୨୬ ॥

ଅନ୍ୱୟ - ନବକ୍ଷୌମନିବାସିନୀ ନବ ଦର୍ପଣଂ ଆଦଧାନା ସା ସଫେନପୁଞ୍ଜା କ୍ଷୀରୋଦବେଳା ଇବ, ପର୍ଯାପ୍ତଚନ୍ଦ୍ରା ଶରତ୍-ତ୍ରି'ଯାମା ଇବ, ଭୂୟଃ ବଭୌ ।

ପଦ୍ୟାନୁବାଦ -

ନବ ପାଟବସ୍ତ୍ର ହୋଇ ପରିହିତ
ହସ୍ତରେ ଦର୍ପଣ ଧରି
ଅତୀବ ସୁନ୍ଦରୀ ଦିଶୁଥିଲେ ଗୌରୀ
ସୁସଜ୍ଜିତା ହୋଇକରି ।

କ୍ଷୀରସିନ୍ଧୁ ତଟ ଫେଣେ ଆଚ୍ଛାଦିତ
ହୋଇ ଦିଶେ ଯେଉଁ ରୂପ
ସୁସଜ୍ଜିତା ଗୌରୀ ଶୋଭା ସେହିପରି
ଦିଶୁଥିଲା ଅପରୂପ ।
ଅବା ଶାରଦୀୟ ପୂର୍ଣ୍ଣମୀ ତିଥିରେ
ସୁଶୋଭିତା ରାତ୍ରି ପରି
ଅତି ମନଲୋଭା ଗୌରୀଙ୍କର ଶୋଭା
ଥିଲା ଅତି ମନୋହାରୀ ॥ ୨୬ ॥

**ଶ୍ଳୋକ- ୨୭**

ତାମାର୍ଚ୍ଚିତାଭ୍ୟଃ କୁଳଦେବତାଭ୍ୟଃ
କୁଳପ୍ରତିଷ୍ଠାଂ ପ୍ରଣମଯ୍ୟ ମାତା ।
ଅକାରୟତ୍କାରୟିତବ୍ୟଦକ୍ଷା
କ୍ରମେଣ ପାଦଗ୍ରହଣଂ ସତୀନାମ୍ ॥ ୨୭ ॥

ଅନ୍ୱୟ - କାରୟିତବ୍ୟଦକ୍ଷା ମାତା କୁଳପ୍ରତିଷ୍ଠାଂ ତାଂ ଅର୍ଚ୍ଚିତାଭ୍ୟଃ କୁଳଦେବତାଭ୍ୟଃ ପ୍ରଣମଯ୍ୟ ସତୀନାଂ ପାଦଗ୍ରହଣଂ କ୍ରମେଣ ଅକାରୟତ୍ ।

ପଦ୍ୟାନୁବାଦ -

ବିବାହର ସର୍ବ ନୀତି ଓ ନିୟମ
ଜାଣିଥିବା ମାତା ମେନା
ପାର୍ବତୀଙ୍କ ଦ୍ୱାରା କୁଳଦେବତାଙ୍କୁ
କରାଇଲେ ବନ୍ଦାପନା ।
ପ୍ରଣାମ କରାଇ ଉପସ୍ଥିତ ଥିବା
ପତିବ୍ରତାଙ୍କ ଚରଣ
ସ୍ପର୍ଶ କରାଇଲେ ନ କରି କୌଣସି
ରୀତିକୁ ସେ ଉଲଙ୍ଘନ ॥ ୨୭ ॥

## ଶ୍ଳୋକ- ୨୮

ଅଖଣ୍ଡିତ ପ୍ରେମ ଲଭସ୍ୱ ପତ୍ୟୁଃ
ଇତ୍ୟୁଚ୍ୟତେ ତାଭିରୁମା ସ୍ମ ନମ୍ରା ।
ତୟା ତୁ ତସ୍ୟାର୍ଧଶରୀରଭାଜା
ପଶ୍ଚାତ୍କୃତାଃ ସ୍ନିଗ୍ଧଜନାର୍ଶିଷୋଽପି ॥ ୨୮ ॥

ଅନ୍ୱୟ - ନମ୍ରା ଉମା ତାଭି 'ପତ୍ୟୁଃ ଅଖଣ୍ଡିତଂ ପ୍ରେମ ଲଭସ୍ୱ' ଇତି ଉଚ୍ୟତେ ସ୍ମ ତସ୍ୟ ଅର୍ଧଶରୀରଭାଜା ତୟା ତୁ ସ୍ନିଗ୍ଧଜନାଶିଷଃ ଅପି ପଶ୍ଚାତ୍କୃତାଃ ।

ପଦ୍ୟାନୁବାଦ -

ପତିବ୍ରତା ନାରୀ ନମ୍ରମୁଖୀ ଗୌରୀ
ପ୍ରଣିପାତେ ହୋଇ ତୋଷ
ପତିଙ୍କ ଅଖଣ୍ଡ ପ୍ରେମ ପ୍ରାପ୍ତି ପାଇଁ
ପ୍ରଦାନ କଲେ ଆଶିଷ ।
ପ୍ରିୟଜନଙ୍କର ଅଖଣ୍ଡ ପ୍ରେମର
ଆଶିଷଠୁ ବଳିକରି
ପତି ଶଂକରଙ୍କ ଅଧା ଶରୀରକୁ
ଅଧିକାର କଲେ ଗୌରୀ ॥ ୨୮ ॥

## ଶ୍ଳୋକ- ୨୯

ଇଚ୍ଛାବିଭୂତ୍ୟୋରନୁରୂପମଦ୍ରିଃ
ତସ୍ୟାଃ କୃତୀ କୃତ୍ୟମଶେଷୟିତ୍ୱା ।
ସଭ୍ୟଃ ସଭାୟାଂ ସୁହୃଦାସ୍ଥିତାୟାଂ
ତସ୍ଥୌ ବୃଷାଙ୍କାଗମନପ୍ରତୀକ୍ଷ୍ୟଃ ॥ ୨୯ ॥

ଅନ୍ୱୟ - କୃତୀ ସଭ୍ୟଃ ଅଦ୍ରିଃ ଇଚ୍ଛାବିଭୂତ୍ୟୋଃ ଅନୁରୂପଂ ତସ୍ୟାଃ କୃତ୍ୟମ୍ ଅଶେଷୟିତ୍ୱା ସୁହୃଦାସ୍ଥିତାୟାଂ ସଭାୟାମ୍ ବୃଷାଙ୍କାଗମନପ୍ରତୀକ୍ଷ୍ୟଃ ସନ୍ ତସ୍ଥୌ ।

ପଦ୍ୟାନୁବାଦ -

ନିଜର ଐଶ୍ୱର୍ଯ୍ୟ ଇଚ୍ଛା ଅନୁରୂପ
ଶ୍ରେଷ୍ଠଗିରି ହିମବାନ
ଗୌରୀଙ୍କ ବିବାହ ସଂସ୍କାରେ ଯା ନିଜେ
କରିବା କଲେ ସଂପନ୍ନ ।
ଏହାପରେ ବନ୍ଧୁ ବାନ୍ଧବଙ୍କ ସହ
ଆସିଲେ ପୂର୍ଣ୍ଣ ସଭାକୁ
ସଭାକୁ ଆସିଣ ଅପେକ୍ଷା କରିଲେ
ଶିବଙ୍କ ଆଗମନକୁ ॥ ୨୯ ॥

**ଶ୍ଳୋକ- ୩୦**

ତାବଭବସ୍ୟାପି କୁବେରଶୈଳେ
ତତ୍ପୂର୍ବପାଣିଗ୍ରହଣାନୁରୂପମ୍ ।
ପ୍ରସାଧନଂ ମାତୃଭିରାଦୃତାଭିଃ
ନ୍ୟସ୍ତଂ ପୁରସ୍ତାତ୍ପୁରଶାସନସ୍ୟ ॥ ୩୦ ॥

ଅନ୍ୱୟ - ତାବତ୍ କୁବେରଶୈଳେ ତତ୍ପୂର୍ବପାଣିଗ୍ରହଣାନୁରୂପମ୍ ପ୍ରସାଧନମ୍ ଆଦୃତାଭିଃ ମାତୃଭିଃ ପୁରଶାସନସ୍ୟ ଭବସ୍ୟାପି ପୁରସ୍ତାତ୍ ନ୍ୟସ୍ତମ୍ ।

ପଦ୍ୟାନୁବାଦ -

ଯେଉଁ ସମୟରେ ବିବାହ ଶୃଙ୍ଗାର
ହେଉଥିଲା ଗୌରୀଙ୍କର
ସେକାଳେ କୈଳାସେ ହେଉଥିଲା ମଧ୍ୟ
ପ୍ରସାଧନ ଶିବଙ୍କର ।
ପ୍ରଥମ ବିବାହ ଶୃଙ୍ଗାର ସାମଗ୍ରୀ
ଅନୁରୂପ ବସ୍ତୁମାନ
ଶିବଙ୍କ ସମ୍ମୁଖେ ରଖିଦେଲେ ଆଣି
ବ୍ରାହ୍ମୀ ଆଦି ମାତୃଗଣ ॥ ୩୦ ॥

## ଶ୍ଳୋକ -୩୧

ତଦ୍‌ଗୌରବାନ୍ମଙ୍ଗଳମଣ୍ଡନଶ୍ରୀଃ
ସା ପସ୍ପୃଶେ କେବଳମୀଶ୍ୱରେଣ ।
ସ ଏବ ବେଷଃ ପରିଣେତୁରିଷ୍ଟଂ
ଭାବାନ୍ତର ତସ୍ୟ ବିଭୋଃ ପ୍ରପେଦେ ॥ ୩୧ ॥

ଅନ୍ୱୟ - ଈଶ୍ୱରେଣ ସା ମଙ୍ଗଳମଣ୍ଡନଶ୍ରୀଃ ତଦ୍‌ଗୌରବାତ୍ କେବଳଂ ପସ୍ପୃଶେ । କିନ୍ତୁ ତସ୍ୟ ବିଭୋଃ ସ ଏବ ବେଷଃ ପରିଣେତୁଃ ଇଷ୍ଟଂ ଭାବାନ୍ତରଂ ପ୍ରପେଦେ ।

ପଦ୍ୟାନୁବାଦ -

ସମସ୍ତ ଶୃଙ୍ଗାର ବସ୍ତୁକୁ ଶଂକର
ଧାରଣ କରିଲେ ନାହିଁ
ସପ୍ତମାତୃକାଙ୍କ ସମ୍ମାନାର୍ଥେ ଖାଲି
ଦେଲେ ସେ ସ୍ପର୍ଶକୁ ଛୁଇଁ ।
ସବୁ କିଛି କରି ପାରିବା ସାମର୍ଥ୍ୟ
ରହିଅଛି ଶିବଙ୍କର
ତାଙ୍କରି ଇଚ୍ଛାରେ ବିବାହ ବେଶକୁ
ହୋଇଲେ ସେ ରୂପାନ୍ତର ॥ ୩୧ ॥

## ଶ୍ଳୋକ- ୩୨

ବଭୂବ ଭସ୍ମୈବ ସିତାଙ୍ଗରାଗଃ
କପାଳମେବାମଳଶେଖରଶ୍ରୀଃ ।
ଉପାନ୍ତଭାଗେଷୁ ଚ ରୋଚନାଙ୍କୋ ।
ଗଜାଜିନସ୍ୟୈବ ଦୂକୂଳଭାବଃ ॥ ୩୨ ॥

ଅନ୍ୱୟ - ଭସ୍ମ ଏବ ସିତାଙ୍ଗରାଗଃ ବଭୂବ, କପାଳମ୍ ଏବ ଅମଳଶେଖରଶ୍ରୀଃ ବଭୂବ ଗଜାଜିନସ୍ୟ ଏବ ଉପାନ୍ତଭାଗେଷୁ ରୋଚନାଙ୍କଃ ଦୂକୂଳଭାବଶ୍ଚବଭୂବ ।

ପଦ୍ୟାନୁବାଦ -

ଅଙ୍ଗେ ବିଭୂଷିତ ଚିତାଭସ୍ମ ହେଲା
ଶୁଭ୍ର ଗନ୍ଧାନୁଲେପନ
ଶିରରେ କପାଳ ଦିଶଇ ସୁନ୍ଦର
ହୋଇ ତାଙ୍କ ଶିର ତ୍ରାଣ ।
ଗଜଚର୍ମ ହେଲା ରେଶମୀ ଦୁକୂଳ
ଯାହାର ଉପାନ୍ତ ଦେଶେ
ମାଙ୍ଗଳିକ ଚିତ୍ର ଶୋଭା ପାଉଥିଲେ
ଶିବଙ୍କର ସେ ସୁବେଶେ ।। ୩୨ ।।

## ଶ୍ଳୋକ- ୩୩

ଶଙ୍ଖାନ୍ତରଦ୍ୟୋତି ବିଲୋଚନଂ
ଯଦନ୍ତର୍ନିବିଷ୍ଟାମଲପିଙ୍ଗତାରମ୍ ।
ସାନ୍ନିଧ୍ୟପକ୍ଷେ ହରିତାଳମୟ୍ୟାଃ
ତଦେବ ଜାତଂ ତିଳକକ୍ରିୟାୟାଃ ।। ୩୩ ।।

ଅନ୍ୱୟ - ଶଙ୍ଖାନ୍ତରଦ୍ୟୋତି ଯଦନ୍ତର୍ନିବିଷ୍ଟାମଲପିଙ୍ଗତାରମ୍ ଯଦ୍ ବିଲୋଚନଂ; ତଦ୍ ଏବ ହରିତାଳମୟ୍ୟାଃ ତିଳକକ୍ରିୟାୟାଃ ସାନ୍ନିଧ୍ୟପକ୍ଷେ ଜାତମ୍ ।

ପଦ୍ୟାନୁବାଦ -

ପୀତ ପୁତ୍ତଳିକା ଯୁକ୍ତ ଶିବଙ୍କର
ଶୁଭ୍ର ତୃତୀୟ ନୟନ
ହରିତାଳ ଚିତା ସମ ଶୋହୁଥିଲା
ଲଲାଟ ମଧ୍ୟଭାଗେଣ ।। ୩୩ ।।

### ଶ୍ଳୋକ- ୩୪

ଯଥାପ୍ରଦେଶଂ ଭୂଜଗେଶ୍ୱରାଣାଂ
କରିଷ୍ୟତାମାଭରଣାନ୍ତରତ୍ୱମ୍ ।
ଶରୀରମାତ୍ରଂ ବିକୃତିଂ ପ୍ରପେଦେ
ତଥୈବ ତସ୍ଥୁଃ ଫଣରତ୍ନଶୋଭାଃ ॥ ୩୪ ॥

ଅନ୍ୱୟ - ଯଥାପ୍ରଦେଶଂ ଆଭରଣାନ୍ତରତ୍ୱମ୍ କରିଷ୍ୟତାମ୍ ଭୂଜଗେଶ୍ୱରାଣାଂ ଶରୀରମାତ୍ରଂ ବିକୃତି ପ୍ରପେଦେ । ଫଣରତ୍ନଶୋଭାଃ ତଥା ଏବ ତସ୍ଥୁଃ ।

ପଦ୍ୟାନୁବାଦ -

ଯେଉଁ ଯେଉଁ ଅଙ୍ଗ ଉପରେ ଭୁଜଙ୍ଗ
ରହିଥିଲେ ଶିବଙ୍କର
ସେହି ସେହି ଅଙ୍ଗ ଆଭୂଷଣ ରୂପେ
ହୋଇଗଲେ ରୂପାନ୍ତର ।
ମାତ୍ର ସେମାନଙ୍କ ଶରୀର କେବଳ
ହେଲେ ଅଙ୍ଗ ଆଭୂଷଣ
ଫଣାପରେ ଥିବା ମଣିମାନ ସବୁ
ରହିଲେ ଜାଜ୍ୱଲ୍ୟମାନ ॥ ୩୪ ॥

### ଶ୍ଳୋକ- ୩୫

ଦିବାପି ନିଷ୍ଠ୍ୟୂତମରୀଚିଭାସା
ବାଲ୍ୟାଦନାବିଷ୍କୃତଲାଞ୍ଛନେନ ।
ଚନ୍ଦ୍ରେଣ ନିତ୍ୟଂ ପ୍ରତିଭିନ୍ନମୌଳେଃ
ଚୂଡାମଣେଃ କିଂ ଗ୍ରହଣଂ ହରସ୍ୟ ॥ ୩୫ ॥

ଅନ୍ୱୟ - ଦିବା ଅପି ନିଷ୍ଠ୍ୟୂତମରୀଚିଭାସା ବାଲ୍ୟାଦ୍ ଅନାବିଷ୍କୃତଲାଞ୍ଛନେନ ଚନ୍ଦ୍ରେଣ ପ୍ରତିଭିନ୍ନମୌଳେଃ ହରସ୍ୟ ଚୂଡାମଣେଃ ଗ୍ରହଣଂ କିମ୍ ।

ପଦ୍ୟାନୁବାଦ -

ଦିନରେ କିରଣ କରି ବିଚ୍ଛୁରଣ
ବାଳଚନ୍ଦ୍ର ଶିବଶିରେ
ଚୂଡ଼ାମଣି ରୂପେ ଶୋଭା ପାଉଥିଲେ
କଳଙ୍କହୀନ ଭାବରେ ।
ଚୂଡ଼ାମଣି ରୂପେ ବାଳଚନ୍ଦ୍ର ଶୋହୁ
ଥିବାରୁ ଶିବଙ୍କ ଶିରେ
ଅନ୍ୟ ଚୂଡ଼ାମଣି ଧାରଣ କରିବା
ପଡ଼ିଲାନି ଆଉଥରେ ॥ ୩୫ ॥

### ଶ୍ଳୋକ- ୩୬

ଇତ୍ୟଭୁତୈକପ୍ରଭବଃ ପ୍ରଭାବାତ୍
ପ୍ରସିଦ୍ଧନେପଥ୍ୟବିଧେର୍ବିଧାତା ।
ଆତ୍ମାନମାସନ୍ନଗଣୋପନୀତେ
ଖଡ୍ଗେ ନିଷକ୍ତପ୍ରତିମଂ ଦଦର୍ଶ ॥ ୩୬ ॥

ଅନ୍ୱୟ - ଇତି ପ୍ରଭାବାତ୍ ପ୍ରସିଦ୍ଧନେପଥ୍ୟବିଧେଃ ବିଧାତା ଅଭୁତୈକପ୍ରଭବଃ ସଃ ଆସନ୍ନଗଣୋପନୀତେ ଖଡ୍ଗେ ନିଷକ୍ତପ୍ରତିମଂ ଆତ୍ମାନଂ ଦଦର୍ଶ ।

ପଦ୍ୟାନୁବାଦ -

ସ୍ୱ ଶକ୍ତି ପ୍ରୟୋଗେ ସୃଷ୍ଟି କରୁଥିବା
ଲୌକିକ ଭୂଷଣ ଶିବ
ପାଶେ ସ୍ଥିତ ଗଣ ଆଣିଥିବା ଖଡ୍ଗେ
ଦେଖିଲେ ସ୍ୱ ପ୍ରତିବିମ୍ବ ॥ ୩୬ ॥

### ଶ୍ଲୋକ- ୩୭

ସ ଗୋପତିଂ ନନ୍ଦିଭୁଜାବଲମ୍ବୀ
ଶାର୍ଦ୍ଦୁଳଚର୍ମାନ୍ତରିତୋରୁପୃଷ୍ଠମ୍ ।
ତଭକ୍ତିସଂକ୍ଷିପ୍ତବୃହତ୍ପ୍ରମାଣମ୍
ଆରୁହ୍ୟ କୈଳାସମିବ ପ୍ରତସ୍ଥେ ॥ ୩୭ ॥

ଅନ୍ୱୟ - ସ ନନ୍ଦିଭୁଜାବଲମ୍ବୀ ସନ୍ ଶାର୍ଦ୍ଦୁଳଚର୍ମାନ୍ତରିତୋରୁପୃଷ୍ଠମ୍ ଗୋପତିଂ ତଭକ୍ତିସଂକ୍ଷିପ୍ତବୃହତ୍ପ୍ରମାଣମ୍ କୈଳାସମ୍ ଇବ ଆରୁହ୍ୟ ପ୍ରତସ୍ଥେ ।

ପଦ୍ୟାନୁବାଦ -

ଏହା ପରେ ଶିବ ଧରି ନନ୍ଦୀଭୁଜ
ବୃଷଭ ପୃଷ୍ଠଭାଗରେ
ଆରୋହଣ କଲେ ଆଚ୍ଛାଦିତ ଯାହା
ଥିଲା ଶାର୍ଦ୍ଦୂଳ ଚର୍ମରେ ।
ଶିବ ପ୍ରତି ଭକ୍ତି କାରଣରୁ ଅତି
ବିଶାଳକାୟା ସଂପନ୍ନ
କୈଳାଶ ସତେକି କରିଅଛି ଆଜ
ବୃଷଭ ରୂପ ଧାରଣ ॥ ୩୭ ॥

### ଶ୍ଲୋକ- ୩୮

ତଂ ମାତରୋ ଦେବମନୁବ୍ରଜନ୍ତ୍ୟଃ
ସ୍ୱବାହନକ୍ଷୋଭଚଳାବତଂସାଃ ।
ମୁଖୈଃ ପ୍ରଭାମଣ୍ଡଳରେଣୁଗୌରୈଃ
ପଦ୍ମାକରଂ ଚକ୍ରୁରିବାନ୍ତରିକ୍ଷ୍ୟମ୍ ॥ ୩୮ ॥

ଅନ୍ୱୟ - ତମ୍ ଅନୁବ୍ରଜନ୍ତ୍ୟଃ ସ୍ୱବାହନକ୍ଷୋଭଚଳାବତଂସାଃ ମାତରଃ ପ୍ରଭାମଣ୍ଡଳରେଣୁଗୌରୈଃ ମୁଖୈଃ ଅନ୍ତରିକ୍ଷ୍ୟଂ ପଦ୍ମାକରଂଚକ୍ରୁଃ ଇବ ।

ପଦ୍ୟାନୁବାଦ -

ସପ୍ତ ମାତୃଗଣ ଶିବାନୁଗମନ
କଲେ ନିଜ ନିଜ ରଥେ
ହଲନ୍ତେ ସ୍ୟନ୍ଦନ କର୍ଣ୍ଣ ଆଭୂଷଣ
ଦୋହଲିଲା ତା'ର ସାଥେ।
କର୍ଣ୍ଣ ଆଭୂଷଣ ହଲି ବଢାଇଲା
ସେମାନଙ୍କ ମୁଖ ଆଭା
ଦିଶୁଥିଲା ପଦ୍ମେ ପୂର୍ଣ୍ଣ ସର ପରି
ନୀଳ ଆକାଶର ଶୋଭା ॥ ୩୮ ॥

## ଶ୍ଳୋକ -୩୯

ତାସାଂ ଚ ପଶ୍ଚାତ୍କନକପ୍ରଭାଣାଂ
କାଳୀ କପାଳାଭରଣା ଚକାସେ।
ବଳାକିନୀ ନୀଳପୟୋଦରାଜୀ
ଦୂରଂ ପୁରଃ କ୍ଷିପ୍ତଶତହ୍ରଦେବ ॥ ୩୯ ॥

ଅନ୍ୱୟ - କନକପ୍ରଭାଣାଂ ତାସାଂ ପଶ୍ଚାତ୍ କପାଳାଭରଣା କାଳୀ ଚ ବଳାକିନୀ ଦୂରଂ ପୁରଃ କ୍ଷିପ୍ତଶତହ୍ରଦା ନୀଳପୟୋଦରାଜୀଃ ଇବ' ଚକାସେ।

ପଦ୍ୟାନୁବାଦ -

ସପ୍ତ ମାତୃଗଣ ନୀଳ ନଭଦେଶେ
ଚଳିଥିଲେ ଆଗେ ଆଗେ
ସ୍ୱର୍ଣ୍ଣ ସମ କାନ୍ତି ଭଦ୍ରକାଳୀ ସତୀ
ଚଳୁଥିଲେ ପୃଷ୍ଠଭାଗେ।
ଧବଳ କପାଳ ମାଳେ ଭଦ୍ରକାଳୀ
ହୋଇଥିଲେ ଆଭୂଷିତା
ଦିଶୁଥିଲେ ସତେ ବକପଂକ୍ତି ଘେରେ
କଳାମେଘ ବିଦ୍ୟୁତ୍-ଯୁକ୍ତା ॥ ୩୯ ॥

### ଶ୍ଲୋକ- ୪୦

ତତୋ ଗଣୈଃ ଶୂଳଭୃତଃ ପୁରୋଗୈଃ
ଉଦୀରିତୋ ମଙ୍ଗଳତୂର୍ଯ୍ୟଘୋଷଃ ।
ବିମାନଶୃଙ୍ଗାଣ୍ୟବଗାହମାନଃ
ଶଶଂସ ସେବାବସରଂ ସୁରେଭ୍ୟଃ ॥ ୪୦ ॥

ଅନ୍ୱୟ - ତତଃ ଶୂଳଭୃତଃ ପୁରୋଗୈଃ ଗଣୈଃ ଉଦୀରିତଃ ମଙ୍ଗଳତୂର୍ଯ୍ୟଘୋଷଃ ବିମାନଶୃଙ୍ଗାଣି ଅବଗାହମାନଃ ସନ୍ ସୁରେଭ୍ୟଃ ସେବାବସରଂ ଶଶଂସ ।

ପଦ୍ୟାନୁବାଦ -

ଏହା ପରେ ପରେ ଶିବଙ୍କ ଆଗରେ
ଚାଲୁଥିଲେ ଶିବଗଣ
ତୂରୀ ବଜାଇଣ କରୁଥିଲେ ଗଣ
ମଙ୍ଗଳଧ୍ୱନି ଉତ୍ପନ୍ନ
ସେ ମଙ୍ଗଳଧ୍ୱନି ଦେବ ବିମାନର
ଶିଖରରେ ବାଧା ପାଇ
ଶିବସେବା ପାଇଁ ପ୍ରକୃଷ୍ଟ ସମୟ
ଦେଉଥିଲା ତାହା କହି ॥ ୪୦ ॥

### ଶ୍ଲୋକ- ୪୧

ଉପାଦଦେ ତସ୍ୟ ସହସ୍ରରଶ୍ମିଃ
ତ୍ୱଷ୍ଟ୍ରା ନବଂ ନିର୍ମିତମାତପତ୍ରମ୍ ।
ସ ତଦ୍ଦୁକୂଳାଦବିଦୂରମୌଳିଃ
ବଭୌ ପତଦ୍‌ଗଙ୍ଗ ଇବୋତ୍ତମାଙ୍ଗେ ॥ ୪୧ ॥

ଅନ୍ୱୟ- ତସ୍ୟ ସହସ୍ରରଶ୍ମିଃ ତ୍ୱଷ୍ଟ୍ରା ନିର୍ମିତଂ ନବମ୍ ଆତପତ୍ରମ୍ ଉପାଦଦେ, ତଦ୍ଦୁକୂଳାଦ୍ ଅବିଦୂରମୌଳିଃ ସ ଉତ୍ତମାଙ୍ଗେ ପତଦ୍‌ଗଙ୍ଗ ଇବ ବଭୌ ।

ପଦ୍ୟାନୁବାଦ -

ବଶ୍ୱକର୍ମା ଦ୍ୱାରା ନିର୍ମିତ ନବୀନ
ଛତ୍ରକୁ ଉଠାଇ ନେଇ
ସହସ୍ରାଂଶୁ ସୂର୍ଯ୍ୟ ଶିବଙ୍କର ଶିର
ଉପରେ ଦେଲେ ଲଗାଇ ।
ଛତ୍ରର ଝୁଲନ୍ତ ଶ୍ୱେତ ବସ୍ତ୍ର ଶିବ-
ଶିର ନିକଟେ ପହଞ୍ଚି
ପ୍ରତେ ହେଉଥିଲା ସତେକି ଗଙ୍ଗାର
ଧାର ଉପରୁ ଖସୁଛି ॥ ୪୧ ॥

## ଶ୍ଳୋକ- ୪୨

ମୂର୍ତେ ଚ ଗଙ୍ଗାଯମୁନେ ତଦାନୀଂ
ସଚ୍ଚାମରେଦେବମସେବିଷାତାମ୍ ।
ସମୁଦ୍ରଗାରୂପବିପର୍ଯ୍ୟୟେଽପି
ସହଂସପାତେ ଇବ ଲକ୍ଷ୍ୟମାଣେ ॥

ଅନ୍ୱୟ - ଗଙ୍ଗାଯମୁନେ ଚ ତଦାନୀଂ ମୂର୍ତେ ସଚ୍ଚାମରେ ସମୁଦ୍ରଗାରୂପବିପର୍ଯ୍ୟୟେ ଅପି ସହଂସପାତେ ଇବ ଲକ୍ଷ୍ୟମାଣେ ଦେବମ୍ ଅସେବିଷାତାମ୍ ।

ପଦ୍ୟାନୁବାଦ -

ସୌମ୍ୟା ରୂପା ଗଙ୍ଗା ସହିତ ଯମୁନା
ହସ୍ତେ ଧରିଣ ଚାମର
ସେବା ଉଦ୍ଦେଶ୍ୟରେ ଚାମର ଚାଳନା
କଲେ ଶିବଙ୍କ ଉପର ।
ସମୁଦ୍ର ଗାମିନୀ ନଦୀର ରୂପକୁ
ଅଛନ୍ତି ସେମାନେ ଛାଡି
ଚାମର ଚାଳନା ହେତୁ ଦିଶୁଛନ୍ତି
ହଂସ ଗଲାପରି ଉଡି ॥ ୪୨ ॥

## ଶ୍ଳୋକ- ୪୩

ତମଭ୍ୟଗଚ୍ଛତ୍ପ୍ରଥମୋ ବିଧାତା
ଶ୍ରୀବତ୍ସଲକ୍ଷ୍ମା ପୁରୁଷଶ୍ଚ ସାକ୍ଷାତ୍ ।
ଜୟେତି ବାଚ୍ଚ ମହିମାନମସ୍ୟ
ସମ୍ବର୍ଦ୍ଧୟନ୍ତୌ ହବିଷେବ ବହ୍ନିମ୍ ॥ ୪୩ ॥

ଅନ୍ୱୟ - ପ୍ରଥମଃ ବିଧାତା ଶ୍ରୀବତ୍ସଲକ୍ଷ୍ମା ପୁରୁଷଶ୍ଚ ସାକ୍ଷାତ୍ ତମ୍ ଅଭ୍ୟଗଚ୍ଛତ୍ । ଜୟ ଇତି ବାଚ୍ଚ ଅସ୍ୟ ମିହିମାନଂ 'ହବିଷା ବହ୍ନି ଇବ' ସମ୍ବର୍ଦ୍ଧୟନ୍ତୌ ତୌ ଅବର୍ତିତାମ୍ ଇତି ଶେଷଃ ।

ପଦ୍ୟାନୁବାଦ -

ସୃଷ୍ଟିକର୍ତ୍ତା ବ୍ରହ୍ମା ତଥା ନାରାୟଣ
ଶ୍ରୀବତ୍ସ ଚିହ୍ନେ ଶୋଭିତ
ମହାଦେବଙ୍କର ନିକଟରେ ଦୁହେଁ
ହେଲେ ଯାଇ ଉପଗତ ।
ଜୟକାର କରି ମହିମା ତାଙ୍କର
କଲେ ଏପରି ଗାୟନ
ଯେପରି ଅଗ୍ନିରେ ଘିଅ ପକାଇଲେ
ଶିଖା ହୁଏ ଲେଲିହାନ ॥ ୪୩ ॥

## ଶ୍ଳୋକ- ୪୪

ଏକୈବ ମୂର୍ତିବିଭିଦେ ତ୍ରିଧା ସା
ସାମାନ୍ୟମେଷାଂ ପ୍ରଥମାବରତ୍ୱମ ।
ବିଷ୍ଣୋର୍ହରସ୍ତସ୍ୟ ହରିଃ କଦାଚିଦ୍
ବେଧାସ୍ତୟୋସ୍ତାବପି ଧାତରାଦ୍ୟୌ ॥ ୪୪ ॥

ଅନ୍ୱୟ - ସା ଏକା ଏବ ମୂର୍ତ୍ତିଃ ତ୍ରିଧା ବିଭିଦେ, ଏଷାଂ ପ୍ରଥମାବରତ୍ୱଂ ସାମାନ୍ୟମ୍, କଦାଚିଦ୍ ହରଃ ବିଷ୍ଣୋଃ ଆଦ୍ୟଃ, କଦାଚିଦ୍ ହରିଃ ତସ୍ୟ ଆଦ୍ୟଃ, କଦାଚିଦ୍ ବେଧାଃ ତୟୋଃ ଆଦ୍ୟଃ କଦାଚିତ୍ ତୌ ଅପି ଧାତୁଃ ଆଦ୍ୟୌ ।

ପଦ୍ୟାନୁବାଦ -

ଏ କଥା ଯେ ସତ୍ୟ ବ୍ରହ୍ମା ବିଷ୍ଣୁ ଶିବ
ଏକ ମୂର୍ତ୍ତି ତିନି ରୂପ
ସମୟାନୁସାରେ କାହାର ମହତ୍ୱ
ହୋଇଥାଏ ବେଶି ଅଳ୍ପ ।
କେବେ ଶିବ କେବେ ବିଷ୍ଣୁ ଅବା ବ୍ରହ୍ମା
ନିଅନ୍ତି ପ୍ରଥମ ସ୍ଥାନ
କେବେ ବିଷ୍ଣୁ ଶିବ ବ୍ରହ୍ମାଙ୍କ ପୂର୍ବରୁ
ହୋଇଥାନ୍ତି ଆବାହନ ॥ ୪୪ ॥

## ଶ୍ଳୋକ- ୪୫

ତଂ ଲୋକପାଳାଃ ପୁରୁହୂତମୁଖ୍ୟାଃ
ଶ୍ରୀଲକ୍ଷଣୋତ୍ସର୍ଗବିନୀତବେଶାଃ ।
ଦୃଷ୍ଟିପ୍ରଦାନେ କୃତନନ୍ଦିସଂଜ୍ଞାଃ
ତଦ୍ଦର୍ଶିତାଃ ପ୍ରାଞ୍ଜଳୟଃ ପ୍ରଣେମୁ ॥ ୪୫ ॥

ଅନ୍ୱୟ - ଶ୍ରୀଲକ୍ଷଣୋତ୍ସର୍ଗବିନୀତବେଶାଃ ଦୃଷ୍ଟିପ୍ରଦାନେ କୃତନନ୍ଦିସଂଜ୍ଞାଃ ତଦ୍ଦର୍ଶିତାଃ ପୁରୁହୂତମୁଖ୍ୟାଃ ଲୋକପାଳାଃ ପ୍ରାଞ୍ଜଳୟଃ ସନ୍ତଃ ତଂ ପ୍ରଣେମୁ ।

ପଦ୍ୟାନୁବାଦ -

ନିଜ ରାଜକୀୟ ଥାଟବାଟ ଛାଡି
ଇନ୍ଦ୍ର ଆଦି ଲୋକପାଳ
ବିନୀତ ଭାବରେ ଶିବଙ୍କ ପାଶରେ
ପହଞ୍ଚିଲେ ହୋଇ ମେଳ ।
ଦର୍ଶନ ନିମନ୍ତ ନନ୍ଦୀଙ୍କୁ ସଂକେତ
ଦେଇ କରିଲେ ପ୍ରାର୍ଥନା
ଜଣ ଜଣ କରି ଡାକିକରି ନନ୍ଦୀ
ପୂରଣ କଲେ କାମନା ।

ଇନ୍ଦ୍ର ଆଦି ଯେତେ        ଲୋକପାଳମାନେ
ଶିବଙ୍କୁ ଦର୍ଶନ କଲେ
ଦର୍ଶନ ସମୟେ        ହାତ ଯୋଡି ସର୍ବେ
ପ୍ରଣାମ ବି ଜଣାଇଲେ ॥ ୪୫ ॥

### ଶ୍ଲୋକ- ୪୬

କମ୍ପେନ ମୂର୍ଦ୍ଧ୍ନଃ ଶତପତ୍ରଯୋନିଂ
ବାଚଃ ହରିଂ ବୃକ୍ରହଣଂ ସ୍ମିତେନ ।
ଆଲୋକମାତ୍ରେଣ ସୁରାନଶେଷାନ୍ ।
ସମ୍ଭାବୟାମାସ ଯଥାପ୍ରଧାନମ୍ ॥ ୪୬ ॥

ଅନ୍ୱୟ - ସଃ ଶତପତ୍ରଯୋନିଂ ମୂର୍ଦ୍ଧ୍ନଃ କମ୍ପେନ : ହରିଂ ବାଚଃ, ବୃକ୍ରହଣଂ ସ୍ମିତେନ, ଅଶେଷାନ୍ ସୁରାନ୍ ଆଲୋକମାତ୍ରେଣ, ଯଥାପ୍ରଧାନଂ ସମ୍ଭାବୟାମାସ ।

ପଦ୍ୟାନୁବାଦ -

ପ୍ରଥମେ ମହେଶ        ମସ୍ତକ ହଲାଇ
ବ୍ରହ୍ମାଙ୍କୁ କଲେ ସ୍ୱାଗତ
ସମ୍ଭାଷଣ ଦ୍ୱାରା        ବିଷ୍ଣୁଙ୍କୁ ସ୍ୱାଗତ
କରିଲେ ପ୍ରମଥନାଥ ।
ସ୍ମିତହାସ୍ୟ କରି        ଇନ୍ଦ୍ରଙ୍କୁ ସ୍ୱାଗତ
ଜଣାଇଲେ ମହାଦେବ
କୃପାଦୃଷ୍ଟି ଢାଳି        ସ୍ୱାଗତ କରିଲେ
ଥିଲେ ଯେତେ ଅନ୍ୟଦେବ ॥ ୪୬ ॥

### ଶ୍ଲୋକ- ୪୭

ତସ୍ମୈ ଜୟାଶୀଃ ସସୃଜେ ପୁରସ୍ତାତ୍
ସପ୍ତର୍ଷିଭିସ୍ତାନ୍ସ୍ମିତପୂର୍ବମାହ ।
ବିବାହଯଜ୍ଞେ ବିତତେଽତ୍ରଯୂୟମ୍
ଅଧ୍ୱର୍ଯବଃ ପୂର୍ବବୃତା ମୟେତି ॥ ୪୭ ॥

ଅନ୍ୱୟ - ସପ୍ତର୍ଷିଭିଃ ପୁରସ୍ତାତ୍ ତସ୍ମୈ ଜୟାଶୀଃ ସପ୍ରଯୁଜେ। ସ ତାନ୍ 'ବିତତ ଅତ୍ର ବିବାହଜଜ୍ଞେ ଯୂୟଂ ମୟା ପୂର୍ବବୃତାଃ ଅଧ୍ୱର୍ଯବଃ' ଇତି ସ୍ମିତପୂର୍ବମ୍ ଆହ।

ପଦ୍ୟାନୁବାଦ -

ସପ୍ତର୍ଷି ପ୍ରବର କରି ଜୟକାର
ଆଶିଷ କଲେ ପ୍ରଦାନ
ଶିବ ହସି ହସି କହିଲେ ସପ୍ତର୍ଷି
ଶୁଣନ୍ତୁ ମୋର ବଚନ।
ମୋର ଏ ଈପ୍ସିତ ପୂର୍ବରୁ ନିଶ୍ଚିତ
କରିଅଛି ହେ ସପ୍ତର୍ଷି
ଆପଣମାନେ ହିଁ ଋତ୍ୱିକ ହୋଇବେ
ବିବାହ ଯଜ୍ଞରେ ବସି ॥ ୪୭ ॥

### ଶ୍ଳୋକ -୪୮

ବିଶ୍ୱାବସୁପ୍ରାଗ୍ରହରୈଃ ପ୍ରବୀଣୈଃ
ସଙ୍ଗୀୟମାନତ୍ରିପୁରାବଦାନଃ।
ଅଧ୍ୱାନମଧ୍ୱାନ୍ତବିକାରଲଙ୍ଘ୍ୟଃ
ତତାର ତାରାଧିପଖଣ୍ଡଧାରୀ ॥ ୪୮ ॥

ଅନ୍ୱୟ - ବିଶ୍ୱାବସୁପ୍ରାଗ୍ରହରୈଃ ପ୍ରବୀଣୈଃ ସଙ୍ଗୀୟମାନତ୍ରିପୁରାବଦାନଃ ଅଧ୍ୱାନ୍ତବିକାରଲଙ୍ଘ୍ୟଃ ତାରାଧିପଖଣ୍ଡଧାରୀ ଅଧ୍ୱାନଂ ତତାର।

ପଦ୍ୟାନୁବାଦ -

ବିଶ୍ୱାବସୁ ଆଦି ଗନ୍ଧର୍ବ ସଂଗୀତ
ବୀଣା ବାଦନେ କୁଶଳୀ
ଶିବଙ୍କ ତ୍ରିପୁର ବିଜୟ ସଂଗୀତ
ଗାଇ ଆଗେ ଗଲେ ଚଳି।

ତମଗୁଣ ଆଦି ବିକାର ଉର୍ଦ୍ଧ୍ୱରେ
ଚନ୍ଦ୍ରଚୂଡ ତ୍ରିଲୋଚନ
ହିମାଳୟର ସେ ନଗ୍ର ଅଭିମୁଖେ
କରିଲେ ଅନୁଗମନ। ॥ ୪୮ ॥

**ଶ୍ଳୋକ- ୪୯**

ଖେ ଖେଳଗାମୀ ତମୁବାହ ବାହଃ
ସଶବ୍ଦଚାମୀକରକିଙ୍କିଣୀକଃ।
ତଟାଭିଘାତାଦିବ ଲଗ୍ନପଙ୍କୈଃ
ଧୁନ୍ୱନ୍ମୁହୁଃ ପ୍ରୋତଘନେ ବିଷାଣେ ॥ ୪୯ ॥

ଅନ୍ୱୟ - ଖେ ଖେଳଗାମୀ ସଶବ୍ଦଚାମୀକରକିଙ୍କିଣୀକଃ ବାହଃ ପ୍ରୋତଘନେ ତଟାଭିଘାତାଦ୍ ଲଗ୍ନପଙ୍କ ଇବ ବିଷାଣେ ମୁହୁଃ ଧୁନ୍ୱନ୍ ସନ୍ ତମ୍ ଉବାହ।

ପଦ୍ୟାନୁବାଦ -

ବାହନ ବୃଷଭ ଶିବଙ୍କୁ ପୃଷ୍ଠରେ
ବସାଇ ଆକାଶ ପଥେ
ଚାଲିଥିଲା କ୍ରୀଡା କୌତୁକ ଦେଖାଇ
ସଗର୍ବେ ତା ଇଚ୍ଛାମତେ।
ଗଳେ ତା'ର ବନ୍ଧା ସୁବର୍ଣ୍ଣ ଘାଗୁଡି
ବାଜୁଥିଲା କରି ସ୍ୱନ
ମେଘଛୁଆଁ ଶିଙ୍ଘ ଦ୍ୱୟକୁ ହଲାଇ
କରୁଥିଲା ସେ ଗମନ।
ନଦୀତଟ ଦେଶ ତାଡିଲେ ଶିଙ୍ଘରେ
କାଦୁଅ ଲାଗିଲା ପରି
ଶିଙ୍ଘଛୁଆଁ ସେହି ଉଡନ୍ତା ବାଦଲ
ଦିଶୁଥିଲା ସେହିପରି ॥ ୪୯ ॥

### ଶ୍ଲୋକ- ୫୦

ସ ପ୍ରାପଦପ୍ରାପ୍ତପରାଭିଯୋଗଂ
ନଗେନ୍ଦ୍ରଗୁପ୍ତଂ ନଗରଂ ମୁହୂର୍ତ୍ତାତ୍ ।
ପୁରୋ ବିଲଗ୍ନୈର୍ହରଦୃଷ୍ଟିପାତୈଃ
ସୁବର୍ଣ୍ଣସୂତ୍ରୈରିବ କୃଷ୍ୟମାଣମ୍ ॥ ୫୦ ॥

ଅନ୍ୱୟ - ସଃ ଅପ୍ରାପ୍ତପରାଭିଯୋଗଂ ନଗେନ୍ଦ୍ରଗୁପ୍ତଂ ନଗରଂ ପୁରୋ ବିଲଗ୍ନୈଃ ହରଦୃଷ୍ଟିପାତୈଃ ସୁବର୍ଣ୍ଣସୂତ୍ରୈଃ କୃଷ୍ୟମାଣମ୍ ଇବ ମୁହର୍ତ୍ତାତ୍ ପ୍ରାପ୍ତମ୍ ।

ପଦ୍ୟାନୁବାଦ -

ଶତ୍ରୁଙ୍କ ଦ୍ୱାରା ଯେ ଅଗମ୍ୟ ଅପ୍ରାପ୍ତ
ନଗେନ୍ଦ୍ର ଦ୍ୱାରା ରକ୍ଷିତ
ଶିବଙ୍କ ବାହନ କ୍ଷଣଭରେ ସେହି
ନଗ୍ରକୁ ହୋଇଲା ପ୍ରାପ୍ତ ।
ପ୍ରତେ ହେଉଥିଲା ଶିବଙ୍କର ଥିଲା
ଦୃଷ୍ଟି ସେ ନଗ୍ର ଉପରେ
ତାଙ୍କରି ସ୍ୱର୍ଣ୍ଣିମ ଡୋରି... ଟାଣିନେଲା
ବୃଷଭକୁ କ୍ଷଣକରେ ॥ ୫୦ ॥

### ଶ୍ଲୋକ- ୫୧

ତସ୍ୟୋପକଣ୍ଠେ ଘନନୀଳକଣ୍ଠଃ
କୁତୁହଳାଦୁନ୍ମୁଖପୌରଦୃଷ୍ଟଃ ।
ସ୍ୱବାଣଚିହ୍ନାଦବତୀର୍ଯ୍ୟ ମାର୍ଗାଦ୍
ଆସନ୍ନଭୂପୃଷ୍ଠମିୟାୟ ଦେବ ॥ ୫୧ ॥

ଅନ୍ୱୟ - ତସ୍ୟ ଉପକଣ୍ଠେ ଘନନୀଳକଣ୍ଠଃ କୁତୁହଳାଦ୍ ଉନ୍ମୁଖପୌରଦୃଷ୍ଟଃ ସନ୍ ସ୍ୱବାଣଚିହ୍ନାଦ୍ ମାର୍ଗାଦ୍ ଅବତୀର୍ଯ୍ୟ ଆସନ୍ନଭୂପୃଷ୍ଟମ୍ ଇୟାୟ ।

ପଦ୍ୟାନୁବାଦ -

ଘନ ସମ ନୀଳ କଣ୍ଠ ଯା'ର ସେହି
ନୀଳକଣ୍ଠ ତ୍ରିଲୋଚନ
ନଗର ସମୀପେ ଆକାଶମାର୍ଗରୁ
କରିଲେ ଅବତରଣ।
କୌତୂହଳ ବଶ ନଗର ନିବାସୀ
ଦେଖୁଥିଲେ ଏହି ଦୃଶ୍ୟ
ତ୍ରିପୁର ବିଜୟ ସମୟେ ସ୍ୱବାଣେ
ଚିହ୍ନିତ ଥିଲା ଆକାଶ ॥ ୫୧ ॥

**ଶ୍ଳୋକ- ୫୨**

ତମୃଦ୍ଧିମଦ୍ବନ୍ଧୁଜନାଧିରୂଢୈଃ
ବୃନ୍ଦୈର୍ଗଜାନାଂ ଗିରିଚକ୍ରବର୍ତୀ।
ପ୍ରତ୍ୟୁଜ୍ଜଗାମାଗମନପ୍ରତୀତଃ
ପ୍ରଫୁଲ୍ଲବୃକ୍ଷୈଃ କଟକୈରିବ ସ୍ୱୈଃ ॥ ୫୨ ॥

ଅନ୍ୱୟ - ଆଗମନପ୍ରତୀତଃ ଗିରିଚକ୍ରବର୍ତୀ ଋଦ୍ଧିମଦ୍ବନ୍ଧୁଜନାଧିରୂଢୈଃ ଗଜାନାଂ ବୃନ୍ଦୈଃ ପ୍ରଫୁଲ୍ଲବୃକ୍ଷୈଃ ସ୍ୱୈଃ କଟକୈଃ ଇବ ତଂ ପ୍ରତ୍ୟୁଜ୍ଜଗାମ।

ପଦ୍ୟାନୁବାଦ -

ଶିବ ଆଗମନ ହୁଅନ୍ତେ ପ୍ରସନ୍ନ
ହୋଇଲେ ପର୍ବତରାଜ
ସବାନ୍ଧବେ ଗଲେ ଶିବ ସ୍ୱାଗତାର୍ଥେ
ଆରୋହଣ କରି ଗଜ।
ସେ ସମୟେ ଗଜ ଦଳଙ୍କର ଦୃଶ୍ୟ
ଦିଶୁଥିଲା ଏହିପରି
ପର୍ବତର ଢାଲୁ ଅଞ୍ଚଳେ ସପୁଷ୍ପା
ବୃକ୍ଷଙ୍କ ଦୃଶ୍ୟ ଯେପରି ॥ ୫୨ ॥

## ଶ୍ଳୋକ- ୫୩

ବର୍ଗାବୁଭୌ ଦେବମହୀଧରାଣାଂ
ଦ୍ୱାରେ ପୁରସ୍ୟୋଦ୍‌ଘାଟିତାପିଧାନେ ।
ସମୀୟତୁର୍ଦୂରସର୍ପିଘୋଷୌ
ଭିନ୍ନୈକସେତୁ ପୟସାମିବୌଘୌ ॥ ୫୩ ॥

ଅନ୍ୱୟ - ଦୂରବିସର୍ପିଘୋଷୌ ଦେବମହୀଧରାଣାଂ ଉଭୌ ବର୍ଗୌ ଉଦ୍‌ଘାଟିତାପିଧାନେ ପୁରସ୍ୟ ଦ୍ୱାରେ 'ଭିନ୍ନୈକସେତୁ ପୟସାମ୍ ଓଘୌ ଇବ' ସମୀୟତୁଃ ।

ପଦ୍ୟାନୁବାଦ -

ହିମାଳୟ ତଥା ଦେବତା ଦଳର
ଜୟ ଜୟକାର ଧ୍ୱନି
ବହୁଦୂର ଯାଏ ଉଭୟ ଦଳର
ଧ୍ୱନି ହେଉଥିଲା ଶୁଣି ।
ଯେ କାଳେ ନଗ୍ରର ଖୋଲାଥିଲା ଦ୍ୱାର
ଭେଟହେଲେ ଦୁଇ ଦଳ
ମନେ ହେଉଥିଲା ମିଶୁଛନ୍ତି ବନ୍ଧ
ଭାଙ୍ଗି ଦ୍ୱି ନଦୀର ଜଳ ॥ ୫୩ ॥

## ଶ୍ଳୋକ- ୫୪

ହ୍ରୀମାନଭୂଭୂମିଧରୋ ହରେଣ
ତ୍ରୈଲୋକ୍ୟବନ୍ଦ୍ୟେନ କୃତପ୍ରଣାମଃ ।
ପୂର୍ବଂ ମହିମ୍ନା ସ ହି ତସ୍ୟ ଦୂରମ୍
ଆବର୍ଜିତଂ ନାମୃଶିରୋ ବିବେଦ ॥ ୫୪ ॥

ଅନ୍ୱୟ - ଭୂମିଧରଃ ତ୍ରୈଲୋକ୍ୟବନ୍ଦ୍ୟେନ ହରେଣ କୃତପ୍ରଣାମଃ ସନ୍ ହ୍ରୀମାନ୍ ଅଭୂତ ହି ସଃ ପୂର୍ବଂ ମହିମ୍ନା ଦୂରମ୍ ଆବର୍ଜିତମ୍ ଆମୃଶିରଃ ନ ବିବେଦ ।

ପଦ୍ୟାନୁବାଦ -

ତ୍ରିଲୋକ ବନ୍ଦିତ ଶିବ ହିମାଦ୍ରୀଙ୍କୁ
କଲେ ଯେବେ ପ୍ରଣିପାତ
ସେ କାଳେ ହିମାଦ୍ରୀ ନିଜ ମନ ମଧ୍ୟେ
ହେଲେ ଅତ୍ୟନ୍ତ ଲଜ୍ଜିତ ।
ଶିବଙ୍କ ପ୍ରଣାମ କରିବା ପୂର୍ବରୁ
ହିମାଳୟଙ୍କର ମଥା
ଆପେ ଆପେ ନଇଁ ଯାଇଥିଲା ଏତ
ଶିବ ମହିମାର କଥା ॥ ୫୪ ॥

**ଶ୍ଲୋକ- ୫୫**

ସ ପ୍ରୀତିଯୋଗାଦ୍ବିକସନ୍ମୁଖଶ୍ରୀଃ
ଜାମାତୁରଗ୍ରେସରତାମୁପେତ୍ୟ ।
ପ୍ରାବେଶୟନ୍ମନ୍ଦିରମୃଦ୍ଧମେନମ୍
ଆଗୁଲ୍ଫକୀର୍ଣ୍ଣାପଣମାର୍ଗପୁଷ୍ପମ୍ ॥ ୫୫ ॥

ଅନ୍ୱୟ - ପ୍ରୀତିଯୋଗାଦ୍ ବିକସନ୍ମୁଖୀଃ ସଃ ଜାମାତୁଃ ଅଗ୍ରେସରତାମ୍ ଉପେତ୍ୟ ଏନମ୍ ଆଗୁଲ୍ଫକୀର୍ଣ୍ଣାପଣମାର୍ଗପୁଷ୍ପମ୍ ଋଦ୍ଧଂ ମନ୍ଦିରଂ ପ୍ରାବେଶୟମ୍ ।

ପଦ୍ୟାନୁବାଦ -

ପ୍ରସନ୍ନ ବଦନ ଗିରି ହିମବାନ
ଶିବଙ୍କୁ ବାଟ କଢେଇ
ସମୃଦ୍ଧଶାଳୀ ସେ ନଗରର ସେହି
ମାର୍ଗେ ଦେଲେ ପହଞ୍ଚାଇ ।
ଯେଉଁ ମାର୍ଗ ଏତେ ଫୁଲ ସମ୍ଭାରରେ
ହୋଇଥିଲା ଆଚ୍ଛାଦିତ
ଚାଲନ୍ତେ ଫୁଲରେ ବୁଡି ଯାଉଥିଲା
ଚରଣ ଆଣ୍ଠୁ ପର୍ଯ୍ୟନ୍ତ ॥ ୫୫ ॥

### ଶ୍ଳୋକ -୫୬

ତସ୍ମିନ୍ ମୁହୂର୍ତ୍ତେ ପୁରସୁନ୍ଦରୀଣାମ୍
ଈଶାନସନ୍ଦର୍ଶନଲାଲସାନାମ୍ ।
ପ୍ରାସାଦମାଳାସୁ ବଭୂବୁରିତ୍ଥଂ
ତ୍ୟକ୍ତାନ୍ୟ କାର୍ଯାଣି ବିଚେଷ୍ଟିତାନି ॥ ୫୬ ॥

ଅନ୍ୱୟ- ତସ୍ମିନ୍ ମୁହୂର୍ତ୍ତେ ଈଶାନସନ୍ଦର୍ଶନଲାଲସାନାମ୍ ପୁରସୁନ୍ଦରୀଣାମ୍ ପ୍ରାସାଦମାଳାସୁ ଇତ୍ଥଂ ତ୍ୟକ୍ତାନ୍ୟ କାର୍ଯାଣି ବିଚେଷ୍ଟିତାନି ବଭୂବୁଃ ।

ପଦ୍ୟାନୁବାଦ -

ମହାଦେବଙ୍କର ଦର୍ଶନେ ଆତୁର
ନଗ୍ରର ସବୁ ରମଣୀ
ନିଜ ନିଜ ଗୃହ ଛାତ ପୃଷ୍ଠପରେ
ଉଭାହେଲେ ତତ୍କ୍ଷଣି ।
ଦର୍ଶନ ନିମନ୍ତ ମନେ ଉତ୍ସୁକତା
ଥିଲା ସେ ରମଣୀଙ୍କର
ସେଥିପାଇଁ ଆସି ଠିଆ ହୋଇଥିଲେ
ସବୁ କାର୍ଯ୍ୟ କରି ପର ॥ ୫୬ ॥

### ଶ୍ଳୋକ- ୫୭

ଆଲୋକମାର୍ଗଂ ସହସା ବ୍ରଜନ୍ତ୍ୟା
କୟାଚିଦୁଦ୍ୱେଷ୍ଟନବାନ୍ତମାଲ୍ୟଃ ।
ବନ୍ଧୁଂ ନ ସମ୍ଭାବିତ ଏବ ତାବତ୍
କରେଣ ରୁଦ୍ଧୋଽପି ଚ କେଶପାଶଃ ॥ ୫୭ ॥

ଅନ୍ୱୟ - ଆଲୋକମାର୍ଗଂ ସହସା ବ୍ରଜନ୍ତ୍ୟା କୟାଚିଦ୍ ଉଦ୍ୱେଷ୍ଟନବାନ୍ତମାଲ୍ୟଃ କରେଣ ରୁଦ୍ଧ ଅପି କେଶପାଶଃ ତାବତ୍ ବନ୍ଧୁଂ ନ ସମ୍ଭାବିତ ଏବ ।

ପଦ୍ୟାନୁବାଦ -

ଦରଶନ ପାଇଁ ହଡବଡେ ଧାଇଁ
ନଗରର କେହି ନାରୀ
ବେଣୀରେ ଗୁନ୍ଥା ତା ମାଳା ଖୋଲିଗଲା
ଧାଇଁଲା ହାତରେ ଧରି ।
ଦର୍ଶନର ଆଶେ ଝରକାର ପାଶେ
ପହଞ୍ଚିଲା ସେହି ନାରୀ
ଖୋଲିଯାଇଥିବା ମାଳାକୁ ବେଣୀରେ
ଗୁନ୍ଥିବାକୁ ଭୁଲିକରି ॥ ୫୭ ॥

**ଶ୍ଳୋକ- ୫୮**

ପ୍ରସାଧିକାଳମ୍ବିତମଗ୍ରପାଦମ୍
ଆକ୍ଷିପ୍ୟ କାଚିଦ୍ ଦ୍ରବରାଗମେବ ।
ଉତ୍ସୃଷ୍ଟଲୀଳାଗତିରାଗବାକ୍ଷାତ୍
ଅଳକ୍ତକାଙ୍କାଂ ପଦବୀଂ ତତାନ ॥ ୫୮ ॥

ଅନ୍ୱୟ - କାଚିଦ୍ ପ୍ରସାଧିକାଳମ୍ବିତଂ ଦ୍ରବରାଗମ୍ ଏବ ଅଗ୍ରପାଦମ୍ ଆକ୍ଷିପ୍ୟ ଉତ୍ସୃଷ୍ଟଲୀଳାଗତିଃ ସତୀ ଆ ଗବାକ୍ଷାତ୍ ପଦବୀମ୍ ଅଳକ୍ତକାଙ୍କାଂ ତତାନ ।

ପଦ୍ୟାନୁବାଦ -

କେହି ଏକ ନାରୀ ପାଦ ଆଗେ କରି
ପ୍ରସାଧିକା ସାହାଯ୍ୟରେ
ଅଳତାରେ ପାଦ ରଙ୍ଗାଉଥିଲା ସେ
ଠିକ୍ ସେହି ସମୟରେ ।
ହଡବଡ ହୋଇ ଅଧା ଛାଡିଦେଇ
ଧାଇଁଲା ଝରକା ପାଶେ
ଅଳତାରେ ସିକ୍ତ ପଦଚିହ୍ନମାନ
ରହିଲା ଚଟାଣ ଦେଶେ ॥ ୫୮ ॥

## ଶ୍ଲୋକ- ୫୯

ବିଲୋଚନଂ ଦକ୍ଷିଣମଞ୍ଜନେନ
ସମ୍ଭାବ୍ୟ ତଦ୍ୱଞ୍ଚିତବାମନେତ୍ରା ।
ତଥୈବ ବାତାୟନସନ୍ନିକର୍ଷଂ
ଯଯୌ ଶଳାକାମପରା ବହନ୍ତି ॥ ୫୯ ॥

ଅନ୍ୱୟ - ଅପରା ଦକ୍ଷିଣଂ ବିଲୋଚନମ୍ ଅଞ୍ଜନେନ ସମ୍ଭାବ୍ୟ, ତଦ୍ୱଞ୍ଚିତବାମନେତ୍ରା ସତୀ, ତଥା ଏବ ଶଳାକାଂ ବହନ୍ତି, ବାତାୟନସନ୍ନିକର୍ଷଂ ଯଯୌ ।

ପଦ୍ୟାନୁବାଦ -

ଦକ୍ଷିଣ ନେତ୍ରରେ କଜ୍ଜ୍ୱଳ ମାଖିବା
କେହି ନାରୀ କରି ଶେଷ
ବାମ ନେତ୍ର ଛାଡି ତୂଳିକାକୁ ଧରି
ଧାଇଁଲା ଗବାକ୍ଷ ପାଶ ॥ ୫୯ ॥

## ଶ୍ଲୋକ- ୬୦

ଜାଲାନ୍ତରପ୍ରେଷିତଦୃଷ୍ଟିରନ୍ୟା
ପ୍ରସ୍ଥାନଭିନ୍ନାଂ ନ ବବନ୍ଧ ନୀବୀମ୍ ।
ନାଭିପ୍ରବିଷ୍ଟାଭରଣପ୍ରଭେଣ
ହସ୍ତେନ ତସ୍ଥାବବଲମ୍ବ୍ୟ ବାସଃ ॥ ୬୦ ॥

ଅନ୍ୱୟ - ଅନ୍ୟା ଜାଲାନ୍ତରପ୍ରେଷିତଦୃଷ୍ଟିଃ ସତୀ ପ୍ରସ୍ଥାନଭିନ୍ନାଂ ନୀବୀଂ ନ ବବନ୍ଧ । ନାଭିପ୍ରବିଷ୍ଟାଭରଣପ୍ରଭେଣ ହସ୍ତେନ ବାସଃ ଅବଲମ୍ବ୍ୟ ତସ୍ଥୌ ।

ପଦ୍ୟାନୁବାଦ -

କେଉଁ ଏକ ନାରୀ ଶିବଙ୍କ ଦର୍ଶନ
ପାଇଁ ଝରକା ଜାଲିରେ
ଉହୁଁକିବା ବେଳେ ନୀବୀବାସ ତାର
ଖୋଲିଗଲା ଅକ୍ଳେଶରେ ।

ହସ୍ତେ ଧରି ଶାଢୀ ନବାନ୍ଧି ସେ ନୀବୀ
ରହିଲା ଦଣ୍ଡାୟମାନ
କଙ୍କଣେ ଖଚିତ ରତ୍ନର ଚମକ
ହେଲା ନାଭି ଆଭରଣ ॥ ୬୦ ॥

### ଶ୍ଲୋକ- ୬୧

ଅର୍ଧାଚିତା ସତ୍ୱରମୁତ୍ଥିତାୟାଃ
ପଦେ ପଦେ ଦୁର୍ନିମିତେ ଗଳନ୍ତି ।
କସ୍ୟାଶ୍ଚିଦାସୀଦ୍ରଶନା ତଦାନୀମ୍
ଅଙ୍ଗୁଷ୍ଠମୂଳାର୍ପିତସୂତ୍ରଶେଷା ॥ ୬୧ ॥

ଅନ୍ୱୟ - ସତ୍ୱରମ୍ ଉତ୍ଥିତାୟାଃ କସ୍ୟାଶ୍ଚିଦ୍ ଅର୍ଧାଚିତା ରଶନା ଦୁର୍ନିମିତେ ପଦେ ପଦେ ଗଳନ୍ତି ସତୀ ତଦାନୀମ୍ ଅଙ୍ଗୁଷ୍ଠମୂଳାର୍ପିତସୂତ୍ରଶେଷା ଆସୀତ୍ ।

ପଦ୍ୟାନୁବାଦ -

ମେଖଳା ତିଆରି ପାଇଁ କେହି ନାରୀ
ଗୁନ୍ଥୁଥିଲା ମଣିଦାନା
ଏତେବେଳେ ବର- ଯାତ୍ରୀଙ୍କର ସ୍ୱର
ଶୁଣି ସେ ଚଞ୍ଚଳମନା ।
ବେଗେ ଧାଇଁ ଧାଇଁ ପହଞ୍ଚିଲା ଯାଇ
ଝରକା ପାଖରେ ସେହି
ବିଞ୍ଚିଗଲା ସବୁ ମଣିଦାନା ଖାଲି
ସୂତା ଅଙ୍ଗୁଳିରେ ଥାଇ ॥ ୬୧ ॥

### ଶ୍ଲୋକ- ୬୨

ତାସାଂ ମୁଖୈରାସବଗନ୍ଧଗର୍ଭୈଃ
ବ୍ୟାପ୍ତାନ୍ତରାଃ ସାନ୍ଦ୍ରକୁତୂହଳାନାମ୍ ।
ବିଲୋଳନେତ୍ରଭ୍ରମରୈର୍ଗବାକ୍ଷାଃ
ସହସ୍ରପତ୍ରାଭରଣା ଇବାସନ୍ ॥ ୬୨ ॥

ଅନ୍ୱୟ - ସାନ୍ଦ୍ରକୁତୂହଳାନାମ୍ ତାସାମ୍ ଆସବଗନ୍ଧଗର୍ଭୈଃ ବିଲୋଲନେତ୍ରଭ୍ରମରୈଃ ମୁଖୈଃ ବ୍ୟାପ୍ତାନ୍ତରାଃ ଗବାକ୍ଷାଃ ସହସ୍ରପତ୍ରାଭରଣା ଇବ ଆସନ୍।

ପଦ୍ୟାନୁବାଦ -

ଗବାକ୍ଷେ ଉହୁଁକି ଉତ୍ସୁକରେ ଦେଖୁ-
ଥିଲେ ନଗର ରମଣୀ
ଆସବ ଗନ୍ଧରେ ବାସ୍ନାୟିତ ମୁଖ
ନୟନେ ଚଞ୍ଚଳ ଠାଣି।
ପ୍ରତେ ହେଉଥିଲା ସତେକି ଗବାକ୍ଷେ
ବହୁ ସଂଖ୍ୟାରେ କମଳ
ଝୁଲା ହୋଇଛନ୍ତି ତା ଉପର ଭ୍ରମୁ-
ଛନ୍ତି ଭ୍ରମରଙ୍କ ଦଳ ॥ ୬୨ ॥

**ଶ୍ଳୋକ- ୬୩**

ତାବତ୍ପତାକାକୁଳମିନ୍ଦୁମୌଳିଃ
ଉତ୍ତୋରଣ ରାଜପଥଂ ପ୍ରପେଦେ।
ପ୍ରାସାଦଶୃଙ୍ଗାଣି ଦିବାପି କୁର୍ବନ୍
ଜ୍ୟୋତ୍ସ୍ନାଭିଷେକଦ୍ୱିଗୁଣଦ୍ୟୁତିନି ॥ ୬୩ ॥

ଅନ୍ୱୟ - ତାବଦ୍ ଇନ୍ଦୁମୌଳିଃ ଦିବାପି ପ୍ରାସାଦଶୃଙ୍ଗାଣି ଜ୍ୟୋତ୍ସ୍ନାଭିଷେକଦ୍ୱିଗୁଣଦ୍ୟୁତିନି କୁର୍ବନ୍ ପତାକାକୁଳମ୍ ଉତ୍ତୋରଣଂ ରାଜପଥଂ ପ୍ରପେଦେ।

ପଦ୍ୟାନୁବାଦ -

ସେ ସମୟ ଚନ୍ଦ୍ର- ମୌଳି ନିଜ ଶିର
ସ୍ଥିତ ଚନ୍ଦ୍ରକଳା ଦ୍ୱାରା
ଦିନରେ ବି ସବୁ ପ୍ରାସାଦ ଶିଖର
କରି ଦ୍ୱିଗୁଣିତ ତୋରା।

ପହଞ୍ଚିଲେ ଯାଇ ରାଜମାର୍ଗ ପରେ
ବର ଶୋଭାଯାତ୍ରା ନେଇ
ବନ୍ଦନ ତୋରଣ ପତାକାରେ ମାର୍ଗ
ଥିଲା ସୁସଜ୍ଜିତ ହୋଇ ॥ ୬୩ ॥

### ଶ୍ଲୋକ -୬୪

ତମେକ ଦୃଶ୍ୟ ନୟନୈଃ ପିବନ୍ତ୍ୟୋ
ନାର୍ଯ୍ୟୋ ନ ଯଗ୍ମୁର୍ବିଷୟାନ୍ତରାଣି ।
ତଥା ହି ଶେଷେନ୍ଦ୍ରିୟବୃତ୍ତିରାସାଂ
ସର୍ବାତ୍ମନା ଚକ୍ଷୁରିବ ପ୍ରବିଷ୍ଟା ॥ ୬୪ ॥

ଅନ୍ୱୟ - ଏକଦୃଶ୍ୟ ତଂ ନୟନୈଃ ପିବନ୍ତ୍ୟଃ ନାର୍ଯ୍ୟଃ ବିଷୟାନ୍ତରାଣି ନ ଯଗ୍ମୁଃ । ତଥା ହି ଆସାଂ ଶେଷେନ୍ଦ୍ରିୟବୃତ୍ତିଃ ସର୍ବାତ୍ମନା ଚକ୍ଷୁଃ ପ୍ରବିଷ୍ଟା ଇବ ।

ପଦ୍ୟାନୁବାଦ -

ଅତି ଦର୍ଶନୀୟ ଶିବଙ୍କୁ ସ୍ୱନେତ୍ରେ
ନିର୍ନିମେଷେ ଦେଖି କରି
ନାରୀମାନେ ସବୁ ଅନ୍ୟ ବିଷୟକୁ
ଭୁଲିଗଲେ ଯେ ଏପରି ।
ପ୍ରତେହେଲା ସତେ ସେମାନଙ୍କ ଅନ୍ୟ
ସମସ୍ତ ଇନ୍ଦ୍ରିୟ ମିଶି
ନିଜ କାର୍ଯ୍ୟ ଛାଡି ନୟନ ଯୁଗଳେ
ଜମା ହୋଇଛନ୍ତି ଆସି ॥ ୬୪ ॥

### ଶ୍ଲୋକ- ୬୫

ସ୍ଥାନେ ତପୋ ଦୁଷ୍କରମେତଦର୍ଥଂ
ଅପର୍ଣ୍ଣୟା ପେଲବୟାପି ତପ୍ତମ୍ ।
ଯା ଦାସ୍ୟମପ୍ୟସ୍ୟ ଲଭତେ ନାରୀ
ସା ସ୍ୟାତ୍କୃତାର୍ଥା କିମୁତାଙ୍କଶଯ୍ୟାମ୍ ॥ ୬୫ ॥

ଅନ୍ୱୟ - ପେଲବାୟା ଅପି ଅପର୍ଣ୍ଣୟା ଏତଦର୍ଥ ଦୁଶ୍ଚରଂ ତପଃ ତପ୍ତଂ ସ୍ଥାନେ। ଯା ନାରୀ ଅସ୍ୟ ଦାସ୍ୟମ୍ ଅପି ଲଭତେ; ସା କୃତାର୍ଥା ସ୍ୟାତ୍, ଯା ଅଙ୍କ ଶଯ୍ୟାଂ ଲଭତେ ସା କିମ୍ପୁତ?

ପଦ୍ୟାନୁବାଦ -

ପ୍ରକୃତିଠାରୁ ସେ ସୌମ୍ୟା ସୁକୁମାରୀ
ପାର୍ବତୀ ଏପରି ପତି
ପାଇବା ପାଇଁକି ଘୋର ତପସ୍ୟା ସେ
କଲେ ତା ଉଚିତ ଅତି।
ଯଦି କେହି ନାରୀ ହୁଏ ତାଙ୍କ ଦାସୀ
ଜନ୍ମ ତା ସଫଳ ହୁଏ
ମାତ୍ର ଯିଏ ଅଙ୍କ ଶାୟିନୀ ହୋଇବ
ତା କଥା କି କୁହାଯାଏ ॥ ୬୫ ॥

ଶ୍ଲୋକ- ୬୬

ପରସ୍ପରେଣ ସ୍ପୃହଣୀୟଶୋଭମ୍
ନ ଚେଦିଦଂ ଦ୍ୱନ୍ଦମଯୋଜୟିଷ୍ୟତ୍।
ଅସ୍ମିନ୍ଦ୍ୱୟେ ରୂପବିଧାନଯତ୍ନଃ
ପତ୍ୟୁଃ ପ୍ରଜାନାଂ ବିଫଳୋଽଭବିଷ୍ୟମ ॥ ୬୬ ॥

ଅନ୍ୱୟ - ସ୍ପୃହଣୀୟଶୋଭମ୍ ଇଦଂ ଦ୍ୱନ୍ଦଂ ପରସ୍ପରେଣ ନ ଅଯୋଜୟିଷ୍ୟତ୍ ଚେତ୍ ପ୍ରଜାନାଂ ପତ୍ୟୁଃ ଅସ୍ମିନ୍ ଦ୍ୱୟେ ରୂପବିଧାନଯତ୍ନଃ ବିଫଳଃ ଅଭବିଷ୍ୟତ୍।

ପଦ୍ୟାନୁବାଦ -

ସୌନ୍ଦର୍ଯ୍ୟଶାଳୀ ଏ ଯୋଡି ପରସ୍ପର
ପାଇଁ ଅଟେ ଅନୁକୂଳ
ବିବାହରେ ବାନ୍ଧି ନଥିଲେ ବିଧାତା
ହୋଇଥାନ୍ତା ଗୋଳମାଳ।

ଯେ ଯୋଡିକୁ ଗଢି ଅଛନ୍ତି ବିଧାତା
କରି ଏତେ ଶ୍ରମଦାନ
ବିବାହରେ ବାନ୍ଧି ନଥିଲେ ଦୁହିଁଙ୍କୁ
ହୋଇଥାନ୍ତା ଅକାରଣ ॥ ୬୬ ॥

**ଶ୍ଳୋକ- ୬୭**

ନ ନୂନମାରୂଢରୁଷା ଶରୀରମ୍
ଅନେନ ଦଗ୍ଧଂ କୁସୁମାୟୁଧସ୍ୟ।
ବ୍ରୀଡାଦମୁଂ ଦେବମୁଦୀକ୍ଷ୍ୟ ମନ୍ୟେ
ସନ୍ନ୍ୟସ୍ତଦେହଃ ସ୍ୱୟମେବ କାମଃ ॥ ୬୭ ॥

ଅନ୍ୱୟ - ଆରୂଢରୁଷା ଅନେନ କୁସୁମାୟୁଧସ୍ୟ ଶରୀରଂ ନ ଦଗ୍ଧଂ ନୂନମ୍। କିନ୍ତୁ କାମଃ ଅମୁଂ ଦେବମ୍ ଉଦୀକ୍ଷ୍ୟ ବ୍ରୀଡାତ୍ ସ୍ୱୟମ୍ ଏବ ସନ୍ନ୍ୟସ୍ତଦେହଃ, ଇତି ମନ୍ୟେ।

ପଦ୍ୟାନୁବାଦ -

ଆଉ ଜଣେ କେହି କହେ ମନେ ମୁହିଁ
ଭାବୁଛି ଯାହା ନଶ୍ଚିତ
ଶିବ କେବେ କ୍ରୋଧ- ଭରେ କନ୍ଦର୍ପଙ୍କୁ
କରି ନାହାଁନ୍ତି ନିହତ।
ମାତ୍ର ଶିବଙ୍କର ସୌନ୍ଦର୍ଯ୍ୟ ଦର୍ଶନ
କରି ସ୍ୱୟଂ କାମଦେବ
ନିଜର ଶରୀର କରିଛନ୍ତି ତ୍ୟାଗ
ଲଜ୍ଜା କରି ଅନୁଭବ ॥ ୬୭ ॥

**ଶ୍ଳୋକ- ୬୮**

ଅନେନ ସମ୍ବନ୍ଧମୁପେତ୍ୟ ଦିଷ୍ଟୟା
ମନୋରଥପ୍ରାର୍ଥିତମୀଶ୍ୱରେଣ।
ମୂର୍ଦ୍ଧାନମାଳି ! କ୍ଷିତିଧାରଣୋଚ୍ଚଂ
ଉଚ୍ଚୈସ୍ତରଂ ବକ୍ଷ୍ୟତି ଶୈଳରାଜଃ ॥ ୬୮ ॥

ଅନ୍ୱୟ - ହେ ଆଳି ! ଶୈଳରାଜଃ ଦିଷ୍ଟ୍ୟା ମନୋରଥପ୍ରାର୍ଥିତଂ ଅନେନ ଈଶ୍ୱରେଣ ସମ୍ବନ୍ଧମ୍ ଉପେତ୍ୟ, କ୍ଷିତିଧାରଣୋଚ୍ଚଂ ମୂର୍ଧାନମ୍ ଉଚ୍ଚୈସ୍ତରଂ ବକ୍ଷ୍ୟତି ।

ପଦ୍ୟାନୁବାଦ -

କେହି ଜଣେ ନାରୀ ସମ୍ବୋଧନ କରି
କହେ ସଖୀକୁ ତାହାର
ଶିବଙ୍କ ସହିତ ସମ୍ବନ୍ଧ ହେତୁରୁ
ଗିରିରାଜଙ୍କର ଶିର ।
ପୃଥ୍ୱୀକୁ ଧାରଣ କରିବା କାରଣୁ
ଥିଲା ଯେତିକି ଉନ୍ନତ
ତା'ଠାରୁ ଅଧିକ ହୋଇଗଲା ଜାଣ
ଏ କଥା ଅଟେ ନିଶ୍ଚିତ ।। ୬୮ ।।

### ଶ୍ଳୋକ- ୬୯

ଇତ୍ୟୋଷଧିପ୍ରସ୍ଥବିଳାସିନୀନାଂ
ଶୃଣ୍ୱନ୍‌କଥାଃ ଶ୍ରୋତ୍ରମୁଖାସ୍ତ୍ରିନେତ୍ରଃ ।
କେୟୂରଚୂର୍ଣ୍ଣୀକୃତଲାଜମୁଷ୍ଟିଂ
ହିମାଳୟସ୍ୟାଳୟମାସସାଦ ।। ୬୯ ।।

ଅନ୍ୱୟ - ତ୍ରିନେତ୍ରଃ ଇତି ଓଷଧିପ୍ରସ୍ଥବିଳାସିନୀନାଂ ଶ୍ରୋତ୍ରମୁଖାଃ କଥାଃ ଶୃଣ୍ୱନ୍, କେୟୂରଚୂର୍ଣ୍ଣୀକୃତଲାଜମୁଷ୍ଟିଂ ହିମାଳୟସ୍ୟ ଆଳୟମ୍ ଆସସାଦ ।

ପଦ୍ୟାନୁବାଦ -

ଓଷଧିପ୍ରସ୍ଥର ସୁନ୍ଦରୀ ନାରୀଙ୍କ
କଥା ଯା ଶ୍ରୁତିସୁଖଦ
ଶୁଣି ଶୁଣି ଶିବ ପହଞ୍ଚିଲେ ଲୋକ
ଭିଡରେ ଭରା ପ୍ରାସାଦ ।

ଯେଉଁଠାରେ ନାରୀ ମାନେ ଫିଙ୍ଗୁଥିଲେ
ମୁଷ୍ଟିଭରି ଧାନ୍ୟଖଇ
ଲୋକଙ୍କ ଅଙ୍ଗଦେ ଚୂର୍ଣ୍ଣୀଭୂତ ହେଉ-
ଥିଲା ସେ ରଗଡି ହୋଇ ॥ ୬୯ ॥

## ଶ୍ଳୋକ- ୭୦

ତତ୍ରାବତୀର୍ଯାଚ୍ୟୁତଦତ୍ତହସ୍ତଃ
ଶରଦ୍‌ଘନାଦ୍ଦୀଧିତିମାନିବୋକ୍ଷ୍ଣଃ ।
କ୍ରାନ୍ତାନି ପୂର୍ବଂ କମଳାସନେନ
କକ୍ଷ୍ୟାନ୍ତରାଣ୍ୟଦ୍ରିପତେର୍ବିବେଶ ॥ ୭୦ ॥

ଅନ୍ୱୟ - ତତ୍ର ଅଚ୍ୟୁତଦତ୍ତହସ୍ତଃ 'ଶରଦ୍‌ଘନାଦ୍ ଦୀଧିତିମାନ୍ ଇବ' ଉକ୍ଷ୍ଣଃ ଅବତୀର୍ଯ କମଳାସନେନ ପୂର୍ବଂ କ୍ରାନ୍ତାନି ଅଦ୍ରିପତେଃ କକ୍ଷ୍ୟାନ୍ତରାଣି ବିବେଶ ।

ପଦ୍ୟାନୁବାଦ -

ଶିବଙ୍କର ହସ୍ତ ଧରି ଲକ୍ଷ୍ମୀକାନ୍ତ
ବୃଷଭ ପୃଷ୍ଠଦେଶରୁ
ଅବତୀର୍ଣ୍ଣ କରା- ଇଲେ ଭୂମିପରେ
ଦୃଶ୍ୟ ସେ ଅତ୍ୟନ୍ତ ଗୁରୁ ।
ଯତେକି ଶରତ ଶୁଭ୍ର ଜଳଦରୁ
ସୂର୍ଯ୍ୟଙ୍କ ଅବତରଣ
ପରି ସେହି ଦୃଶ୍ୟ ପ୍ରତେ ହେଉଥିଲା
ଦେଖୁଥିଲେ ତହିଁ ଜନ ।
ଏହାପରେ ଶିବ ରାଜପ୍ରାସାଦର
ସେହି କୋଠରୀକୁ ଗଲେ
ଯେଉଁ କୋଠରୀରେ ସ୍ୱୟଂ ବ୍ରହ୍ମଦେବ
ପୂର୍ବରୁ ହିଁ ବସିଥିଲେ ॥ ୭୦ ॥

## ଶ୍ଲୋକ -୭୧

ତ୍ୱମନଗିନ୍ଦ୍ରପ୍ରମୁଖାଶ୍ଚ ଦେବାଃ
ସପ୍ତର୍ଷିପୂର୍ବାଃ ପରମର୍ଷୟଶ୍ଚ ।
ଗଣାଶ୍ଚ ଗିର୍ଯାଳୟମଭ୍ୟଗଚ୍ଛନ୍
ପ୍ରଶସ୍ତମାରମ୍ଭମିବୋତ୍ତମାର୍ଥାଃ ॥ ୭୧ ॥

ଅନ୍ୱୟ- ତତ୍ ଅନ୍ୱଗ୍ ଇନ୍ଦ୍ରପ୍ରମୁଖାଃ ଦେବାଃ, ସପ୍ତର୍ଷିପୂର୍ବାଃ ପରମର୍ଷୟଃ ଗଣାଶ୍ଚ 'ଉତ୍ତମାର୍ଥାଃ ପ୍ରଶସ୍ତମ୍ ଆରମ୍ଭମ୍ ଇବ' ଗିର୍ଯାଳୟମ୍ ଅଭ୍ୟଗଚ୍ଛନ୍ ।

ପଦ୍ୟାନୁବାଦ -

ଶିବଙ୍କର ଅନୁ- ଗମନ କରିଲେ
ଇନ୍ଦ୍ରାଦି ଦେବତାଗଣ
ତଥା ସପ୍ତରଷି ସଂଗେ ବଡ ବଡ
ରଷି ଓ ପ୍ରମଥଗଣ ।
ହିମାଳୟର ସେ ରାଜ ପ୍ରାସାଦରେ
ପ୍ରବେଶ କଲେ ଏପରି
କୌଣସି ଉତ୍ତମ କାର୍ଯ୍ୟ ପଛେ ପଛେ
ଭଲ ଫଳ ଯେଉଁପରି ॥ ୭୧ ॥

## ଶ୍ଲୋକ- ୭୨

ତତ୍ରେଶ୍ୱରୋ ବିଷ୍ଟରଭାଗ୍ୟଥାବତ୍
ସରତ୍ନମର୍ଘ୍ୟଂ ମଧୁମଚ୍ଚ ଗଣ୍ୟମ୍ ।
ନବେ ଦୁକୂଳେ ଚ ନଗୋପନୀତଂ
ପ୍ରତ୍ୟଗ୍ରହୀଂସର୍ବମମନ୍ତ୍ରବର୍ଜମ୍ ॥ ୭୨ ॥

ଅନ୍ୱୟ - ତତ୍ର ଈଶ୍ୱରଃ ବିଷ୍ଟରଭାଗ୍ ଯଥାବତ୍ ସରତ୍ନମ୍ ଅର୍ଘ୍ୟଂ, ମଧୁମଦ୍ ଗବ୍ୟଂ, ନବେ ଦୁକୂଳେ ଚ ଇତି ସର୍ବଂ ନଗୋପନୀତମ୍ ଅମନ୍ତ୍ରବର୍ଜଂ ପ୍ରତ୍ୟଗ୍ରହୀତ୍ ।

ପଦ୍ୟାନୁବାଦ -

ରତ୍ନଯୁକ୍ତ ପୂଜା- ଦ୍ରବ୍ୟ ସହ ଦଧି
ହୋଇଣ ମଧୁ ମିଶ୍ରିତ
ନବୀନ ଦୁକୂଳ ଆଦି ଯାହା ସବୁ
ହୋଇଥିଲା ଆୟୋଜିତ ।
ମନ୍ତ୍ରପାଠ ସହ ବିଧିପୂର୍ବ ତାହା
ଶିବଙ୍କୁ ହେଲା ପ୍ରଦାନ
ଦେବତାଙ୍କ ଶ୍ରେଷ୍ଠ ହୋଇ ଉପବିଷ୍ଟ
କରିଲେ ତାହା ଗ୍ରହଣ ॥ ୭୨ ॥

## ଶ୍ଳୋକ- ୭୩

ଦୁକୂଳବାସାଃ ସ ବଧୂସମୀପଂ
ନିନ୍ୟେ ବିନୀତୈରବରୋଧଦକ୍ଷୈଃ ।
ବେଳାସମୀପଂ ସ୍ଫୁଟଫେନରାଜିଃ
ନବୈରୁଦନ୍ୱାନିବ ଚନ୍ଦ୍ରପାଦୈଃ ॥ ୭୩ ॥

ଅନ୍ୱୟ - ଦୁକୂଳବାସାଃ ସଃ ବିନୀତୈଃ ଅବରୋଧଦକ୍ଷୈଃ 'ସ୍ଫୁଟଫେନରାଜିଃ ଉଦନ୍ୱାନ୍ ନବୈଃ ଚନ୍ଦ୍ରପାଦୈଃ ବେଳାସମୀପଂ ଇବ' ବଧୂସମୀପଂ ନିନ୍ୟେ ।

ପଦ୍ୟାନୁବାଦ -

ଅନ୍ତପୁରେ ସ୍ଥିତ କୁଶଳ ବିନୀତ
ଅନୁଚରୀମାନେ ମିଳି
ନବ ବସ୍ତ୍ରଧାରୀ ଶିବଙ୍କୁ ଉମାଙ୍କ
ପାଶେ ନେଲେ ଏଇଭଳି ।
ଯେଭଳି ଫେନିଳ ଲହରୀ ଶୋଭିତ
ସମୁଦ୍ରକୁ ତଟଦେଶ
ଚନ୍ଦ୍ରଙ୍କ ନବୀନ କିରଣରେ କରେ
ଆକର୍ଷିତ ନିଜ ପାଶ ॥ ୭୩ ॥

### ଶ୍ଲୋକ- ୭୪

ତୟା ପ୍ରବୃଦ୍ଧାନନଚନ୍ଦ୍ରକାନ୍ତ୍ୟା
ପ୍ରଫୁଲ୍ଲଚକ୍ଷୁଃ କୁମୁଦଃ କୁମାର୍ଯା।
ପ୍ରସନ୍ନଚେତଃସଲିଳଃ ଶିବୋଽଭୂତ୍
ସଂସୃଜ୍ୟମାନଃ ଶରଦେବ ଲୋକଃ ॥ ୭୪ ॥

ଅନ୍ୱୟ - ପ୍ରବୃଦ୍ଧାନନଚନ୍ଦ୍ରକାନ୍ତ୍ୟା ତୟା କୁମାର୍ଯା ଶରଦା ଲୋକ ଇବ ସଂସୃଜ୍ୟମାନଃ ଶିବ ପ୍ରଫୁଲ୍ଲଚକ୍ଷୁଃ କୁମୁଦଃ ପ୍ରସନ୍ନଚେତଃ ସଲିଳଃ ଅଭୂତ୍।

ପଦ୍ୟାନୁବାଦ -

ଯେପରି ଶରତ ଧରଣୀରେ ବ୍ୟାପ୍ତ
ହୁଅନ୍ତେ କୁମୁଦଫୁଲ
ପୂର୍ଣ୍ଣ ଚନ୍ଦ୍ରମାର କିରଣେ ବିକଶେ
ଜଳ ହୁଅଇ ନିର୍ମଳ।
ସେହିପରି ପୂର୍ଣ୍ଣ ଚନ୍ଦ୍ରକାନ୍ତି ସମ
ପାର୍ବତୀଙ୍କ ମୁଖ ଦେଖି
ଶିବଙ୍କ ନୟନ- କୁମୁଦ ଫୁଟିଲା
ଚିତ୍ତ ବି ହୋଇଲା ସୁଖୀ ॥ ୭୪ ॥

### ଶ୍ଲୋକ- ୭୫

ତୟୋଃ ସମାପତ୍ତିଷୁ କାତରାଣି
କିଞ୍ଚିଦ୍ୱ୍ୟବସ୍ଥାପିତସଂହୃତାନି।
ହ୍ରୀୟନ୍ତ୍ରଣାଂ ତତ୍କ୍ଷଣମନ୍ୱଭୂବନ୍
ଅନ୍ୟୋନ୍ୟଲୋଳାନି ବିଲୋଚନାନି ॥ ୭୫ ॥

ଅନ୍ୱୟ - ତୟୋଃ ସମାପିତେଷୁ କାତରାଣି କିଞ୍ଚିତ୍ ବ୍ୟବସ୍ଥାପିତସଂହୃତାନି ଅନ୍ୟୋନ୍ୟଲୋଳାନି ବିଲୋଚନାନି ତତ୍କ୍ଷଣଂ ହ୍ରୀୟନ୍ତ୍ରଣାଂ ଅନ୍ୱଭୂବନ୍।

ପଦ୍ୟାନୁବାଦ -

ପାର୍ବତୀ ଶଂକର ନେତ୍ରକୁ ତାଙ୍କର
କ୍ଷଣକ ପାଇଁ ମିଳାଇ
ପର ମୁହୂର୍ତ୍ତରେ ଦୃଷ୍ଟିକୁ ନିଜର
ନେଉଥିଲେ ଲେଉଟାଇ।
ଏପରି ଲାଳସା- ପୂର୍ଣ୍ଣ ହୃଦୟରେ
ପରସ୍ପରକୁ ଦେଖିଲେ
ଲୋକମାନେ କାଳେ କଅଣ ଭାବିବେ
ବୋଲି ଲଜ୍ଜା କରୁଥିଲେ ॥ ୭୫ ॥

## ଶ୍ଳୋକ- ୭୬

ତସ୍ୟାଃ କରଂ ଶୈଳଗୁରୂପନୀତଂ
ଯଗ୍ରାହ ତାମ୍ରାଙ୍ଗୁଳିମଷ୍ଟମୂର୍ତ୍ତିଃ।
ଉମାତନୌ ଗୂଢତନୋଃ ସ୍ମରସ୍ୟ
ତଚ୍ଛଙ୍କିନଃ ପୂର୍ବମିବ ପ୍ରରୋହମ୍ ॥ ୭୬ ॥

ଅନ୍ୱୟ - ଅଷ୍ଟମୂର୍ତ୍ତିଃ ତଚ୍ଛଙ୍କିନଃ ଉମାତନୌ ଗୂଢତନୋଃ ସ୍ମରସ୍ୟ ପୂର୍ବଂ ପ୍ରରୋହମ୍ ଇବ (ସ୍ଥିତଂ), ଶୈଳଗୁରୂପନୀତଂ ତାମ୍ରାଙ୍ଗୁଳିମ ତସ୍ୟାଃ କରଂ ଯଗ୍ରାହ।

ପଦ୍ୟାନୁବାଦ -

ନାଲି ନାଲି ରଙ୍ଗ ଅଙ୍ଗୁଳି ବିଶଷ୍ଟ
ପାର୍ବତୀଙ୍କର ହସ୍ତକୁ
ହିମାଦ୍ରୀଙ୍କ ପୁରୋ- ହିତ ବଢାଇଲେ
ମହାଦେବଙ୍କ ଆଡକୁ
ସେ ହସ୍ତକୁ ସଙ୍ଗେ ସଙ୍ଗେ ମହାଦେବ
ଆଦରେ କଲେ ଗ୍ରହଣ
ପ୍ରତେହେଲା ଉମା ଅଙ୍ଗେ ଲୁଚିଥିବା
କନ୍ଦର୍ପର ଅଙ୍କୁରଣ ॥ ୭୬ ॥

### ଶ୍ଲୋକ- ୭୭

ରୋମୋଦ୍ଗମଃ ପ୍ରାଦୁରଭୂଦୁମାୟାଃ
ସ୍ୱିନ୍ନାଙ୍ଗୁଳିଃ ପୁଙ୍ଗବକେତୁରାସୀତ୍।
ବୃତ୍ତିସ୍ତୟୋଃ ପାଣିସମାଗମେନ
ସମଂ ବିଭକ୍ତେବ ମନୋଭବସ୍ୟ ॥ ୭୭ ॥

ଅନ୍ୱୟ- ଉମାୟାଃ ରୋମୋଦ୍ଗମଃ ପ୍ରାଦୁରଭୂତ୍। ପୁଙ୍ଗବକେତୁଃ ସ୍ୱିନ୍ନାଙ୍ଗୁଳିଃ ଆସୀତ୍। ପାଣିସମାଗମେନ ତୟୋଃ ମନୋଭବସ୍ୟ ବୃତ୍ତିଃ ସମଂ ବିଭକ୍ତା ଇବ ଅଭୁତ।

ପଦ୍ୟାନୁବାଦ -

ହସ୍ତର ମିଳନ ହୁଅନ୍ତେ ଉମାଙ୍କ
ଅଙ୍ଗ ହେଲା ରୋମାଞ୍ଚିତ
ମହାଦେବଙ୍କର ଅଙ୍ଗୁଳି ସମସ୍ତ
ହୋଇଲା ମଧ୍ୟ ଘର୍ମାକ୍ତ।
ଏପରି ଭାବରେ ଏକ ସମୟରେ
ବଧୂ ବରଙ୍କ ମନରେ
କାମ ଭାବନାର ଉଭବ ହୋଇଲା
ସତେ କି ସମ ଭାବରେ ॥ ୭୭ ॥

### ଶ୍ଲୋକ- ୭୮

ପ୍ରଯୁକ୍ତପାଣିଗ୍ରହଣଂ ଯଦନ୍ୟଦ୍
ବଧୂବରଂ ପୁଷ୍ୟତି କାନ୍ତିମଗ୍ର୍ୟାମ୍।
ସାନ୍ନିଧ୍ୟଯୋଗାଦନୟୋସ୍ତଦାନୀଂ
କିଂ କଥ୍ୟତେ ଶ୍ରୀରୁଭୟସ୍ୟ ତସ୍ୟ ॥ ୭୮ ॥

ଅନ୍ୱୟ - ଯତ୍ ପ୍ରଯୁକ୍ତପାଣିଗ୍ରହଣଂ ଅନ୍ୟଦ୍ ବଧୂବରଂ ଅନୟୋଃ ସାନ୍ନିଧ୍ୟଯୋଗାଦ୍ ଅଗ୍ର୍ୟାଂ କାନ୍ତିଂ ପୁଷ୍ୟତି। ତଦାନୀମ୍ ତସ୍ୟ ଉଭୟସ୍ୟ ଶ୍ରୀଃ କିଂ କଥ୍ୟେତେ।

ପଦ୍ୟାନୁବାଦ -

ଉମା ଶଂକରଙ୍କ ସ୍ମରଣ କରିଲେ
ସଂସାରେ ବିବାହ ବେଳେ
ବର ବଧୂଙ୍କର ଶୋଭା ବଢିଥାଏ
ସଙ୍ଗେ ସଙ୍ଗେ ସେଇକାଳେ।
ଯେତେବେଳେ ସ୍ୱୟଂ ଉମାଶଂକରଙ୍କ
ହେଉଛି ବିବାହୋତ୍ସବ
ସେ ବିଶେଷ ଶୋଭା ବର୍ଣ୍ଣନ କରିବା
ହୋଇ ପାରେ କି ସମ୍ଭବ? ॥ ୭୮ ॥

## ଶ୍ଳୋକ- ୭୯

ପ୍ରଦକ୍ଷିଣପ୍ରକ୍ରମଣାତ୍କୃଶାନୋଃ
ଉଦର୍ଚ୍ଚିଷସ୍ତନ୍ମିଥୁନଂ ଚକାସେ।
ମେରୋରୁପାନ୍ତେଷ୍ୱିବ ବର୍ତ୍ତମାନମ୍
ଅନ୍ୟୋନ୍ୟସଂସକ୍ତମହସ୍ତ୍ରିୟାମମ୍ ॥ ୭୯ ॥

ଅନ୍ୱୟ - ତନ୍ମିଥୁନମ୍ ଉଦର୍ଚ୍ଚିଷଃ କୃଶାନୋଃ ପ୍ରଦକ୍ଷିଣପ୍ରକ୍ରମଣାତ୍ ମେରୋଃ ଉପାନ୍ତେଷୁ ବର୍ତ୍ତମାନମ୍ ଅନ୍ୟୋନ୍ୟସଂସକ୍ତମ୍ ଅହସ୍ତ୍ରିୟାମମ୍ ଇବ ଚକାସେ।

ପଦ୍ୟାନୁବାଦ -

ଉଚ୍ଚ ଅଗ୍ନିଶିଖା- ମାନ ଉପରକୁ
ଉଠୁଥିଲା ବେଦୀପରେ
ଉମା ଓ ଶଂକର ପ୍ରଦକ୍ଷିଣ କରୁ-
ଥିଲେ ତା ଚତୁର୍ପାର୍ଶ୍ୱରେ।
ପ୍ରତେ ହେଉଥିଲା ସତେ ଅବା ଦିବା
ରଜନୀ ଏକତ୍ର ଆସି
ସୁମେରୁ ପର୍ବତ ପ୍ରଦକ୍ଷିଣ କରୁ-
ଛନ୍ତି ଦୁଇଜଣ ମିଶି ॥ ୭୯ ॥

### ଶ୍ଳୋକ- ୮୦

ତୌ ଦମ୍ପତୀ ତ୍ରିଃ ପରିଣୀୟ ବହ୍ନିମ୍
ଅନ୍ୟୋନ୍ୟସଂସ୍ପର୍ଶନିମିଳିତାକ୍ଷୌ ।
ସ କାରୟାମାସ ବଧୂଂ ପୁରୋଧାଃ
ତସ୍ମିନ୍ସମିଦ୍ଧାର୍ଚିଷି ଲାଜମୋକ୍ଷମ୍ ॥ ୮୦ ॥

ଅନ୍ୱୟ - ସ ପୁରୋଧାଃ ଅନ୍ୟୋନ୍ୟସଂସ୍ପର୍ଶନିମିଳିତାକ୍ଷୌ ତୌ ଦମ୍ପତୀ ବହ୍ନିଂ ତ୍ରିଃ ପରଣୀୟ, ସମିଦ୍ଧାର୍ଚିଷି ତସ୍ମିନ୍ ବଧୂଂ ଲାଜମୋକ୍ଷଂ କାରୟାମାସ ।

ପଦ୍ୟାନୁବାଦ -

ପରସ୍ପର ସ୍ପର୍ଶ ହେତୁ ନିମିଳିତ
ଉମାଶଂକରଙ୍କ ନେତ୍ର
ଅଗ୍ନି ଚତୁଃପାର୍ଶ୍ୱେ ପ୍ରଦକ୍ଷିଣ ତିନି
ଥର ହୋଇଲା ସମାପ୍ତ ।
ତତ୍ପରେ ପୁରୋଧା ଉମାଙ୍କ ହସ୍ତରେ
ଧାନ୍ୟଖଇକୁ ଧରାଇ
ଲଜ୍ୟା ବିସର୍ଜନ ପାଇଁକି କହିଲେ
ଅଗ୍ନିରେ ଦିଅ ପକାଇ ॥ ୮୦ ॥

### ଶ୍ଳୋକ -୮୧

ସା ଲାଜଧୂମାଞ୍ଜଳିମିଷ୍ଟଗନ୍ଧଂ
ଗୁରୁପଦେଶାଦ୍ୱଦନଂ ନିନାୟ ।
କପୋଳସଂସର୍ପିଶିଖଃ ସ ତସ୍ୟା
ମୁହୂର୍ତ୍ତକର୍ଣ୍ଣୋତ୍ପଳତାଂ ପ୍ରପେଦେ ॥ ୮୧ ॥

ଅନ୍ୱୟ - ସା ଗୁରୂପଦେଶାଦ୍ ଇଷ୍ଟଗନ୍ଧଂ ଲାଜଧୂମାଞ୍ଜଳିଂ ବଦନଂ ନିନାୟ ।
କପୋଳସଂସର୍ପିଶିଖଃ ସା ତସ୍ୟାଃ ମୁହୂର୍ତ୍ତକର୍ଣ୍ଣୋତ୍ପଳତାଂ ପ୍ରପେଦେ ।

ପଦ୍ୟାନୁବାଦ -

ଖଇର ଧୂଆଁକୁ ଅଞ୍ଜଳିରେ ଭରି
ପୁରୋହିତଙ୍କ ଆଦେଶେ
ଆଘ୍ରାଣ କରିବା ପାଇଁ ଉମା ନେଲେ
ଅଞ୍ଜଳିକୁ ନାକ ପାଶେ ।
ସେ ଧୂମ୍ର କୁଣ୍ଡଳ ସ୍ପର୍ଶ କଲାଯାଇ
ଉମାଙ୍କ କପୋଳଦେଶ
ପ୍ରତେ ହେଉଥିଲା ସତେ ଅବା ତାହା
କର୍ଣ୍ଣ ଭୂଷଣ ବିଶେଷ ॥ ୮୧ ॥

## ଶ୍ଳୋକ -୮୨

ତଦୀଷଦାର୍ଦ୍ରାରୁଣଗଣ୍ଡଲେଖମ୍
ଉଚ୍ଛ୍ୱାସିକାଲାଞ୍ଜନରାଗମକ୍ଷ୍ଣୋଃ ।
ବଧୂମୁଖଂ କ୍ଳାନ୍ତଯବାବତଂସମ୍
ଆଚରଧୂମଗ୍ରହଣାଦ୍ ବଭୂବ ॥ ୮୨ ॥

ଅନ୍ୱୟ - ତଦ୍ ବଧୂମୁଖମ୍ ଆଚରଧୂମଗ୍ରହଣାଦ୍ ଈଷଦାର୍ଦ୍ରାରୁଣଗଣ୍ଡଲେଖମ୍ ଅକ୍ଷ୍ଣୋଃ ଉଚ୍ଛ୍ୱାସିକାଲାଞ୍ଜନରାଗଂ କ୍ଳାନ୍ତଯବାବତଂସଂ ବଭୂବ ।

ପଦ୍ୟାନୁବାଦ -

ମଙ୍ଗଳ ବିଧିର ଉଷ୍ମ ଧୂଆଁକୁ
ଆଘ୍ରାଣ କରନ୍ତେ ଉମା
ଗାଲ ତାଙ୍କ ଲାଲ ବର୍ଣ୍ଣ ହୋଇଗଲା
ସ୍ୱେଦବିନ୍ଦୁ ହେଲା ଜମା ।
ନେତ୍ରେ ପିନ୍ଧିଥିବା କଜ୍ୱଳ ତାଙ୍କର
ଏଣେ ତେଣେ ଗଲା ବୋହି
କର୍ଣ୍ଣପରେ ସ୍ଥିତ ଯବାଙ୍କୁର ପତ୍ର
ମଉଳି ପଡିଲା ଶୋଇ ॥ ୮୨ ॥

### ଶ୍ଲୋକ- ୮୩

ବଧୂଂ ଦ୍ୱିଜଃ ପ୍ରାହ ତବଷ ବତ୍ସେ !
ବହ୍ନିର୍ବିବାହଂ ପ୍ରତି କର୍ମସାକ୍ଷୀ ।
ଶିବେନ ଭର୍ତ୍ରା ସହ ଧର୍ମଚର୍ଯ୍ୟା
କାର୍ଯ୍ୟା ତ୍ୱୟା ମୁକ୍ତବିଚାରୟେତି ॥ ୮୩ ॥

ଅନ୍ୱୟ - ହେ ବତ୍ସେ ! ଏଷ ବହ୍ନିଃ ତବ ବିବାହଂ ପ୍ରତି କର୍ମସାକ୍ଷୀ, ଭର୍ତ୍ରା ଶିବେନ ସହ ମୁକ୍ତବିଚାରୟା ତ୍ୱୟା ଧର୍ମଚର୍ଯ୍ୟା କାର୍ଯ୍ୟା ଇତି ଦ୍ୱିଜଃ ବଧୂଂ ପ୍ରାହ ।

ପଦ୍ୟାନୁବାଦ -

କହିଲେ ପୁରୋଧା ହେ ପୁତ୍ରୀ ପାର୍ବତୀ
ଯାହା ମୁଁ କହୁଛି ଶୁଣ
ତୁମ୍ଭ ଦୁହିଁଙ୍କର ବିବାହ କର୍ମର
ଅଗ୍ନିଦେବ ସାକ୍ଷୀ ଜାଣ ।
ତେଣୁ ତୁମ୍ଭ ପତି ଶିବ ମହାଯତି
ସମ୍ବନ୍ଧେ ନଭାବି କିଛି
ଧର୍ମ ଆଚରଣ କରିବ ସର୍ବଦା
ଏ ଉପଦେଶ ଦେଉଛି ॥ ୮୩ ॥

### ଶ୍ଲୋକ- ୮୪

ଆଲୋଚନାନ୍ତଂ ଶ୍ରବଣେ ବିତତ୍ୟ
ପୀତଂ ଗୁରୋସ୍ତଦ୍ୱଚନଂ ଭବାନ୍ୟା ।
ନିଦାଘକାଲୋଲ୍ବଣତାପୟେବ
ମାହେନ୍ଦ୍ରମମ୍ଭଃ ପ୍ରଥମଂ ପୃଥିବ୍ୟା ॥ ୮୪ ॥

ଅନ୍ୱୟ - ଭବାନ୍ୟା ଆଲୋଚନାନ୍ତଂ ଶ୍ରବଣେ ବିତତ୍ୟ ତଦ୍ ଗୁରୋଃ ବଚନଂ ନିଦାଘକାଲୋଲ୍ବଣତାପୟା 'ପୃଥିବ୍ୟା ପ୍ରଥମ୍ ମାହେନ୍ଦ୍ରଂ ଅମ୍ଭ ଇବ' ପୀତମ୍ ।

ପଦ୍ୟାନୁବାଦ -

ନୟନ ପର୍ଯ୍ୟନ୍ତ ପ୍ରସାରିଣ କର୍ଣ୍ଣ
ପାର୍ବତୀ ଗୁରୁ ବଚନ
ପିଇଗଲେ ଯଥା ଗ୍ରୀଷ୍ମେ ତପ୍ତ ଧରା
ପିଏ ଆଦ୍ୟ ବର୍ଷାକଣ ॥ ୮୪ ॥

**ଶ୍ଲୋକ -୮୫**

ଧ୍ରୁବେଣ ଭର୍ତ୍ରା ଧ୍ରୁବଦର୍ଶନାୟ
ପ୍ରଜୁଜ୍ୟମାନା ପ୍ରିୟଦର୍ଶନେନ ।
ସା ଦୃଷ୍ଟ ଇତ୍ୟାନନମୁନ୍ନମୟ୍ୟ
ହ୍ରୀସନ୍ନକଣ୍ଠୀ କଥମପ୍ୟୁବାଚ ॥ ୮୫ ॥

ଅନ୍ୱୟ- ପ୍ରିୟଦର୍ଶନେନ ଧ୍ରୁବେଣ ଭର୍ତ୍ରା ଧ୍ରୁବଦର୍ଶନାୟ ପ୍ରଜୁଜ୍ୟମାନା ହ୍ରୀସନ୍ନକଣ୍ଠୀ କଥମପି ଆନନମ୍ ଉନ୍ନମୟ୍ୟ ଦୃଷ୍ଟ ଇତି ଉବାଚ ।

ପଦ୍ୟାନୁବାଦ -

ଅତି ଦର୍ଶନୀୟ ସ୍ଥିରଚିତ୍ତ ପତି
ଶିବ ଯେବେ ପାର୍ବତୀଙ୍କୁ
କହିଲେ ଚାହିଁବା ପାଇଁକି ବିଶେଷ
ନକ୍ଷତ୍ର ଧ୍ରୁବ ଆଡକୁ ।
ସେ କାଳେ ପାର୍ବତୀ ଉର୍ଦ୍ଧ୍ୱେ ମୁଖ କରି
ରୁଦ୍ଧଗଳେ ଲଜ୍ୟାଭରେ
କହିଲେ ଏତିକି 'ଦେଖିଲି ମୁଁ' ବୋଲି
ଅତ୍ୟନ୍ତ କ୍ଷୀଣ ସ୍ୱରରେ ॥ ୮୫ ॥

### ଶ୍ଳୋକ- ୮୬

ଇତ୍ଥଂ ବିଧିଜ୍ଞେନ ପୁରୋହିତେନ
ପ୍ରଯୁକ୍ତପାଣିଗ୍ରହଣୋପଚାରୌ ।
ପ୍ରଣେମତୁସ୍ତୌ ପିତରୌ ପ୍ରଜାନାଂ
ପଦ୍ମାସନସ୍ଥାୟ ପିତାମହାୟ ॥ ୮୬ ॥

ଅନ୍ୱୟ - ଇତ୍ଥଂ ବିଧିଜ୍ଞେନ ପୁରୋହିତେନ ପ୍ରଯୁକ୍ତପାଣିଗ୍ରହଣୋପଚାରୌ ପ୍ରଜାନାଂ ପିତରୌ ତୌ ପଦ୍ମାସନସ୍ଥାୟ ପିତାମହାୟ ପ୍ରଣେମତୁଃ ।

ପଦ୍ୟାନୁବାଦ -

ଏମନ୍ତ ପ୍ରକାରେ ବିଧି ଅନୁସାରେ
ଶାସ୍ତ୍ରଜ୍ଞାନୀ ପୁରୋହିତ
ବିବାହ ସମ୍ବନ୍ଧୀ ସମସ୍ତ ସଂସ୍କାର
କୃତ୍ୟକୁ କଲେ ସମାପ୍ତ ।
ତା'ପରେ ଜଗତ- ମାତା ପିତା ରୂପୀ
ପାର୍ବତୀ ଏବଂ ଶଂକର
କମଳ ଆସନେ ଆସୀନ ବ୍ରହ୍ମାଙ୍କୁ
ଜଣାଇଲେ ନମସ୍କାର ॥ ୮୬ ॥

### ଶ୍ଳୋକ -୮୭

ବଧୂର୍ବିଧାତ୍ରା ପ୍ରତିନନ୍ଦ୍ୟତେ ସ୍ମ
କଲ୍ୟାଣି ! ବୀରପ୍ରସବା ଭବତି ।
ବାଚସ୍ପତିଃ ସନ୍ନପି ସ୍ୱଂଷ୍ଟମୂର୍ତ୍ତୌ
ତ୍ୱାଶାସ୍ୟଚିନ୍ତାସ୍ତିମିତୋ ବଭୂବ ॥ ୮୭ ॥

ଅନ୍ୱୟ - ବଧୂର୍ବିଧାତ୍ରା 'ହେ କଲ୍ୟାଣି ! ବୀରପ୍ରସବା ଭବ' ଇତି ପ୍ରତିନନ୍ଦ୍ୟତେ ସ୍ମ । ସଃ ବାଚସ୍ପତିଃ ସନ୍ ଅପି ଅଷ୍ଟମୂର୍ତ୍ତୌ ତୁ ଆଶାସ୍ୟଚିନ୍ତାସ୍ତିମିତଃ ବଭୂବ ।

ପଦ୍ୟାନୁବାଦ -

'ହେ କଲ୍ୟାଣୀ' ବୋଲି  ସମ୍ବୋଧନ କରି
ପାର୍ବତୀଙ୍କୁ ବ୍ରହ୍ମଦେବ
ଦେଲେ ଆଶୀର୍ବାଦ  ଜୀବନରେ ତୁମେ
ବୀରପ୍ରସବିନୀ ଭବ।
ବାଚସ୍ପତି ବ୍ରହ୍ମା  ଅଷ୍ଟମୂର୍ତ୍ତି ଶିବେ
ଦେବେ କି ଆଶୀର୍ବଚନ
ସଙ୍ଗେ ସଙ୍ଗେ ସ୍ଥିର  କରି ନପାରିଣ
ବିଘ୍ନରେ ରହିଲେ ମଗ୍ନ ॥ ୮୭ ॥

### ଶ୍ଳୋକ -୮୮

କ୍ଳୃପ୍ତୋପଚାରାଂ ଚତୁରସ୍ରବେଦୀଂ
ତାବେତ୍ୟ ପଶ୍ଚାତ୍କନକାସନସ୍ଥୌ।
ଜାୟାପତି ଲୌକିକମେଷଣୀୟମ୍
ଆର୍ଦ୍ରାକ୍ଷତାରୋପଣମନ୍ୱଭୂତାମ୍ ॥ ୮୮ ॥

ଅନ୍ୱୟ - ତୌ ଜାୟାପତି ପଶ୍ଚାତ୍ କ୍ଳୃପ୍ତୋପଚାରାଂ ଚତୁରସ୍ରବେଦୀଂ ଏତ୍ୟ, କନକାସନସ୍ଥୌ ସନ୍ତୌ ଲୌକିକମ୍ ଏଷଣୀୟମ୍ ଆର୍ଦ୍ରାକ୍ଷତାରୋପଣମ୍ ଅନ୍ୱଭୂତାମ୍।

ପଦ୍ୟାନୁବାଦ -

ଏହାପରେ ପୁଷ୍ପେ  ରଚିତ ବେଦୀକୁ
ବର ବଧୂ ଦୁହେଁ ଆସି
ସୁବର୍ଣ୍ଣେ ନିର୍ମିତ  ଆସନ ଉପରେ
ଦୁଇଜଣ ଗଲେ ବସି।
ଏହାପରେ ଲୋକ-  ରୀତି ଅନୁସାରେ
ଆର୍ଦ୍ର ଓ ପୀତ ଅକ୍ଷତ
ତାଙ୍କ ଉପରକୁ  ପକାଇଲେ ଲୋକ
ମନେ ହୋଇ ଆନନ୍ଦିତ ॥ ୮୮ ॥

### ଶ୍ଲୋକ -୮୯

ପତ୍ରାନ୍ତଲଗ୍ନୈର୍ଜଳବିନ୍ଦୁଜାଲୈଃ
ଆକୃଷ୍ଟମୁକ୍ତାଫଳଜାଲଶୋଭମ୍ ।
ତୟୋରୁପର୍ଯ୍ୟାୟତନାଳଦଣ୍ଡମ୍
ଆଧତ୍ତ ଲକ୍ଷ୍ମୀଃ କମଳାତପତ୍ରମ୍ ॥ ୮୯ ॥

ଅନ୍ୱୟ - ଲକ୍ଷ୍ମୀଃ ପତ୍ରାନ୍ତଲଗ୍ନୈଃ ଜଳବିନ୍ଦୁଜାଲୈଃ ଆକୃଷ୍ଟମୁକ୍ତାଫଳଜାଲଶୋଭମ୍ ଆୟତନାଳଦଣ୍ଡମ୍ କମଳାତପତ୍ରମ୍ ତୟୋଃ ଉପରି ଆଧତ୍ତ ।

ପଦ୍ୟାନୁବାଦ -

ଏ ସମୟେ ମାତ ଲକ୍ଷ୍ମୀ ଉପସ୍ଥିତ
ହୋଇଲେ ସେହି ସ୍ଥାନରେ
ଦୀର୍ଘ ନାଡ ଯୁକ୍ତ କମଳର ଛତ୍ର
ଧରିଲେ ତାଙ୍କ ଉପରେ ।
ସେ କମଳ ପତ୍ର ଉପାନ୍ତେ ଝୁଲନ୍ତ
ଜଳବିନ୍ଦୁ ମୁକ୍ତା ପରି
ଚମକାଉଥିଲା କମଳ ପତ୍ରକୁ
ପତ୍ରଧାରେ ରହିକରି ॥ ୮୯ ॥

### ଶ୍ଲୋକ- ୯୦

ଦ୍ୱିଧାପ୍ରଯୁକ୍ତେନ ଚ ବାଙ୍ମୟେନ
ସରସ୍ୱତୀ ତନ୍ମିଥୁନଂ ନୁନାବ ।
ସଂସ୍କାରପୁତେନ ବରଂ ବରେଣ୍ୟଂ
ବଧୂଂ ସୁଖଗ୍ରାହ୍ୟନିବନ୍ଧନେନ ॥ ୯୦ ॥

ଅନ୍ୱୟ - ସରସ୍ୱତୀ ଦ୍ୱିଧାପ୍ରଯୁକ୍ତେନ ବାଙ୍ମୟେନ ତନ୍ମିଥୁନଂ ନୁନାବ । ସଂସ୍କାରପୁତେନ ବରେଣ୍ୟଂ ବରଂ, ସୁଖଗ୍ରାହ୍ୟନିବନ୍ଧନେନ ବଧୂଂ ନୁନାବ ।

ପଦ୍ୟାନୁବାଦ -

ତା'ପରେ ଭାରତୀ ଶିବ ଓ ପାର୍ବତୀ
ଯୁଗଳମୂର୍ତ୍ତିଙ୍କ ସ୍ତୁତି
ହୋଇ ଉପସ୍ଥିତ ସଂସ୍କୃତ ପ୍ରାକୃତ
ଭାଷାରେ କଲେ ଆବୃତ୍ତି ।
ଶିବଙ୍କର ସ୍ତୁତି ସଂସ୍କୃତ ଭାଷାରେ
କରିଥିଲେ ସେ ପ୍ରସ୍ତୁତ
ପାର୍ବତୀଙ୍କ ସ୍ତୁତି ସୁବୋଧ ପ୍ରାକୃତ
ଭାଷାରେ ଥିଲା ରଚିତ ॥ ୯୦ ॥

## ଶ୍ଲୋକ -୯୧

ତୌ ସନ୍ଧିସୁ ବ୍ୟଞ୍ଜିତବୃତ୍ତିଭେଦଂ
ରସାନ୍ତରେଷୁ ପ୍ରତିବଦ୍ଧରାଗମ୍ ।
ଅପଶ୍ୟତାମପ୍ସରସାଂ ମୁହୂର୍ତ୍ତଂ
ପ୍ରୟୋଗମାଦ୍ୟଂ ଲଳିତାଙ୍ଗହାରମ୍ ॥ ୯୧ ॥

ଅନ୍ୱୟ - ତୌ ସନ୍ଧିଷୁ ବ୍ୟଞ୍ଜିତବୃତ୍ତିଭେଦଂ ରସାନ୍ତରେଷୁ ପ୍ରତିବଦ୍ଧରାଗମ୍ ଲଳିତାଙ୍ଗହାରମ୍ ଆଦ୍ୟମ୍ ଅପ୍ସରସାଂ ପ୍ରୟୋଗଂ ମୁହୂର୍ତ୍ତମ୍ ଅପଶ୍ୟତାମ୍ ।

ପଦ୍ୟାନୁବାଦ -

ଶିବ ଓ ପାର୍ବତୀ କିଛି କ୍ଷଣ ପାଇଁ
ହୋଇ ସେଠାରେ ଆସୀନ
ଅପ୍ସରାଙ୍କ ଦ୍ୱାରା ଅଭିନୀତ ଏକ
ନାଟକ କଲେ ଦର୍ଶନ ।
ନାଟକେ ଶୃଙ୍ଗାର ରସ ଆଦି ସହ
ଭିନ୍ନ ଭିନ୍ନ ଢଙ୍ଗଢାଙ୍ଗ
ଭିନ୍ନ ଭିନ୍ନ ସନ୍ଧି ମାନଙ୍କରେ ଥିଲା
ଭିନ୍ନ ଭାଷାର ପ୍ରୟୋଗ ॥ ୯୧ ॥

## ଶ୍ଲୋକ- ୯୨

ଦବାସ୍ତଦନ୍ତେ ହରମୂଢମାର୍ଯଂ
କିରୀଟବଦ୍ଧାଞ୍ଜଳୟୋ ନିପତ୍ୟ ।
ଶାପାବସାନେ ପ୍ରତିପନ୍ନମୂର୍ତ୍ତେଃ
ଯଯାଚିରେ ପଞ୍ଚଶରସ୍ୟ ସେବାମ୍ ॥ ୯୨ ॥

ଅନ୍ୱୟ - ଦେବାଃ ତଦନ୍ତେ ଉଢମାର୍ଯଂ ହରଂ କିରୀଟବଦ୍ଧାଞ୍ଜଳୟଃ ସନ୍ତଃ ନିପତ୍ୟ ଶାପାବସାନେ ପ୍ରତିପନ୍ନମୂର୍ତ୍ତେଃ ପଞ୍ଚଶରସ୍ୟ ସେବାଂ ଯଯାଚିରେ ।

ପଦ୍ୟାନୁବାଦ -

ନାଟକ ସମାପ୍ତ ହେଲାପରେ ହାତ
ଯୋଡି ଇନ୍ଦ୍ରାଦି ଦେବତା
କଲେ ପ୍ରଣିପାତ ନତ କର ନିଜ
ମୁକୁଟ ଶୋଭିତ ମଥା ।
ପ୍ରାର୍ଥନା କରିଲେ କନ୍ଦର୍ପର ଶାପ
ଅବଧି ହୋଇଛି ପୂର୍ଣ୍ଣ
ସେବା ଅବସର ଦିଆଯାଉ ତାଙ୍କୁ
ଦେଇ ପୁନଃ ଜୀବଦାନ ॥ ୯୨ ॥

## ଶ୍ଲୋକ- ୯୩

ତସ୍ୟାନୁମେନେ ଭଗବାନ୍ ବିମନ୍ୟୁଃ
ବ୍ୟାପାରମାତ୍ମନ୍ୟପି ସାୟକାନାମ୍ ।
କାଳପ୍ରଯୁକ୍ତା ଖଲୁ କାର୍ଯ୍ୟବିଭିଃ
ବିଜ୍ଞାପନା ଭର୍ତ୍ତୃଷୁ ସିଦ୍ଧିମେତି ॥ ୯୩ ॥

ଅନ୍ୱୟ - ବିମନ୍ୟୁଃ ଭଗବାନ୍ ଆତ୍ମନି ଅପି ତସ୍ୟ ସାୟକାନାମ୍ ବ୍ୟାପାରମ୍ ଅନୁମେନେ । ତଥାହି କାର୍ଯ୍ୟବିଭିଃ କାଳପ୍ରଯୁକ୍ତା ଭର୍ତ୍ତୃଷୁ ବିଜ୍ଞାପନା ସିଦ୍ଧିମ୍ ଏତି ଖଲୁ ।

ପଦ୍ୟାନୁବାଦ -

ବିବାହୋପରାନ୍ତ ପାର୍ବତୀଙ୍କ ସାଥ
ଶିବ ଥିଲେ ପ୍ରଫୁଲ୍ଲିତ
ଦେବତାମାନଙ୍କ ପ୍ରାର୍ଥନାକୁ ଶୁଣି
ସ୍ୱୀକାର କଲେ ତୁରିତ ।
କନ୍ଦର୍ପକୁ ଜୀବ- ଦାନ ଦେଲାପରେ
ନିଜ ଉପରକୁ ବାଣ
ଚଳାଇବା ପାଇଁ ଅନୁମତି ତାଙ୍କୁ
କଲେ ତକ୍ଷଣ ପ୍ରଦାନ ।
ଏହା ଅଟେ ସତ୍ୟ ଚତୁର ସେବକ
ଯଦି ଠିକ୍ ସମୟରେ
ସ୍ୱାମୀଙ୍କୁ ପ୍ରାର୍ଥନା କରେ ତା ସଫଳ
ହୋଇଥାଏ ଅକ୍ଲେଶରେ ॥ ୯୩ ॥

### ଶ୍ଳୋକ- ୯୪

ଅଥ ବିବୁଧଗଣାନିନ୍ଦୁମୌଳିର୍ବିସୃଜ୍ୟ
କ୍ଷିତିଧରପତିକନ୍ୟାମାଦଦାନଃ କରେଣ ।
କନକକଳଶଯୁକ୍ତଂ ଭକ୍ତିଶୋଭାସନାର୍ଥଂ
କ୍ଷିତିବିରଚିତଶଯ୍ୟଂ କୌତୁକାଗାରମାଗାତ୍ ॥ ୯୪ ॥

ଅନ୍ୱୟ - ଅଥ ଇନ୍ଦୁମୌଳିଃ ତାନ୍ ବିବୁଧଗଣାନ୍‌ବିସୃଜ୍ୟ କ୍ଷିତିଧରପତିକନ୍ୟାମ୍ କରେଣ ଆଦଦାନ ସନ୍, କନକକଳଶଯୁକ୍ତଂ ଭକ୍ତିଶୋଭାସନାର୍ଥଂ କ୍ଷିତିବିରଚିତଶଯ୍ୟଂ କୌତୁକାଗାରମ୍ ଆଗାତ୍ ।

ପଦ୍ୟାନୁବାଦ -

ଚନ୍ଦ୍ରମୌଳି ଶିବ ଇନ୍ଦ୍ରାଦି ଦେବତା
ମାନଙ୍କୁ ଦେଇ ବିଦାୟ
ଗିରିରାଜ କନ୍ୟା ପାର୍ବତୀଙ୍କୁ ଧରି
ଗଲେ ଶୟନ ଆଳୟ ।

ସ୍ୱର୍ଣ୍ଣକୁମ୍ଭ ଯୁକ୍ତ ପୁଷ୍ପେ ସୁସଜ୍ଜିତ
ଶଯ୍ୟା ଥିଲା ସେ ଗୃହରେ
ଅତୀବ ସୁନ୍ଦର ସେ ଗୃହ ନିର୍ମିତ
ଥିଲା ପୃଥିବୀ ପୃଷ୍ଠରେ ॥ ୯୪ ॥

**ଶ୍ଳୋକ- ୯୫**

ନବପରିଣୟଲଜ୍ଜାଭୂଷଣାଂ ତତ୍ର ଗୌରୀଂ
ବଦନମପହରନ୍ତୀଂ ତତ୍କୃତାକ୍ଷେପମୀଶଃ ।
ଅପି ଶୟନସଖୀଭ୍ୟୋ ଦତ୍ତବାଚଙ୍କଥଞ୍ଚିତ୍
ପ୍ରଥମମୁଖବିକାରୈର୍ହାସୟାମାସ ଗୂଢ଼ମ୍ ॥ ୯୫ ॥

ଅନ୍ୱୟ - ତତ୍ର ଈଶଃ ନବପରିଣୟଲଜ୍ଜାଭୂଷଣାଂ ତତ୍କୃତାକ୍ଷେପମ୍ ବଦନଂ ଅପହରନ୍ତୀଂ ଶୟନସଖୀଭ୍ୟଃ ଅପି କଥଞ୍ଚିତ୍ ଦତ୍ତବାଚଂ ଗୌରୀଂ ପ୍ରଥମମୁଖବିକାରୈଃ ଗୂଢ଼ଂ ହାସୟାମାସ ।

ପଦ୍ୟାନୁବାଦ -

ନବ ବିବାହିତ ଉମା ଥିଲେ ଲଜ୍ୟା
ଭୂଷଣରେ ସୁଶୋଭିନୀ
ମୁଖକୁ ଲୁଚାଉ- ଥିଲେ ଯେବେ ଶିବ
ଟାଣିଲେ ପଣତକାନି ।
ସଖୀମାନଙ୍କର ପରିହାସ ପୂର୍ଣ୍ଣ
କଥାର ଉତ୍ତର ଦେଇ
ହସୁଥିଲେ ମନେ ମନେ ଗଣଙ୍କର
ବିକୃତ ମୁହଁକୁ ଚାହିଁ ॥ ୯୫ ॥

***

**(ସପ୍ତମ ସର୍ଗଃ ସମାପ୍ତ)**

# ଅଷ୍ଟମ ସର୍ଗଃ

**ଶ୍ଳୋକ- ୧**

ପାଣିପୀଡନବିଧେରନନ୍ତରଂ
ଶୈଳରାଜଦୁହିତୁର୍ହରଂ ପ୍ରତି ।
ଭାବସାଧ୍ୱସପରିଗ୍ରହାଦଭୂତ୍
କାମଦୋହଦମନୋହରଂ ବପୁଃ ॥ ୧ ॥

ଅନ୍ୱୟ- ପାଣିପୀଡନବିଧେଃ ଅନନ୍ତର, ଭାବସାଧ୍ୱସପରିଗ୍ରହାଦ୍, ଶୈଳରାଜଦୁହିତୁଃ ବପୁଃ, ହରମ୍, ପ୍ରତି, କାମଦୋହଦମନୋହରଂ, ଅଭୂତ୍ ।

ପଦ୍ୟାନୁବାଦ -

ମଧୁ ଯାମିନୀରେ ଉମାଙ୍କ ମନରେ
ରତି ପାଇଁ ଥିଲା ଇଚ୍ଛା
ମାତ୍ର ସେ ସମ୍ବନ୍ଧେ ଅଜ୍ଞାନତା ହେତୁ
ଦେଉଥିଲେ ପଛଘୁଞ୍ଚା ।
ତାଙ୍କ ଉତ୍କଣ୍ଠିତ ପଛଘୁଞ୍ଚା ଯୁକ୍ତ
ରତିଭାବର ଶରୀର
ମହେଶଙ୍କ ପାଇଁ ଥିଲା ତା ଅତ୍ୟନ୍ତ
ମନମୋହକ ସୁନ୍ଦର ॥ ୧ ॥

## ଶ୍ଲୋକ -୨

ବ୍ୟାହୃତା ପ୍ରତିବଚୋ ନ ସନ୍ଦଧେ
ଗନ୍ତୁମୈଚ୍ଛଦବଲମ୍ବିତାଂଶୁକା ।
ସେବତେ ସ୍ମ ଶୟନଂ ପରାଙ୍ମୁଖୀ
ସା ତଥାପି ରତୟେ ପିନାକିନଃ ॥ ୨ ॥

ଅନ୍ୱୟ- ସା ବ୍ୟାହୃତା(ସତୀ), ପ୍ରତିବଚଃ, ନ ସନ୍ଦଧେ, ଅବଲମ୍ବିତାଂଶୁକା, ଗନ୍ତୁମ୍, ଐଚ୍ଛତ୍, ପରାଙ୍ମୁଖୀ(ସତୀ), ଶୟନମ୍, ସେବତେ ସ୍ମ, ତଥାପି, ପିନାକିନଃ ରତୟେ ବଭୂବ।

ପଦ୍ୟାନୁବାଦ -

କିଛି କଥା ଯଦି ଶିବ ପଚାରନ୍ତି
ରହୁଥିଲେ ନିରୁତ୍ତର
ଟାଣି ଅଞ୍ଚଳକୁ ଧରିଲେ ଯିବାକୁ
ହେଉଥିଲେ ତରତର ।
ଶୟନ କକ୍ଷରେ ଶୋଉଥିଲେ ଯେବେ
ଉଭୟେ ଏକ ଶଯ୍ୟାରେ
ଶିବଙ୍କ ମୁଖକୁ ମୁଖ କରି ଶୋଉ
ନଥିଲେ ସେ ସଂକୋଚରେ ।
ତଥାପି ତାଙ୍କର ସମସ୍ତ ସରସ
ଚେଷ୍ଟାର ମର୍ମଜ୍ଞ ଶିବ
ସବୁ ପ୍ରତିକୂଳ ଥାଇ କରୁଥିଲେ
ଆନନ୍ଦ ସେ ଅନୁଭବ ॥ ୨ ॥

## ଶ୍ଲୋକ- ୩

କୈତବେନ ଶୟିତେ କୁତୁହଳାତ୍
ପାର୍ବତୀ ପ୍ରତିମୁଖଂ ନିପାତିତମ୍ ।
ଚକ୍ଷୁରୁନ୍ମିଷତି ସସ୍ମିତଂ ପ୍ରିୟେ
ବିଦ୍ୟୁତାହତମିବ ନ୍ୟମିଲୟତ୍ ॥ ୩ ॥

ଅନ୍ୱୟ - ପାର୍ବତୀ, ପ୍ରିୟେ, କୁତୁହଳାତ୍, କୈତବେନ, ଶୟିତେ, ମୁଖମ୍, ପ୍ରତି, ନିପାତିତମ୍, ଚକ୍ଷୁଃ, ସସ୍ମିତମ୍ (ଯଥା ସ୍ୟାତ୍ ତଥା) ଉନ୍ମିଷତି ବିଦ୍ୟୁତା, ଆହତମ୍, ଇବ; ନ୍ୟମିଳୟତ୍।

ପଦ୍ୟାନୁବାଦ -

ଏକାନ୍ତେ ପାର୍ବତୀ କଣ କରୁଛନ୍ତି
ସେ କଥା ଜାଣିବା ପାଇଁ
ବାହାନାରେ ଯଦି ଆଖି ଦୁଇ ମୁଦି
ଯାଉଥିଲେ ଶିବ ଶୋଇ।
ସେକାଳେ ପାର୍ବତୀ ନିର୍ନିମେଷ ନେତ୍ରେ
ରହୁଥିଲେ ତାଙ୍କୁ ଚାହିଁ
ହସିଦେଲେ ଶିବ ସଂକୋଚରେ ବନ୍ଦ
କରୁଥିଲେ ଆଖି ଦୁଇ।
ପ୍ରତେ ହେଉଥିଲା ସତେ ବା ବିଦ୍ୟୁତ
ସ୍ଫୁରଣେ ଚମକ ପାଇ
ସହସା ତାଙ୍କର ନୟନ ପଲକ
ଆପେ ଗଲା ବନ୍ଦ ହୋଇ ॥ ୩ ॥

### ଶ୍ଳୋକ- ୪

ନାଭିଦେଶନିହିତଃ ସକମ୍ପୟା
ଶଂକରସ୍ୟ ରୁରୁଧେ ତୟା କରଃ।
ତଦ୍ଦୁକୂଳମଥ ଚାଭବତ୍ସ୍ୱୟଂ
ଦୂରମୁଚ୍ଛ୍ୱସିତନୀବୀବନ୍ଧନମ୍ ॥ ୪ ॥

ଅନ୍ୱୟ - ନାଭିଦେଶନିହିତଃ; ଶଂକରସ୍ୟ, କରଃ, ତୟା ସକମ୍ପୟା, ରୁରୁଧେ, ଅଥ, ଚ, ତଦ୍ଦୁକୂଳମ୍, ସ୍ୱୟମ୍, ଦୂରମ୍, ଉଚ୍ଛ୍ୱସିତନୀବୀବନ୍ଧନମ୍, ଅଭବତ୍।

ପଦ୍ୟାନୁବାଦ -

ନୀବୀବନ୍ଧ ଶିବ ଖୋଲିବା ପାଇଁକି
ପାର୍ବତୀଙ୍କ ନାଭିଭାଗେ
ହସ୍ତ ସ୍ପର୍ଶ ଯେବେ କରନ୍ତେ ସକମ୍ପେ
ରୋକୁଥିଲେ ସଂଗେ ସଂଗେ ।
କାହିଁକି କିପରି ହେଲା ତା ଏପରି
ଲାଗେ ଅତି ଆଚମ୍ବିତ
ଅତି ଉଚ୍ଛ୍ୱସିତ ନୀବୀବନ୍ଧ ସ୍ୱତଃ
ହେଉଥିଲା ମୁକୁଳିତ ॥ ୪ ॥

**ଶ୍ଳୋକ -୫**

ଏବମାଳି ! ନିଗୃହିତସାଧ୍ୱସଂ
ଶଙ୍କରୋ ରହସି ସେବ୍ୟତାମିତି ।
ସା ସଖୀଭିରୁପଦିଷ୍ଟମାକୁଳା
ନାସ୍ମରତ୍‌ପ୍ରମୁଖବର୍ତିନି ପ୍ରିୟେ ॥ ୫ ॥

ଅନ୍ୱୟ - ସା (ପାର୍ବତୀ) ଆଳି ! ରହସି ନିଗୃହିତସାଧ୍ୱସଂ ଶଙ୍କରଂ ସେବ୍ୟତାମ୍ ଇତି ସଖୀଭିଃ ଉପଦିଷ୍ଟମ୍, ପ୍ରିୟେ ପ୍ରମୁଖବର୍ତିନି (ସତୀ) ଆକୁଳା ନ ଅସ୍ମରତ୍ ।

ପଦ୍ୟାନୁବାଦ -

ବିଧି ଦ୍ୱାରା ବିନା ଦ୍ୱିଧାରେ ଶିବଙ୍କୁ
କାମକ୍ରୀଡାରେ ସନ୍ତୋଷ
କରିବାକୁ ଶିକ୍ଷା ଦେଇଥିଲେ ସଖୀ-
ମାନେ ଉମାଙ୍କୁ ଅବଶ୍ୟ ।
ମାତ୍ର ଯେତେବେଳେ ସମ୍ମୁଖରେ ଶିବ
ଆସୁଥିଲେ ଉମାଙ୍କର
ବିଚଳିତ ହୋଇ ଭୁଲି ଯାଉଥିଲେ
ଉପଦେଶ ସଖୀଙ୍କର ॥ ୫ ॥

## ଶ୍ଳୋକ -୬

ଅପ୍ୟବସ୍ତୁନି କଥାପ୍ରବୃତ୍ତୟେ
ପ୍ରଶ୍ନତତ୍ପରମନଙ୍ଗଶାସନମ୍ ।
ବୀକ୍ଷିତେନ ପରିଗୃହ୍ୟ ପାର୍ବତୀ
ମୂର୍ଧକମ୍ପମୟମୁତ୍ତରଂ ଦଦୌ ॥ ୬ ॥

ଅନ୍ୱୟ- ପାର୍ବତୀ ଅନଙ୍ଗଶାସନମ୍ କଥାପ୍ରବୃତ୍ତୟେ ଅବସ୍ତୁନି ଅପି ପ୍ରଶ୍ନତତ୍ପରମ୍ ବୀକ୍ଷିତେନ ପରିଗୃହ୍ୟ ମୂର୍ଧକମ୍ପମୟମ୍ ଉତ୍ତରମ୍ ଦଦୌ ।

ପଦ୍ୟାନୁବାଦ -

ଯେବେ କେବେ ଶିବ କଥାର ପ୍ରସଙ୍ଗେ
ରତିକ୍ରୀଡା ସମ୍ବନ୍ଧିତ
ଏଣୁ ତେଣୁ କଥା କହି ରହୁଁଥିଲେ
ଉତ୍ତର ତାର ତୁରିତ ।
ସେକାଳେ ପାର୍ବତୀ ଶଂକରଙ୍କୁ ଦେଖି
କେବଳ ଶିର ହଲାଇ
ତାଙ୍କ ପ୍ରଶ୍ନୋତ୍ତର ଦେଉଥିଲେ ଖାଲି
'ହଁ' ଅବା 'ନାହିଁ' କହି ॥ ୬ ॥

## ଶ୍ଳୋକ- ୭

ଶୂଳିନଃ କରତଳଦ୍ୱୟେନ ସା
ସନ୍ନିରୁଧ୍ୟ ନୟନେ ହୃତାଂଶୁକା ।
ତସ୍ୟ ପଶ୍ୟତିଲଲାଟଲୋଚନେ
ମୋଘଯତ୍ନବିଧୁରା ରହସ୍ୟଭୂତ୍ ॥ ୭ ॥

ଅନ୍ୱୟ- ରହସି ହୃତାଂଶୁକା କରତଳଦ୍ୱୟେନ ଶୂଳିନଃ ନୟନେ ସନ୍ନିରୁଧ୍ୟ ସା(ପାର୍ବତୀ) ତସ୍ୟ ଲଲାଟଲୋଚନେ ପଶ୍ୟତି (ସତୀ) ମୋଘଯତ୍ନବିଧୁରା ଅଭୂତ୍ ।

ପଦ୍ୟାନୁବାଦ -

ସୁରତ ଆରମ୍ଭ ସମୟରେ ଶିବ
ସ୍ୱହସ୍ତରେ ପାର୍ବତୀଙ୍କୁ
ସମ୍ପୂର୍ଣ୍ଣ ବିବସ୍ତ୍ର କରୁଥିଲେ ତାଙ୍କ
ନଗ୍ନ ରୂପ ଦେଖିବାକୁ ।
ପାର୍ବତୀ ସ୍ୱ ହସ୍ତେ ବନ୍ଦ କରୁଥିଲେ
ଶିବଙ୍କର ଦୁଇ ଆଖି
ହେଲେ ଶିବ ତାଙ୍କ ତୃତୀୟ ନୟନେ
ପାରୁଥିଲେ ସବୁ ଦେଖି ।
ପାର୍ବତୀ ନିଜର ସମସ୍ତ ପ୍ରଯତ୍ନ
ହେଉଥିବା ଦେଖି ବ୍ୟର୍ଥ
ମନେ ଅନ୍ୟ କିଛି ଉପାୟ ନପାଇ
ହେଉଥିଲେ ବିଚଳିତ ॥ ୭ ॥

### ଶ୍ଳୋକ- ୮

ଚୁମ୍ବନେଷ୍ୱଧରଦାନବର୍ଜିତମ୍
ସନ୍ନହସ୍ତସଦୟୋପଗୂହନମ୍ ।
କ୍ଲିଷ୍ଟମନ୍ମଥମପି ପ୍ରିୟ ପ୍ରଭୋଃ
ଦୁର୍ଲଭପ୍ରତିକୃତଂ ବଧୂରତମ୍ ॥ ୮ ॥

ଅନ୍ୱୟ - ଚୁମ୍ବନେଷୁ ଅଧରଦାନବର୍ଜିତମ୍ ସନ୍ନହସ୍ତସଦୟୋପଗୂହନମ୍ (ଅପି) କ୍ଲିଷ୍ଟମନ୍ମଥମ୍ ଅପି ଦୁର୍ଲଭପ୍ରତିକୃତଂ ବଧୂରତମ୍ ପ୍ରଭୋଃ ପ୍ରିୟମ୍ (ଅଭୂତ୍) ।

ପଦ୍ୟାନୁବାଦ -

ଯେ କାଳେ ଚୁମ୍ବନ ଦେବାପାଇଁ ମନ
କରୁଥିଲେ ମହେଶ୍ୱର
ସେ କାଳେ ପାର୍ବତୀ ଦେଖାଉ ନଥିଲେ
ଚୁମ୍ବନ ପାଇଁ ଅଧର ।

ଗାଢ ଆଲିଙ୍ଗନ    କରିବାକୁ ମନ
କରୁଥିଲେ ଯେବେ ଶିବ
ସ୍ତନପରେ ହସ୍ତ    ରଖନ୍ତେ ପାର୍ବତୀ
ହେଉଥିଲା ଅସମ୍ଭବ ।
ସହଯୋଗହୀନ    ତଥା କଷ୍ଟପୂର୍ଣ୍ଣ
ଏପରି ବଧୂ-ସଂଗମ
ଶଙ୍କରଙ୍କ ପାଇଁ    ଥିଲା ଅତି ପ୍ରିୟ
ଅତ୍ୟନ୍ତ ହିଁ ଅନୁପମ ॥ ୮ ॥

### ଶ୍ଳୋକ- ୯

ଯନ୍ମୁଖଗ୍ରହଣମକ୍ଷତାଧରଂ
ଦତ୍ତମବ୍ରଣପଦଂ ନଖଂ ଚ ଯତ୍ ।
ତଦ୍ରତଂ ଚ ସଦୟଂ ପ୍ରିୟସ୍ୟ ତତ୍
ପାର୍ବତୀ ବିଷହତେ ସ୍ମ ନେତରତ୍ ॥ ୯ ॥

ଅନ୍ୱୟ - ପାର୍ବତୀ ପ୍ରିୟସ୍ୟ ଅକ୍ଷତାଧରଂ ଯତ୍ ମୁଖଗ୍ରହଣମ୍ ଅବ୍ରଣପଦଂ ଯତ୍ ନଖଂ ଦତ୍ତମ୍ ସଦୟମ୍ ଯତ୍ ଚ ରତମ୍ ତଦ୍ ବିଷହତେ ସ୍ମ ଇତରତ୍ ନ (ବିଷହତେ ସ୍ମ) ।

ପଦ୍ୟାନୁବାଦ -

ଚୁମ୍ବନ ଦେବାର    ସମୟେ ଅଧରେ
ନ କରି ଦନ୍ତ ଆଘାତ
ସ୍ତନକୁ ମର୍ଦ୍ଦନ    କରିବା ସମୟେ
ନ କରି ନଖରେ କ୍ଷତ ।
ଧୀର ଓ କୋମଳ    ସମ୍ଭୋଗର ଖେଳ
କରୁଥିଲେ ମହେଶ୍ୱର
କଠୋର ସମ୍ଭୋଗ    ପାଇଁ ପାର୍ବତୀଙ୍କୁ
ଲାଗୁଥିଲା ଭାରି ଡର ॥ ୯ ॥

## ଶ୍ଳୋକ- ୧୦

ରାତ୍ରିବୃତ୍ତମନୁଯୋକ୍ତୁମୁଦ୍ୟତଂ
ସା ବିଭାତସମୟେ ସଖୀଜନମ୍ ।
ନାକରୋଦପକୁତୁହଳଂ ହ୍ରିୟା
ଶଂସିତୁଂ ତୁ ହୃଦୟେନ ତତ୍ୱରେ ॥ ୧୦ ॥

ଅନ୍ୱୟ - ବିଭାତସମୟେ, ରାତ୍ରିବୃତ୍ତମ୍ ଅନୁଯୋକ୍ତୁମ୍ ଉଦ୍ୟତମ୍ ସଖୀଜନମ୍ ସା (ପାର୍ବତୀ) ହ୍ରିୟା ଅପକୁତୁହଳମ୍ ନ ଅକରୋତ୍, ହୃଦୟେନ ତୁ ଶଂସିତୁମ୍ ତତ୍ୱରେ ।

ପଦ୍ୟାନୁବାଦ -

ରାତ୍ରି ଅବସାନେ ଯେବେ ସଖୀମାନେ
ମଧୁରାତ୍ରି ବିଷୟରେ
ପଚାରନ୍ତେ ତା'ର ନଦେଇ ଉତ୍ତର
ରହୁଥିଲେ ନିରବରେ ।
ଯଦିଓ ମନରେ ଶୁଣାଇବା ପାଇଁ
ଥିଲା ତାଙ୍କ କୌତୁହଳ
ଲଜ୍ୟାରେ ନିରବ ରହିଗଲେ ଉମା
ସଖୀ ଜିଜ୍ଞାସା ବିଫଳ ॥ ୧୦ ॥

## ଶ୍ଳୋକ -୧୧

ଦର୍ପଣେ ଚ ପରିଭୋଗଦର୍ଶିନୀ
ପୃଷ୍ଠତଃ ପ୍ରଣୟିନୋ ନିଷେଦୁଷଃ ।
ପ୍ରେକ୍ଷ୍ୟ ବିମ୍ବମନୁବିମ୍ବମାତ୍ମନଃ
କାନି କାନି ନ ଚକାର ଲଜ୍ଜୟା ॥ ୧୧ ॥

ଅନ୍ୱୟ - ଚ ଦର୍ପଣେ ପରିଭୋଗଦର୍ଶିନୀ ପୃଷ୍ଠତଃ ନିଷେଦୁଷଃ ପ୍ରଣୟିନଃ ବିମ୍ବମ୍ ଆତ୍ମନଃ ଅନୁବିମ୍ବମ୍ ପ୍ରେକ୍ଷ୍ୟ ଲଜ୍ଜୟା କାନି କାନି ନ ଚକାର ।

ପଦ୍ୟାନୁବାଦ -

ଯେ କାଳେ ମୁକୁର ଧରି ସ୍ୱ ଶରୀର
ଉପରେ ସମ୍ଭୋଗ ଚିହ୍ନ
ଦେଖୁଥାନ୍ତି ଉମା ଲୁଚି ପଛେ ଶିବ
ହୁଅନ୍ତି ଦଣ୍ଡାୟମାନ।
ସେ କାଳେ ମୁକୁରେ ନିଜ ଛବି ପଛେ
ଶିବ ପ୍ରତିବିମ୍ବ ଦେଖି
ଅନାବୃତ୍ତ ନିଜ ଶରୀରକୁ ଲାଜେ
ଦିଅନ୍ତି ଶାଢୀରେ ଢାଙ୍କି ॥ ୧୧ ॥

**ଶ୍ଳୋକ- ୧୨**

ନୀଳକଣ୍ଠପରିମୁକ୍ତଯୌବନାଂ
ତାଂ ବିଲୋକ୍ୟ ଜନନୀ ସମାଶ୍ୱସତ୍।
ଭର୍ତୃବଲ୍ଲଭତୟା ହି ମାନସୀଂ
ମାତୁରସ୍ୟତି ଶୁଚଂ ବଧୂଜନଃ ॥ ୧୨ ॥

ଅନ୍ୱୟ - ଜନନୀ ତାଂ (ପାର୍ବତୀମ୍), ନୀଳକଣ୍ଠପରିମୁକ୍ତଯୌବନାଂ ବିଲୋକ୍ୟ ସମାଶ୍ୱସତ୍, ହି ବଧୂଜନଃ ମାତୁଃ ମାନସୀମ୍ ଶୁଚମ୍ ଭର୍ତୃବଲ୍ଲଭତୟା ଅସ୍ୟତି।

ପଦ୍ୟାନୁବାଦ -

ଶିବଉପଭୁକ୍ତା ଯୌବନ ସମ୍ପନ୍ନା
ପାର୍ବତୀଙ୍କୁ ଦେଖି ମାତ
ନବବଧୂ ରୂପେ ପତି ପ୍ରେମ ପାଇ
ଥିବାରୁ ହେଲେ ଆଶ୍ୱସ୍ତ।
ନବବଧୂ ହେବା ପରେ ଯଦି କନ୍ୟା
ପତି ପ୍ରେମ ପାଇଥାଏ
ମାତା ହୃଦୟରେ ଥିବା ସବୁ ଦୁଃଖ
ଆପେ ଦୂର ହୋଇଯାଏ ॥ ୧୨ ॥

### ଶ୍ଳୋକ -୧୩

ବାସରାଣି କତିଚିତ୍କଥଞ୍ଚନ
ସ୍ଥାଣୁନା ରତମକାରି ଚାନୟା ।
ଜ୍ଞାତମନ୍ମଥରସା ଶନୈଃ ଶନୈଃ
ସା ମୁମୋଚ ରତିଦୁଃଖଶୀଳତାମ୍ ॥ ୧୩ ॥

ଅନ୍ୱୟ - କତିଚିତ୍ ବାସରାଣି ସ୍ଥାଣୁନା ଅନୟା କଥଞ୍ଚନ ରତମ୍ ଅକାରି ଚ ସା ଶନୈଃ ଶନୈଃ ଜ୍ଞାତମନ୍ମଥରସା ରତିଦୁଃଖଶୀଳତାମ୍ ମୁମୋଚ ।

ପଦ୍ୟାନୁବାଦ -

ସମ୍ଭୋଗେ ଅଜ୍ଞାନ ଉମାଙ୍କୁ ଶଙ୍କର
ଯାହି ତାହି କିଛିଦିନ
କରିଲେ ସମ୍ଭୋଗ ଧୀରେ ଧୀରେ ଉମା
କଲେ ଖୁସି ଅନୁଭବ ।
ରତି-ରସ ସୁଖ ମିଳିବାରୁ ଉମା
ନହୋଇ ଆଉ ଅଧୀର
ରତି ସୁଖ ପାଇଁ ସମ୍ଭୋଗ ନିମିତ୍ତ
ହୋଇଲେ ସେ ଆଗଭର ॥ ୧୩ ॥

### ଶ୍ଳୋକ- ୧୪

ସସ୍ୱଜେ ପ୍ରିୟମୁରୋନିପୀଡନଂ
ପ୍ରାର୍ଥିତଂ ମୁଖମନେନ ନାହରତ୍ ।
ମେଖଳାପ୍ରଣୟଲୋଲତାଂ ଗତଂ
ହସ୍ତମସ୍ୟ ଶିଥିଳଂ ରୁରୋଚ ସା ॥ ୧୪ ॥

ଅନ୍ୱୟ - (ସା ପାର୍ବତୀ) ଉରୋନିପୀଡନଂ (ଯଥା ସ୍ୟାତ୍ତଥା) ପ୍ରିୟମ୍ ସସ୍ୱଜେ ଅନେନ ପ୍ରାର୍ଥିତମ୍ ମୁଖମ୍ ନ ଅହରତ୍ ଗତମ୍ ଅସ୍ୟ ହସ୍ତମ୍ ରୁରୋଧ ।

ପଦ୍ୟାନୁବାଦ -

ଯଦି ଏବେ ଶିବ ଦେବାକୁ ଆଶ୍ଲେଷ
ଚାହୁଁଛନ୍ତି ପାର୍ବତୀଙ୍କୁ
ନକରି ବାରଣ ଗାଢ ଆଲିଙ୍ଗନ
ଦେଉଅଛନ୍ତି ସେ ତାଙ୍କୁ।
ଯଦି ଏବେ ଶିବ ଚାହୁଁଛନ୍ତି ତାଙ୍କ
ମୁଖେ ଦେବାକୁ ଚୁମ୍ବନ
ନହଟାଇ ମୁଖ ଚୁମ୍ବନର ସୁଖ
କରୁଛନ୍ତି ସେ ଗ୍ରହଣ।
ମେଖଳା ଉନ୍ମୁକ୍ତ କରିବାକୁ ହସ୍ତ
ପ୍ରସାରନ୍ତେ ତ୍ରିଲୋଚନ
ଇଚ୍ଛା ଥାଇ ମିଛେ ବାହାନାରେ ଖାଲି
କରୁଛନ୍ତି ସେ ବାରଣ ॥ ୧୪ ॥

### ଶ୍ଲୋକ- ୧୫

ଭାବସୁଚିତମଦୃଷ୍ଟବିପ୍ରିୟଂ
ଚଟୁମତ୍‌କ୍ଷଣବିୟୋଗକାତରମ୍।
କୈଶ୍ଚିଦେବ ଦିବସୈସ୍ତଥା
ତୟୋଃ ପ୍ରେମ ଗୂଢମିତରୋଶ୍ରୟମ୍ ॥ ୧୫ ॥

ଅନ୍ୱୟ - ଭାବସୁଚିତମ୍ ଅଦୃଷ୍ଟବିପ୍ରିୟଂ ତଥା ଚଟୁମତ୍‌କ୍ଷଣବିୟୋଗକାତରମ୍ ଗୂଢମ୍ ତୟୋଃ ପ୍ରେମ କୈଶ୍ଚିତ୍ ଏବ ଦିବସୈଃ ଇତରୋଶ୍ରୟମ୍ (ଅଭୂତ୍)।

ପଦ୍ୟାନୁବାଦ -

କିଛିଦିନ ମଧ୍ୟେ ଜଣାପଡିଗଲା
ଦୁହିଁଙ୍କ ଚଳିଚଳନ
ଦୁହିଁଙ୍କ ମଧ୍ୟରେ ଭଲ ଭାବେ ହେଲା
ନିବିଡ ପ୍ରେମ ବନ୍ଧନ।

ଏକ ଆରେକକୁ କ୍ଷଣେ ନଦେଖିଲେ
ହେଉଛନ୍ତି ଆନମନା
ପରସ୍ପର ଗୁଣ କରନ୍ତି ବର୍ଣ୍ଣନା
ବିୟୋଗେ ଅଧୀରମନା ॥ ୧୫ ॥

## ଶ୍ଳୋକ -୧୬

ତଂ ଯଥାତ୍ମସଦୃଶଂ ବରଂ ବଧୂଃ
ଅନ୍ୱରଜ୍ୟତ ବରସ୍ତଥୈବ ତାମ୍ ।
ସାଗରାଦନପଗା ହି ଜାହ୍ନବୀ
ସୋଽପି ତନ୍ମୁଖରସୈକବୃତ୍ତିଭାକ୍ ॥ ୧୬ ॥

ଅନ୍ୱୟ - ବଧୂଃ ଆତ୍ମସଦୃଶଂ ତଂ ବରମ୍ ଅନୁ ଯଥା ଅରଜ୍ୟତ୍ ବରଃ ତାମ୍ (ଅନୁ) ତଥୈବ (ଅରଜ୍ୟତ) ହି (ଯଥା) ଜାହ୍ନବୀ ସାଗରାତ୍ ଅନପଗା(ଅସ୍ତି) ସଃ ଅପି ତନ୍ମୁଖରସୈକବୃତ୍ତିଭାକ୍ (ଅସ୍ତି) ।

ପଦ୍ୟାନୁବାଦ -

ନିଜର ଅଭୀଷ୍ଟ ବର ପାଇ ଉମା
ପ୍ରିୟ ଅନୁରାଗେ ତୁଷ୍ଟ
ପାର୍ବତୀଙ୍କୁ ନିଜ ଜୀବନ ସମାନ
ଭାବୁଛନ୍ତି ଭୋଳାନାଥ ।
ଯେପରି ଜାହ୍ନବୀ ସମୁଦ୍ରରେ ମିଶି
ଫେରିବାକୁ ଚହେଁନାହିଁ
ସେପରି ସମୁଦ୍ର ଛାଡେ ନାହିଁ ତାକୁ
ତା ମୁହାଣ ପାଣି ପିଇ ॥ ୧୬ ॥

## ଶ୍ଳୋକ- ୧୭

ଶିଷ୍ୟତାଂ ନିଧୁବନୋପଦେଶିନଃ
ଶଙ୍କରସ୍ୟ ରହସି ପ୍ରପନ୍ନୟା ।
ଶିକ୍ଷିତଂ ଯୁବତୀନୈପୁଣଂ ତୟା
ତଉଦେବ ଗୁରୁଦକ୍ଷିଣୀକୃତମ୍ ॥ ୧୭ ॥

ଅନ୍ୱୟ - ନିଧୁବନୋପଦେଶିନଃ ଶଙ୍କରସ୍ୟ ଶିଷ୍ୟତାଂ ପ୍ରପନ୍ନୟା ତୟା ରହସି ଯତ୍, ଯୁବତୀନୈପୁଣଂ ଶିକ୍ଷିତଂ ତତ୍ ଅବ ଗୁରୁଦକ୍ଷିଣୀକୃତମ୍।

ପଦ୍ୟାନୁବାଦ -

ଏକାନ୍ତରେ ରତି ଶିକ୍ଷା ଦେଉଥିବା
ଶିବଙ୍କଠାରୁ ଗଉରୀ
ଯୁବତୀଙ୍କ ଯୋଗ୍ୟ ହାବଭାବ କଥା
ଶିଖିଥିଲେ ଗୁରୁ କରି।
ସମ୍ଭୋଗ କାଳରେ ସେ ସବୁ ଶିକ୍ଷାକୁ
ଠିକ୍ ଉପଯୋଗ କରି
ଗୁରୁଙ୍କ ଦକ୍ଷିଣା ରୂପେ ଫେରାଇଲେ
ରତିଗୁରୁଙ୍କୁ ଏପରି ॥ ୧୭ ॥

### ଶ୍ଳୋକ- ୧୮

ଦଷ୍ଟମୁକ୍ତମଧରୋଷ୍ଠମମ୍ବିକା
ବେଦନାବିଧୂତହସ୍ତପଲ୍ଲବା।
ଶୀତଳେନ ନିରବାପୟତ୍କ୍ଷଣଂ
ମୌଳିଚନ୍ଦ୍ରଶକଳେନ ଶୂଳିନଃ ॥ ୧୮ ॥

ଅନ୍ୱୟ - ଅମ୍ବିକା ଦଷ୍ଟମୁକ୍ତମ୍ ଅଧରୋଷ୍ଠମ୍ ବେଦନାବିଧୂତହସ୍ତପଲ୍ଲବା ଶୀତଳେନ ଶୂଳିନଃ ମୌଳିଚନ୍ଦ୍ରଶକଳେନ କ୍ଷଣମ୍ ନିରବାପୟତ୍।

ପଦ୍ୟାନୁବାଦ -

ଯଦି ତ୍ରିଲୋଚନ ଦିଅନ୍ତି ଚୁମ୍ବନ
ଦନ୍ତେ ହୋଇ ଓଷ୍ଠ କ୍ଷତ
ବେଦନାରେ ହସ୍ତ- ପଲ୍ଲବ କମ୍ପିତ
ଏମନ୍ତ ଉମା ତୁରନ୍ତ।

ଓଷ୍ଠକୁ ନିଜର ରଖି ଶିବଙ୍କର
ଶିରସ୍ଥିତ ଚନ୍ଦ୍ରପର
ଶୀତଳତା ପାଇ କ୍ଷଣଭରେ ଓଷ୍ଠ
ପୀଡା କରୁଥିଲେ ଦୂର ॥ ୧୮ ॥

## ଶ୍ଲୋକ- ୧୯

ଚୁମ୍ବନାଦଳକଚୂର୍ଣ୍ଣଦୂଷିତଂ
ଶଙ୍କରୋପି ନୟନଂ ଲଲାଟଜମ୍।
ଉଚ୍ଛ୍ୱସତ୍କମଳଗନ୍ଧୟେ ଦଦୌ
ପାର୍ବତୀବଦନଗନ୍ଧବାହିନେ ॥ ୧୯ ॥

ଅନ୍ୱୟ - ଚୁମ୍ବନାତ୍ ଅଳକଚୂର୍ଣ୍ଣଦୂଷିତଂ ଲଲାଟଜମ୍ ନୟନଂ ଉଚ୍ଛ୍ୱସତ୍ କମଳଗନ୍ଧୟେ ପାର୍ବତୀବଦନଗନ୍ଧବାହିନେ ଦଦୌ।

ପଦ୍ୟାନୁବାଦ -

ଶିବଙ୍କ ଚୁମ୍ବନ ଦେବା ସମୟରେ
ଉମାଙ୍କ କେଶରୁ ଚୂର୍ଣ୍ଣ
ଝଡିଣ ଦୂଷିତ କରୁଥିଲା ଶିବ-
ଙ୍କର ତୃତୀୟ ନୟନ।
ତୃତୀୟ ନୟନ ଶୀତଳତା ପାଇଁ
ଶିବ ନେଇ ନିଜ ମୁଖ
ଲଗେଇକି ରଖୁ- ଥିଲେ ପାର୍ବତୀଙ୍କ
ପଦ୍ମଗନ୍ଧ ଯୁକ୍ତ ମୁଖ ॥ ୧୯ ॥

## ଶ୍ଲୋକ- ୨୦

ଏବମିନ୍ଦ୍ରିୟସୁଖସ୍ୟ ବର୍ତ୍ମନଃ
ସେବନାଦନୁଗୃହୀତମନ୍ମଥଃ।
ଶୈଳରାଜଭବନେ ସହୋମୟା
ମାସମାତ୍ରମବସତ୍ ବୃଷଧ୍ୱଜଃ ॥ ୨୦ ॥

ଅନ୍ୱୟ - ଏବମ୍ ଇନ୍ଦ୍ରିୟସୁଖସ୍ୟ ବର୍ତ୍ମନଃ ସେବନାତ୍ ଅନୁଗୃହୀତମନ୍ମଥଃ ବୃଷଧ୍ୱଜଃ ଶୈଳରାଜଭବନେ ଉମୟା ସହ ମାସମାତ୍ରମ୍ ଅବସତ୍।

ପଦ୍ୟାନୁବାଦ -

ଏ ପ୍ରକାରେ ଶିବ ସମ୍ଭୋଗର ସର୍ବ
ଉପାୟ କରି ପ୍ରୟୋଗ
ପାର୍ବତୀଙ୍କ ସହ ଇନ୍ଦ୍ରିୟ ସୁଖକୁ
କରିଲେ ସେ ଉପଭୋଗ।
ଏ ପ୍ରକାର ରତି ଦେଖି ରତିପତି
ହୋଇଲେ ଅତି ହରଷ
ଗିରିରାଜଙ୍କର ଗୃହରେ ଶଙ୍କର
ରହିଗଲେ ଏକମାସ ॥ ୨୦ ॥

**ଶ୍ଳୋକ- ୨୧**

ସୋଽନୁମାନ୍ୟ ହିମବନ୍ତମାତ୍ମଭୂଃ
ଆତ୍ମଜାବିରହଦୁଃଖପୀଡିତମ୍।
ତତ୍ର ତତ୍ର ବିଜହାର ସମ୍ପତନ୍
ଅପ୍ରମେୟଗତିନା କକୁଦ୍ମତା ॥ ୨୧ ॥

ଅନ୍ୱୟ - ସଃ ଆତ୍ମଭୂଃ ଆତ୍ମଜାବିରହଦୁଃଖପୀଡିତମ୍ ହିମବନ୍ତମ୍ ଅନୁମାନ୍ୟ ଅପ୍ରମେୟଗତିନା କକୁଦ୍ମତା ତତ୍ର ତତ୍ର ସମ୍ପତନ୍ ବିଜହାର।

ପଦ୍ୟାନୁବାଦ -

ଏହାପରେ ଶମ୍ଭୁ ବିଦାୟ ନେବାକୁ
ଇଚ୍ଛା କଲେ ତାଙ୍କ ବ୍ୟକ୍ତ
କନ୍ୟାର ବିରହେ ପୀଡିତ ହିମାଦ୍ରୀ
ହୋଇଲେ ମଧ୍ୟ ସମ୍ମତ।

ଯେ କୌଣସି ସ୍ଥାନ ଯାଇପାରୁଥିବା
ନନ୍ଦୀ କରି ଆରୋହଣ
ଶିବ ଓ ପାର୍ବତୀ ଯେଣେ ତାଙ୍କ ଇଚ୍ଛା
କଲେ ତେଣେ ବିଚରଣ ॥ ୨୧ ॥

### ଶ୍ଲୋକ- ୨୨

ମେରୁମେତ୍ୟ ମରୁଦାଶୁବାହନଃ
ପାର୍ବତୀସ୍ତନପୁରସ୍କୃତଃ କୃତୀ ।
ହେମପଲ୍ଲବବିଭଙ୍ଗସଂସ୍ତରାମ୍
ଅନ୍ୱଭୂତ୍ସୁରତତତ୍ପରଃ କ୍ଷପାମ୍ ॥ ୨୨ ॥

ଅନ୍ୱୟ - ମରୁଦାଶୁବାହନଃ କୃତୀ ମେରୁମ୍ ଏତ୍ୟ ପାର୍ବତୀସ୍ତନପୁରସ୍କୃତଃ ସୁରତତତ୍ପରଃ ହେମପଲ୍ଲବବିଭଙ୍ଗସଂସ୍ତରାମ୍ କ୍ଷପାମ୍ ଅନ୍ୱଭୂତ୍ ।

ପଦ୍ୟାନୁବାଦ -

ପବନ ସମାନ ବେଗରେ ଗମନ
କରୁଥିବା ନନ୍ଦୀ ଚଢି
ଉମାଙ୍କ ସହିତ ଶଙ୍କର ଆକାଶ-
ମାର୍ଗେ ଗଲେ ଉଡି ଉଡି ।
ନିଜର ଅଗ୍ରତେ ବସାଇ ଉମାଙ୍କୁ
ରଖି ବକ୍ଷୋଜରେ ହସ୍ତ
ବକ୍ଷୋଜ ମର୍ଦନ ସୁଖ ନେଇ ପହ-
ଞ୍ଚିଲେ ମେରୁ ପରବତ ।
ସୁନେଲି କୋମଳ ପଲ୍ଲବେ ନିର୍ମିତ
ଶଯ୍ୟାପରେ ଭୋଳାନାଥ
ଉମାଙ୍କ ସହିତ ସମ୍ଭୋଗରେ ରତ
ରହି ବିତାଇଲେ ରାତ୍ର ॥ ୨୨ ॥

### ଶ୍ଳୋକ- ୨୩

ପଦ୍ମନାଭବଳୟାଙ୍କିତାଶ୍ମସୁ
ପ୍ରାପ୍ତବସ୍ବମୃତବିପ୍ରୁଷୋ ନବାଃ ।
ମନ୍ଦରସ୍ୟ କଟକେଷୁ ଚାବସତ୍
ପାର୍ବତୀବଦନପଦ୍‌ଷଟପଦଃ ॥ ୨୩ ॥

ଅନ୍ୱୟ - (ହରଃ) ପଦ୍ମନାଭବଳୟାଙ୍କିତାଶ୍ମସୁ ନବାଃ ଅମୃତବପ୍ରୁଷଃ ପ୍ରାପ୍ତବସ୍ତୁ ମନ୍ଦରସ୍ୟ କଟକେଷୁ ଚ ପାର୍ବତୀବଦନପଦ୍‌ଷଟପଦଃ (ସନ୍) ଅବସତ୍ ।

ପଦ୍ୟାନୁବାଦ -

ଉମା ମୁଖପଦ୍ମ- ମଧୁ ଅଳି ସମ
ଆସ୍ୱାଦୁଥିବା ଶଙ୍କର
ସେ ସ୍ଥାନରୁ ଚଳି ମନ୍ଦରାଚଳର
ଚଟାଣେ କଲେ ଶିବିର ।
ସେ ଚଟାଣ ପୃଷ୍ଠେ ଅଙ୍କା ଯାଇଥିଲା
ବିଷ୍ଣୁଙ୍କ ବଳୟ ଚିହ୍ନ
ସମୁଦ୍ର ମନ୍ଥନେ ଉଡିଆସି ପଡିଥିଲା
ଅମୃତର କଣ ॥ ୨୩ ॥

### ଶ୍ଳୋକ- ୨୪

ରାବଣଧ୍ୱନିତଭୀତୟା ତୟା
କଣ୍ଠସକ୍ତମୃଦୁବାହୁବନ୍ଧନଃ ।
ଏକପିଙ୍ଗଳଗିରୌ ଜଗଦ୍‌ଗୁରୁଃ
ନିର୍ବିଶେଷ ବିଶଦା ଶଶିପ୍ରଭାଃ ॥ ୨୪ ॥

ଅନ୍ୱୟ - ଜଗଦ୍‌ଗୁରୁଃ ଏକପିଙ୍ଗଳଗିରୌ ରାବଣଧ୍ୱନିତଭୀତୟା ତୟା ପାର୍ବତ୍ୟା କଣ୍ଠସକ୍ତମୃଦୁବାହୁବନ୍ଧନଃ (ସନ୍) ବିଶଦା ଶଶିପ୍ରଭାଃ ନିର୍ବିଶେଷ ।

ପଦ୍ୟାନୁବାଦ -

ସେଠାରୁ ବାହାରି ଶଙ୍କର ଗଉରୀ
ଗଲେ କୈଳାଶ ପର୍ବତ
ସେ କୈଳାଶପୁର ଅଟେ କୁବେରଙ୍କ
ରାଜ୍ୟ ରାଜଧାନୀ କ୍ଷେତ୍ର ।
ସେଇ କଇଳାଶ ଉତ୍ପାଟନ କାଳେ
ଶୁଣି ରାବଣ ଗର୍ଜନ
ଭୟରେ ପାର୍ବତୀ ଶିବଙ୍କ ଗଳାକୁ
କରିଥିଲେ ଆଲିଙ୍ଗନ
ସେଠାରେ ଗୋଟିଏ ରାତ୍ରି ରହିକରି
ଶିବଙ୍କ ସହ ପାର୍ବତୀ
ଉପଭୋଗ କରିଥିଲେ ସେ ସ୍ଥାନରେ
ନିର୍ମଳ ଚନ୍ଦ୍ରିନୀ ରାତି ॥ ୨୪ ॥

## ଶ୍ଲୋକ- ୨୫

ତସ୍ୟ ଜାତୁ ମଳୟସ୍ଥଳୀରତେ
ଧୂତଚନ୍ଦନଲତଃ ପ୍ରିୟାକ୍ଲମମ୍ ।
ଆଚଚାମ ସଲବଙ୍ଗକେସରଃ
ଚଟୁକାର ଇବ ଦକ୍ଷିଣାନିଳଃ ॥ ୨୫ ॥

ଅନ୍ୱୟ - ଜାତୁ ତସ୍ୟ ମଳୟସ୍ଥଳୀରତେ (ସତୀ) ଧୂତଚନ୍ଦନଲତଃ ସଲବଙ୍ଗକେସରଃ ଦକ୍ଷିଣାନିଳଃ ଚଟୁକାରଃ ଇବ ପ୍ରିୟାକ୍ଲମମ୍ ଆଚଚାମ ।

ପଦ୍ୟାନୁବାଦ -

ଏହାପରେ ଏଣେ ତେଣେ ମନଇଚ୍ଛା
ଭ୍ରମଣ କରିବା ପରେ
ଶିବ ଓ ପାର୍ବତୀ ପହଞ୍ଚିଲେ ଆସି
ମଳୟାଚଳ ଉପରେ ।

ଦକ୍ଷିଣ ଦିଗରୁ ବହୁଥିବା ଧୂଳି
ପୂର୍ଣ୍ଣ ମଳୟ ପବନ
ଚନ୍ଦନ ଲତା ଓ ଲବଙ୍ଗ ଫୁଲକୁ
କରୁଥିଲା କମ୍ପମାନ ।
ସେ ମଳୟ ସ୍ପର୍ଶ କରୁଥିଲା ଦୂର
ଉମାଙ୍କ ସମ୍ଭୋଗ କ୍ଳାନ୍ତି
ସତେ ଅବା କେହି ମିଠା କଥା କହି
ଦେଉଛନ୍ତି ତାଙ୍କୁ ଶାନ୍ତି ॥ ୨୫ ॥

### ଶ୍ଳୋକ -୨୬

ହେମତାମରସତାଡିତପ୍ରିୟା
ତତ୍କରାମ୍ବୁବିନିମୀଲିତେକ୍ଷଣା ।
ଖେ ବ୍ୟଗାହତ ତରଙ୍ଗିଣୀମୁମା
ମୀନପଂକ୍ତିପୁନରୁକ୍ତମେଖଳା ॥ ୨୬ ॥

ଅନ୍ୱୟ - ଉମା ହେମତାମରସତାଡିତପ୍ରିୟା ତତ୍କରାମ୍ବୁବିନିମୀଲିତେକ୍ଷଣା (ତଥା) ମୀନପଂକ୍ତିପୁନରୁକ୍ତମେଖଳା ଖେ ତରଙ୍ଗିଣୀମ୍ ବ୍ୟଗାହତ ।

ପଦ୍ୟାନୁବାଦ -

ପାର୍ବତୀ ସେଠାରେ ଆକାଶ ଗଙ୍ଗାରେ
ଜଳକ୍ରୀଡା ସମୟରେ
କନକ କମଳ ତୋଳି ଫିଙ୍ଗୁଥିଲେ
ମଜାରେ ଶିବଙ୍କପରେ ।
ଶିବ ବି ନିଜର ହସ୍ତ ପ୍ରହାରରେ
ଉଛୁଳେଇ ବହୁ ଜଳ
ପାର୍ବତୀଙ୍କ ଆଖି ବନ୍ଦ କରି ଦେଉ-
ଥିଲେ ସେକାଳେ ତତ୍କାଳ

ସେକାଳେ ଉମାଙ୍କ                କଟି ଚତୁଃପାର୍ଶ୍ୱେ
ଘେରିଥିବା ମତ୍ସ୍ୟପଂକ୍ତି
ପ୍ରତେ ହେଉଥିଲା                ସତେକି ଦ୍ୱିତୀୟ
ମେଖଳା ସେ ପିନ୍ଧିଛନ୍ତି ॥ ୨୬ ॥

### ଶ୍ଳୋକ -୨୭

ତାଂ ପୁଲୋମତନୟାଳକୋଚିତୈଃ
ପାରିଜାତକୁସୁମୈଃ ପ୍ରସାଧନମ୍ ।
ନନ୍ଦନେ ଚିରମୟୁଗ୍ମଲୋଚନଃ
ସସ୍ପୃହଂ ସୁରବଧୂଭିରୀକ୍ଷିତଃ ॥ ୨୭ ॥

ଅନ୍ୱୟ - ଅଯୁଗ୍ମଲୋଚନଃ ନନ୍ଦନେ ପୁଲୋମତନୟାଳକୋଚିତୈଃପାରିଜାତକୁସୁମୈଃ ତାମ୍ (ପାର୍ବତୀମ୍) ପ୍ରସାଧନମ୍ ସୁରବଧୂଭିଃ ସସ୍ପୃହମ୍ ଈକ୍ଷିତଃ ଚିରମ୍ (ଅବସତ୍) ।

ପଦ୍ୟାନୁବାଦ -

ଏହାପରେ ଶିବ                ପାର୍ବତୀଙ୍କ ସହ
ପହଞ୍ଚି ନନ୍ଦନ ବନେ
ଦେଖିଲେ ସୁନ୍ଦର                ପାରିଜାତ ପୁଷ୍ପ
ଫୁଟିଅଛି ସେହି ବନେ ।
ଯେଉଁ ପାରିଜାତ                ପୁଷ୍ପେ ଇନ୍ଦ୍ରାଣୀଙ୍କ
କେଶ ହୁଅଇ ସଜ୍ଜିତ
ସେ ପୁଷ୍ପରେ ଉମା                କେଶ ସଜାଇଲେ
ଅନେକ ଦିନ ପର୍ଯ୍ୟନ୍ତ ।
ଉମାଙ୍କର ଏହି                ପ୍ରସାଧନ କଳା
ସ୍ୱର୍ଗ ସୁରବଧୂ ଗଣ
ଅତି ଉତ୍ସାହରେ                ଦେଖୁଥିଲେ ତହିଁ
ହୋଇ ଆନନ୍ଦିତ ମନ ॥ ୨୭ ॥

### ଶ୍ଳୋକ- ୨୮

ଇତ୍ୟଭୌମମନୁଭୂୟ ଶଙ୍କରଃ
ପାର୍ଥିବଂ ଚ ବନିତାସଖଃ ସୁଖମ୍ ।
ଲୋହିତାୟତି କଦାଚିଦାତପେ
ଗନ୍ଧମାଦନବନଂ ବ୍ୟଗାହତ ।। ୨୮ ।।

ଅନ୍ୱୟ - ଶଙ୍କରଃ ଇତି ଅଭୌମମ୍ ପାର୍ଥିବମ୍ ଚ ସୁଖମ୍ ବନିତାସଖଃ (ସନ୍) ଅନୁଭୂୟ ଆତପେ ଲୋହିତାୟତି (ସତି) କଦାଚିତ୍ ଗନ୍ଧମାଦନବନଂ ବ୍ୟଗାହତ ।

ପଦ୍ୟାନୁବାଦ -

ସାଂସାରିକ ତଥା ସ୍ୱର୍ଗୀୟ ସୁଖକୁ
ଭୋଗୁଥିବା ଉମାକାନ୍ତ
ପ୍ରିୟା ସହ ଯିବା ପାଇଁ ବାହାରିଲେ
ଗନ୍ଧମାଦନ ପର୍ବତ ।
ସେ ସମୟେ ଧରା ପୃଷ୍ଠରେ ଆଗତ-
ପ୍ରାୟ ଥିଲା ସନ୍ଧ୍ୟାକାଳ
ସୂର୍ଯ୍ୟଙ୍କ କିରଣ ଧୀରେ ହୋଇ କ୍ଷୀଣ
ଦିଶୁଥିଲା ଲାଲ ଲାଲ ।। ୨୮ ।।

### ଶ୍ଳୋକ- ୨୯

ତତ୍ର କାଞ୍ଚନଶିଳାତଳାଶ୍ରୟୋ
ନେତ୍ରଗମ୍ୟମବଲୋକ୍ୟ ଭାସ୍କରମ୍ ।
ଦକ୍ଷିଣେତରଭୁଜବ୍ୟପାଶ୍ରୟା
ବ୍ୟାଜହାର ସହଧର୍ମଚାରିଣୀମ୍ ।। ୨୯ ।।

ଅନ୍ୱୟ - ତତ୍ର (ସ ହରଃ) ଭାସ୍କରମ୍ ନେତ୍ରଗମ୍ୟମ୍ ଅବଲୋକ୍ୟ କାଞ୍ଚନଶିଳାତଳାଶ୍ରୟଃ ଦକ୍ଷିଣେତରଭୁଜବ୍ୟପାଶ୍ରୟା ସହଧର୍ମଚାରିଣୀମ୍ ବ୍ୟାଜହାର ।

ପଦ୍ୟାନୁବାଦ -

ସେ ସ୍ଥାନରେ ଶିବ ବସିଗଲେ ଏକ
କନକ ଶିଳା ଉପରେ
ତାଙ୍କ ବାମଭୁଜ ଆଶ୍ରାକରି ଉମା
ବସିଲେ ବାମ ପାର୍ଶ୍ୱରେ ।
ସୂର୍ଯ୍ୟଙ୍କର କାନ୍ତି ସେ ସମୟେ ଅତି
ହୋଇଥିଲା ହୀନପ୍ରଭ
ସେ ଆଡକୁ ଦେଖି ପାର୍ବତୀଙ୍କୁ ଶିବ
କହିବା କଲେ ଆରମ୍ଭ ॥ ୨୯ ॥

## ଶ୍ଳୋକ- ୩୦

ପଦ୍ମକାନ୍ତିମରୁଣତ୍ରିଭାଗୟୋଃ
ସଂକ୍ରମଯ୍ୟ ତବ ନେତ୍ରୟୋରିବ ।
ସଂକ୍ଷୟେ ଯଗାଦିବ ପ୍ରଜେଶ୍ୱରଃ
ସଂହରତ୍ୟହରସାବହର୍ପତିଃ ॥ ୩୦ ॥

ଅନ୍ୱୟ - (ହେ ପ୍ରିୟ !) ଅସୌ ଅହର୍ପତିଃ ଅରୁଣତ୍ରିଭାଗୟୋଃ ତବ ନେତ୍ରୟୋଃ ଇବ ପଦ୍ମକାନ୍ତିମ୍ ସଂକ୍ରମଯ୍ୟ ସଂକ୍ଷୟେ ପ୍ରଜେଶ୍ୱରଃ ଯଗଦ୍ ଇବ ଅହଃ ସଂହରତି ।

ପଦ୍ୟାନୁବାଦ -

ତୁମ ନୟନର ଏକ ତୃତୀୟାଂଶ
ରଙ୍ଗ ଯା ଅରୁଣ ବର୍ଣ୍ଣ
ତା ସହ ସମାନ କମଳମାନଙ୍କ
ଶୋଭାକୁ କରି ମଳିନ
ସୂର୍ଯ୍ୟଦେବ ଧୀରେ ଦିନକୁ ସାଉଁଟି
ଅସ୍ତ ଯାଆନ୍ତି ସେପରି
ପୃଥିବୀକୁ ବ୍ରହ୍ମା ରକ୍ଷା କରିଥିଲେ
ପ୍ରଳୟକାଳେ ଯେପରି ॥ ୩୦ ॥

### ଶ୍ଲୋକ- ୩୧

ସୀକରବ୍ୟତିକରଂ ମରୀଚିଭିଃ
ଦୂରୟତ୍ୟବନତେ ବିବସ୍ୱତି।
ଇନ୍ଦ୍ରଚାପପରିବେଷଶୂନ୍ୟତାଂ
ନିର୍ଝରାସ୍ତବ ପିତୁର୍ବ୍ରଜନ୍ତ୍ୟମୀ ॥ ୩୧ ॥

ଅନ୍ୱୟ - ଅବନତେ ବିବସ୍ୱତି ମରୀଚିଭିଃ ସୀକରବ୍ୟତିକରଂ ଦୂରୟତି (ସତି) ଅମୀ ତବ ପିତୁଃ ନିର୍ଝରାଃ ଇନ୍ଦ୍ରଚାପପରିବେଷଶୂନ୍ୟତାଂ ବ୍ରଜନ୍ତି।

ପଦ୍ୟାନୁବାଦ -

ହିମାଦ୍ରୀରୁ ଝରୁ- ଥିବା ଝରଣାରୁ
ଉଦ୍ଗତ ସୀକରକଣ
ସୂର୍ଯ୍ୟରଶ୍ମି ସ୍ପର୍ଶେ ଆସି ହେଉଥିଲା
ଇନ୍ଦ୍ରଧନୁର ସୃଜନ।
ସୂର୍ଯ୍ୟାଂଶୁ ନିମ୍ନକୁ ଢଳନ୍ତେ ସୀକର-
କଣଠୁ ଗଲା ଦୂରେଇ
ପୂର୍ବସୃଷ୍ଟ ସେହି ଇନ୍ଦ୍ରଧନୁ ଶୋଭା
ଆଉ ଦୃଶ୍ୟ ହେଲାନାହିଁ ॥ ୩୧ ॥

### ଶ୍ଲୋକ- ୩୨

ଦଷ୍ଟତାମରକେସରସ୍ରଜୋଃ
କ୍ରନ୍ଦତୋର୍ବିପରିବୃତ୍ତକଣ୍ଠୟୋଃ।
ନିଘ୍ନୟୋଃ ସରସି ଚକ୍ରବାକୟୋଃ
ଅଳ୍ପମନ୍ତରମନଳ୍ପତାଂ ଗତମ୍ ॥ ୩୨ ॥

ଅନ୍ୱୟ - ଦଷ୍ଟତାମରକେସରସ୍ରଜୋଃ ବିପରିବୃତ୍ତକଣ୍ଠୟୋଃ ନିଘ୍ନୟୋଃ କ୍ରନ୍ଦତୋଃ (ତଥା) ସରସି (ସ୍ଥିତୟୋଃ) ଚକ୍ରବାକୟୋଃ ଅଳ୍ପମ୍ ଅନ୍ତରମ୍ ଅନଳ୍ପତାମ୍ ଗତମ୍।

ପଦ୍ୟାନୁବାଦ -

ସରସୀରେ ପଦ୍ମ ଖଣ୍ଡିତ କେସର
ଚଞ୍ଚୁ ମଧ୍ୟେ ରଖିଧରି
ପରସ୍ପର ପ୍ରେମ- ଅଧୀନ ଚକୋର
ଚକୋରୀ କ୍ରନ୍ଦନ କରି ।
ପରସ୍ପରେ ଦେଖି ଗ୍ରୀବାକୁ ଘୁରାଇ
ହେଉଥିଲେ ସେ ଅନ୍ତର
ଯଦିଓ ସରସୀ ଏପାଖ ସେପାଖ
ନଥିଲା ବହୁତ ଦୂର ।
ଅଳପ ଦୂରତା ଥାଇ ମଧ୍ୟ ତାଙ୍କ
ପାଇଁ ଥିଲା ବେଶୀ ଦୂର
ସେଥିପାଇଁ ଦୁହେଁ କାନ୍ଦୁଥିଲେ ଦେଖି
ମୁହଁ ପରସ୍ପରଙ୍କର ॥ ୩୨ ॥

## ଶ୍ଳୋକ- ୩୩

ସ୍ଥାନମାହ୍ନିକମପାସ୍ୟ ଦନ୍ତିନଃ
ସଲ୍ଲକୀବିଟପଭଙ୍ଗବାସିତମ୍ ।
ଆବିର୍ଭାତଚରଣାୟ ଗୃହ୍ଣତେ
ବାରି ବାରିରୁହବଦ୍ଧଷଟପଦମ୍ ॥ ୩୩ ॥

ଅନ୍ୱୟ - ଦନ୍ତିନଃ ସଲ୍ଲକୀବିଟପଭଙ୍ଗବାସିତମ୍ ଆହ୍ନିକମ୍ ସ୍ଥାନମ୍ ଅପାସ୍ୟ ଆବିର୍ଭାତଚରଣାୟ ବାରିରୁହବଦ୍ଧଷଟ୍ପଦମ୍ ବାରି ଗୃହ୍ଣତେ ।

ପଦ୍ୟାନୁବାଦ -

ଦିନ ସମୟର ନିବାସ ସ୍ଥାନକୁ
ଛାଡିଦେଇ ଗଜଯୂଥ
ଭାଙ୍ଗିଯାଇଥିବା ଶଲ୍ଲକୀ ବୃକ୍ଷର
ଗନ୍ଧେ ହୋଇ ସୁବାସିତ ।

ପର୍ଯ୍ୟାପ୍ତ ଭୋଜନ            କାରଣରୁ ପାନ
କରୁଥିଲେ ସର ଜଳ
ଯେଉଁ ସରୋବରେ            କମଳ ପୁଷ୍ପରେ
ବନ୍ଦୀଥିଲେ ଅଳିଦଳ ॥ ୩୩ ॥

### ଶ୍ଳୋକ- ୩୪

ପଶ୍ୟ ପଶ୍ଚିମଦିଗନ୍ତଲମ୍ବିନା
ନିର୍ମିତଂ ମିତକଥେ ବିବସ୍ୱତା ।
ଦୀର୍ଘୟା ପ୍ରତିମୟା ସରୋମ୍ଭସାଂ
ତାପନୀୟମିବ ସେତୁବନ୍ଧନମ୍ ॥ ୩୪ ॥

ଅନ୍ୱୟ - ହେ ମିତକଥେ ପଶ୍ଚିମଦିଗନ୍ତଲମ୍ବିନା ବିବସ୍ୱତା ଲମ୍ବୟା ପ୍ରତିମୟା ସରୋଽମ୍ଭସାଂ ତାପନୀୟମ୍ ସେତୁବନ୍ଧନମ୍ ଇବ ନିର୍ମିତମ୍ (ଇତି ତ୍ୱମ୍) ପଶ୍ୟ ।

ପଦ୍ୟାନୁବାଦ -

ଏଥୁ ଅନନ୍ତର            କହିଲେ ଶଙ୍କର
ଦେଖ ହେ ମିତଭାଷିଣୀ
ପଶ୍ଚିମ ଗଗନେ            ସୂର୍ଯ୍ୟଙ୍କର ଛାୟା
ଦିଶେ କି ମନୋହାରଣୀ ।
ମନୋହାରିଣୀ ସେ            ଦୀର୍ଘ ଛାୟା ଦ୍ୱାରା
ପୁଷ୍କରିଣୀର ଜଳରେ
ସତେକି ସୁବର୍ଣ୍ଣ            ସେତୁର ନିର୍ମାଣ
କରିଛନ୍ତି ଅକ୍ଲେଶରେ ॥ ୩୪ ॥

### ଶ୍ଳୋକ- ୩୫

ଉତ୍ତରନ୍ତି ବିନିକୀର୍ଯ୍ୟ ପଲ୍ୱଳଂ
ଗାଢପଙ୍କମତିବାହିତାତପାଃ ।
ଦଂଷ୍ଟ୍ରିଣୋ ବନବରାହଯୂଥପା
ଦଷ୍ଟଭଙ୍ଗୁରବିସାଙ୍କୁରା ଇବ ॥ ୩୫ ॥

ଅନ୍ୱୟ - ଗାଢପଙ୍କମ୍ ପଲ୍ୱଲମ୍ ବିନିକୀର୍ଯ୍ୟ ଅତିବାହିତାତପାଃ ଦଂଷ୍ଟ୍ରିଣଃ ବନବରାହୟୂଥପାଃ ଦଷ୍ଟ୍ରଭଙ୍ଗୁରବିସାଙ୍କୁରାଃ ଇବ ଉତ୍ତରନ୍ତି ।

ପଦ୍ୟାନୁବାଦ -

ଦେଖ ହେ ପାର୍ବତୀ  ଦୀର୍ଘ ଦନ୍ତଧାରୀ
ବଣ ବରାହ କିପରି
ଗରମକୁ ଡରି  ଗାଢ ପଙ୍କେ ଲୋଟି
ଆସୁଛି ଏବେ ବାହାରି ।
ଲମ୍ବ ଲମ୍ବ ତାର  ଦନ୍ତ ଦୁଇ ପ୍ରତେ
ହେଉଅଛି ଏହିପରି
ସତେକି ଚୋବଉ  ଥିବା ପଦ୍ମନାଡ
ପଦାକୁ ଅଛି ବାହାରି ॥ ୩୫ ॥

### ଶ୍ଳୋକ- ୩୬

ଏଷ ବୃକ୍ଷଶିଖରେ କୃତାସ୍ପଦୋ
ଜାତରୂପରସଗୌରମଣ୍ଡଳଃ ।
ହୀୟମାନମହରତ୍ୟୟାତପଂ
ପୀବରୋରୁ ପିବତୀବ ବର୍ହିଣଃ ॥ ୩୬ ॥

ଅନ୍ୱୟ - ହେ ପୀବରୋରୁ! ବୃକ୍ଷଶିଖରେ କୃତାସ୍ପଦଃ ଏଷଃ ବର୍ହିଣଃ ଜାତରୂପରସ-ଗୌରମଣ୍ଡଳଃ ଅହରତ୍ୟୟାତପଂ ପିବତି ଇବ (ଯତଃ) ହୀୟମାନମ୍ ।

ପଦ୍ୟାନୁବାଦ -

ଦେଖ ହେ ଗଉରୀ  ବସିଛି କିପରି
ବୃକ୍ଷାଗ୍ରେ ଏକ ମୟୂର
ସତେକି ସୁବର୍ଣ୍ଣ  ପାଣିରେ ନିର୍ମିତ
ଚନ୍ଦ୍ରିକା ପୁଚ୍ଛରେ ତା'ର ।

ପ୍ରତେହୁଏ ସେହି ସୁବର୍ଣ୍ଣ ଚନ୍ଦ୍ରିକା
ପିଉଛି ଦିନାନ୍ତ ତାପ
ସେଥିପାଇଁ ତାପ ଧୀରେ ଧୀରେ କମି
ହୋଇ ଯାଉଅଛି ଅଳ୍ପ ॥ ୩୬ ॥

**ଶ୍ଳୋକ- ୩୭**

ପୂର୍ବଭାଗତିମିରପ୍ରବୃତ୍ତିଭିଃ
ବ୍ୟକ୍ତପଙ୍କମିବ ଜାତମେକତଃ।
ଖଂ ହୃତାତପଜଳଂ ବିବସ୍ୱତା
ଭାତି କିଞ୍ଚିଦିବ ଶେଷବତ୍ସରଃ ॥ ୩୭ ॥

ଅନ୍ୱୟ - ବିବସ୍ୱତା ହୃତାତପଜଳଂ ଖମ୍ ପୂର୍ବଭାଗତିମିରପ୍ରବୃତ୍ତିଭିଃ ଏକତଃ ବ୍ୟକ୍ତପଙ୍କମ୍ ଇବ ଜାତମ୍ (ସତ୍) କିଞ୍ଚିତ୍ ଶେଷବତ୍ସରଃ ଇବ ଭାତି।

ପଦ୍ୟାନୁବାଦ -

ହେ ପାର୍ବତୀ ଦେଖ କରି ପୂର୍ବମୁଖ
ଅନ୍ଧାର ଯାଉଛି ବଢ଼ି
ନଭ ସରସୀରୁ ରଶ୍ମି ରୂପୀ ଜଳ
ନେଇଛନ୍ତି ସୂର୍ଯ୍ୟ କାଢ଼ି।
ତେଣୁ ସରସୀରେ ରହିଛି କେବଳ
ଅନ୍ଧାର ରୂପୀ କାଦୁଅ
ସେଥିପାଇଁ ନଭ ପୂର୍ବଭାଗ ଦିଶୁ-
ଅଛି ଅନ୍ଧକାରମୟ।
ପଶ୍ଚିମଭାଗଟି ଏବେ ବି ଦିଶଇ
କେତେକାଂଶରେ ଉଜ୍ଜ୍ୱଳ
ବୋଧେ ନଭ-ସର ସେ ଭାଗରେ କିଛି
ଅଛି ରଶ୍ମି ରୂପୀ ଜଳ ॥ ୩୭ ॥

## ଶ୍ଲୋକ- ୩୮

ଆବିଶଭିରୁଟଜାଙ୍ଗଣଂ ମୃଗୈଃ
ମୂଳସେକସରସୈଶ୍ଚ ବୃକ୍ଷକୈଃ ।
ଆଶ୍ରମାଃ ପ୍ରବିଶଦଗ୍ନିଧେନବୋ
ବିଭ୍ରତି ଶ୍ରିୟମୁଦୀରିତାଗ୍ନୟଃ ॥ ୩୮ ॥

ଅନ୍ୱୟ - ଉଟଜାଙ୍ଗଣଂ ଆବିଶଭିଃ ମୃଗୈଃ ମୂଳସେକସରସୈଃ ବୃକ୍ଷକୈଃ ପ୍ରବିଶଦଗ୍ନିଧେନବଃ ଉଦୀରିତାଗ୍ନୟଃ ଆଶ୍ରମାଃ ଶ୍ରିୟମ୍ ବିଭ୍ରତି ।

ପଦ୍ୟାନୁବାଦ -

ମୁନି ଆଶ୍ରମର ପର୍ଣ୍ଣକୁଟୀରକୁ
ହରିଣଙ୍କ ଫେରିବାର
ମୂଳେ ଦେଇ ଜଳ ସେଚିତ ଗଛର
ଲହରାୟିତ ପତର ।
ସନ୍ଧ୍ୟାରେ ବନରୁ ଫେରି ଆସୁଥିବା
ଗାଈମାନଙ୍କର ଗୋଷ୍ଠ
ସାନ୍ଧ୍ୟ ହୋମ ପାଇଁ ଜଳି ଉଠୁଥିବା
ଅଗ୍ନି ଶିଖାର ଚହଟ ।
ମୁନି ଆଶ୍ରମର ଏହି ସବୁ ଦୃଶ୍ୟ
ଅତି ମନ ମୁଗ୍ଧକର
ଦେଖ ହେ ପାର୍ବତୀ ଏ ସମସ୍ତ ଦୃଶ୍ୟ
ଦିଶଇ କେତେ ସୁନ୍ଦର ॥ ୩୮ ॥

## ଶ୍ଲୋକ- ୩୯

ବଦ୍ଧକୋଶମପି ତିଷ୍ଠତି କ୍ଷଣଂ
ସାବଶେଷବିବରଂ କୁଶେଶୟଂ ।
ଷଟ୍‌ପଦାୟ ବସତିମ୍ ଗ୍ରହୀଷ୍ୟତେ
ପ୍ରୀତିପୂର୍ବମିବ ଦାତୁମନ୍ତରମ୍ ॥ ୩୯ ॥

ଅନ୍ୱୟ -  ବଦ୍ଧକୋଶମ୍ ଅପି କୁଶେଶୟଂ ବସତିମ୍ ଗ୍ରହୀଷ୍ୟତେ ଷଟ୍‌ପଦାୟ ପ୍ରୀତିପୂର୍ବମ୍
ଅନ୍ତରମ୍ ଦାତୁମ୍ ଇବ କ୍ଷଣମ୍ ସାବଶେଷବିବରଂ ତିଷ୍ଠତି ।

ପଦ୍ୟାନୁବାଦ -

ଯଦିଓ କମଳ ହେବାକୁ ମୁଦ୍ରିତ
ଏବେ କଲାଣି ଆରମ୍ଭ
କିଛି କ୍ଷଣ ପାଇଁ ମୁଖ ତା'ର ଅଳ୍ପ
ଖୋଲା ଅବଶ୍ୟ ରହିବ ।
ପ୍ରେମପୂର୍ବକ ସେ ଭ୍ରମରକୁ ନିଜ
ଭିତରେ ରଖିବା ପାଇଁ
ପ୍ରତେହୁଏ ଦ୍ୱାର ଖୋଲା ରଖିକରି
ପ୍ରତୀକ୍ଷା କରିଛି ସେଇ ॥ ୩୯ ॥

## ଶ୍ଳୋକ- ୪୦

ଦୂରଲଗ୍ନପରିମେୟରଶ୍ମିନା
ବାରୁଣୀଦିଗରୁଣେନ ଭାନୁନା ।
ଭାତି କେସରବତେବ ମଣ୍ଡିତା
ବନ୍ଧୁଜୀବତିଳକେନ କନ୍ୟକା ॥ ୪୦ ॥

ଅନ୍ୱୟ -  ବାରୁଣୀ ଦିକ୍ ଦୂରଲଗ୍ନପରିମେୟରଶ୍ମିନା ଅରୁଣେନ ଭାନୁନା
କେସରବତା ବନ୍ଧୁଜୀବତିଳକେନ କନ୍ୟକା ଇବ ଭାତି ।

ପଦ୍ୟାନୁବାଦ -

ବହୁତ ଦୂରରେ ପଶ୍ଚିମ ଦିଗରେ
କ୍ଷୀଣ ଲାଲ ରଶ୍ମିଧାରୀ
ସୂର୍ଯ୍ୟଦେବ ଅସ୍ତ ଯିବା ସମୟରେ
ଦିଶୁଛନ୍ତି ଏହିପରି ।

ସତେ କେହି କନ୍ୟା            କେଶରରେ ପୂର୍ଣ୍ଣ
ବନ୍ଧୁଲି ଫୁଲରୁ ଏକ
ଲଗାଇଛି ନେଇ            ଲଲାଟ ପଟଳେ
କରି ତାହାକୁ ତିଳକ ॥ ୪୦ ॥

## ଶ୍ଳୋକ- ୪୧

ସାମଭିଃ ସହଚରାଃ ସହସ୍ରଶଃ
ସ୍ୟନ୍ଦନାଶ୍ୱହୃଦୟଙ୍ଗମସ୍ୱନୈଃ ।
ଭାନୁମଗ୍ନିପରିକୀର୍ଣ୍ଣତେଜସଂ
ସଂସ୍ତୁବନ୍ତି କିରଣୋଷ୍ମପାୟିନଃ ॥ ୪୧ ॥

ଅନ୍ୱୟ - କିରଣୋଷ୍ମପାୟିନଃ ସହସ୍ରଶଃ ସହଚରାଃ ଅଗ୍ନିପରିକୀର୍ଣ୍ଣତେଜସଂ ଭାନୁମ୍ ସ୍ୟନ୍ଦନାଶ୍ୱହୃଦୟଙ୍ଗମସ୍ୱନୈଃ ସାମଭିଃ ସଂସ୍ତୁବନ୍ତି ।

ପଦ୍ୟାନୁବାଦ -

ଏହିଠାରେ ସୂର୍ଯ୍ୟ            ନିଜ ସବୁ ତେଜ
ଅଗ୍ନିଙ୍କୁ ସମର୍ପି କରି
ଯାଉଥିଲେ ଚଳି            ସେଥିପାଇଁ ଋଷି
ଗାଉଥିଲେ ସ୍ତୁତି କରି ।
ବାଲାଖିଲ୍ୟ ଆଦି            ଏହି ଋଷିମାନେ
ହଜାର ସଂଖ୍ୟାରେ ଥିଲେ
ସୂର୍ଯ୍ୟଙ୍କର ସେହି            ତପ୍ତ କିରଣକୁ
ସେହିମାନେ ପିଉଥିଲେ ।
ସୂର୍ଯ୍ୟଙ୍କ ରଥର            ଅଶ୍ୱମାନଙ୍କର
ପ୍ରିୟ ଥିଲା ସାମଗାନ
ସେ ତେଜକୁ ଫେରି            ପାଇବାକୁ ଋଷି
ଗାଉଥିଲେ ସେହି ଗାନ ॥ ୪୧ ॥

## ଶ୍ଲୋକ- ୪୨

ସୋଽୟମାନତଶିରୋଧରୈର୍ହୟୈଃ
କର୍ଣ୍ଣଋମରବିଘଟ୍ଟିତେକ୍ଷଣୈଃ ।
ଅସ୍ତମେତି ଯୁଗଭୁଗ୍ନକେସରୈଃ
ସନ୍ନିଧାୟ ଦିବସଂ ମହୋଦଧୌ ॥ ୪୨ ॥

ଅନ୍ୱୟ - ସଃ ଅୟମ୍ ଦିବସମ୍ ମହଦଧୌ ସନ୍ନିଧାୟ ଆନତଶିରୋଧରୈଃ କର୍ଣ୍ଣଋମରବିଘଟ୍ଟିତେକ୍ଷଣୈଃ ଯୁଗଭୁଗ୍ନକେସରୈଃ ହୟୈଃ ଅସ୍ତମ୍ ଏତି ।

ପଦ୍ୟାନୁବାଦ -

ସମୁଦ୍ର ନିକଟେ ଦିବସକୁ ସୂର୍ଯ୍ୟ-
ଦେବ କରି ଅରପଣ
ଅଶ୍ୱଙ୍କ ସହିତେ ଅସ୍ତାଚଳ ପଥେ
କଲେ ସ ଅବତରଣ ।
ଅଶ୍ୱମାନଙ୍କର ଗ୍ରୀବାଦେଶ ଥିଲା
ନିମ୍ନ ଆଡକୁ ଓହଳି
କର୍ଣ୍ଣର ଚଉଁରୀ ସେମାନଙ୍କ ଆଖି
ଉପରେ ହିଁ ଥିଲା ଝୁଲି ।
ରଥ ଯୁଗକାଷ୍ଠ ରହିଥିଲା ଅଶ୍ୱ
ମାନଙ୍କ ସ୍କନ୍ଧ ଦେଶରେ
ଗ୍ରୀବାଦେଶ କେଶ ବିଛୁରିତ ହୋଇ
ପଡିଥିଲା ତା ଉପରେ ॥ ୪୨ ॥

## ଶ୍ଲୋକ- ୪୩

ଖଂ ପ୍ରସୁପ୍ତମିବ ସଂସ୍ଥିତେ ରବୌ
ତେଜସୋ ମହତ ଈଦୃଶୀ ଗତିଃ ।
ତତ୍ପ୍ରକାଶୟତି ଯାବଦୁଦ୍‌ଗତଂ
ମୀଳନାୟ ଖଲୁ ତାବତଶ୍ଚ୍ୟୁତମ୍ ॥ ୪୩ ॥

ଅନ୍ୱୟ - ଖମ୍ ରବୌ ସଂସ୍ଥିତେ ପ୍ରସୁପ୍ତମ୍ ଇବ (ଭବତି) ମହତଃ ତେଜସଃ ଈଦୃଶୀ ଗତିଃ (ଅସ୍ତି) ଉଦ୍ଧୃତମ୍ (ସତ୍) ତତ୍ ଯାବତ୍ ପ୍ରକାଶୟତି ଚ୍ୟୁତମ୍ ତାବତଃ ମୀଳନାୟ(ଭବତି) ଖଲୁ।

ପଦ୍ୟାନୁବାଦ -

ସୂର୍ଯ୍ୟଦେବ ଅସ୍ତ ହୁଅନ୍ତେ ଆକାଶେ
ଅନ୍ଧକାର ଗଲା ଛାଇ
ପ୍ରତେ ହେଉଥିଲା ଆକାଶଟା ସତେ
ଯାଇଛି କି ଅବା ଶୋଇ।
ଯେଉଁଠି ତେଜସ୍ୱୀ ଉଦୟ ହୁଅନ୍ତି
ହୁଏ ତାହା ଜ୍ୟୋତିର୍ମୟ
ଯେଉଁ ସ୍ଥାନେ ଲୁଚି ଯାଆନ୍ତି ସେମାନେ
ହୁଏ ଅନ୍ଧକାରମୟ ॥ ୪୩ ॥

## ଶ୍ଳୋକ- ୪୪

ସନ୍ଧ୍ୟୟାପ୍ୟନୁଗତଂ ରବେର୍ବପୁଃ
ବନ୍ଧ୍ୟମସ୍ତଶିଖରେ ସମର୍ପିତମ୍।
ଯେନ ପୂର୍ବମୁଦୟେ ପୁରସ୍କୃତା
ନାନୁଯାସ୍ୟତି କଥଂ ତମାପଦି ॥ ୪୪ ॥

ଅନ୍ୱୟ - ସନ୍ଧ୍ୟୟା ଅପି ଅସ୍ତଶିଖରେ ସମର୍ପିତମ୍ ବନ୍ଧ୍ୟମ୍ ରବେଃ ବପୁଃ ଅନୁଗତମ୍ ପୂର୍ବମ୍ ଉଦୟେ ଯେନ ପୁରସ୍କୃତା ଆପଦି ତମ୍ କଥମ୍ ନ ଅନୁଯାସ୍ୟତି।

ପଦ୍ୟାନୁବାଦ -

ପ୍ରାତଃକାଳ ସୂର୍ଯ୍ୟ ଉଦୟ ପୂର୍ବରୁ
ସନ୍ଧ୍ୟା ହୋଇ ଉପଗତ
ସୂର୍ଯ୍ୟଙ୍କୁ ସ୍ୱାଗତ କରନ୍ତି ତାଙ୍କର
ଆନନ୍ଦେ ହୋଇ ମିଳିତ।

ସୂର୍ଯ୍ୟଙ୍କର ଦୁଃଖ ସମୟ ସେ ଯେବେ
ଯାଇଥାନ୍ତି ଅସ୍ତାଚଳେ
ଦୁଃଖସାଥୀ ହେବା ପାଇଁ ସନ୍ଧ୍ୟା ତାଙ୍କୁ
ଅନୁସରନ୍ତି ସେକାଳେ ॥ ୪୪ ॥

**ଶ୍ଳୋକ- ୪୫**

ରକ୍ତପୀତକପିଶାଃ ପୟୋମୁଚଂ
କୋଟୟଃ କୁଟିଳକେଶି ଭାନ୍ତ୍ୟମୂଃ ।
ଦ୍ରକ୍ଷସି ତ୍ୱମତି ସାନ୍ଧ୍ୟବେଳୟା
ବର୍ତିକାଭିରିବ ସାଧୁବର୍ତିତାଃ ॥ ୪୫ ॥

ଅନ୍ୱୟ - କୁଟିଳକେଶି ! ଅମୂଃ ରକ୍ତପୀତକପିଶାଃ ପୟୋମୁଚଂ କୋଟୟଃ ଭାନ୍ତି ତ୍ୱମ୍ ଦ୍ରକ୍ଷସି ଇତି ଅନୟା ସଂଧ୍ୟା ବର୍ତିକାଭିଃ ସାଧୁ ବର୍ତିତାଃ ଇବ ।

ପଦ୍ୟାନୁବାଦ -

ଆକାଶରେ ପୀତ ଧୂଷର ଲୋହିତ
ମେଘରେଖା ବର୍ଣ୍ଣବିଭା
ଦେଖ କୁଞ୍ଚକେଶୀ ! ଆହା କି ସୁନ୍ଦର
ଦୃଶ୍ୟ ଅତି ମନଲୋଭା ।
ପ୍ରତେ ହୁଏ ମତେ ସନ୍ଧ୍ୟାରାଣୀ ସତେ
ରଙ୍ଗ ତୂଳିକାକୁ ନେଇ
ରଙ୍ଗେଇଛି ଛବି ମନେ ମନେ ଭାବି
ତୁମ ଦେଖିବାର ପାଇଁ ॥ ୪୫ ॥

**ଶ୍ଳୋକ- ୪୬**

ସିଂହକେସରସଟାସୁ ଭୂଭୃତାଂ
ପଲ୍ଲବପ୍ରସବିଷୁ ଦ୍ରୁମେଷୁ ଚ ।
ପଶ୍ୟ ଧାତୁସଂଶିଖରେଷୁ ଭାସ୍ୱତା
ସଂବିଭକ୍ତମିବ ସାନ୍ଧ୍ୟମାତପମ୍ ॥ ୪୬ ॥

ଅନ୍ୱୟ - ଭୂଭୃତାଂ ସିଂହକେସରସଟାସୁ ପଲ୍ଲବପ୍ରସବିଷୁ ଦ୍ରୁମେଷୁ ଧାତୁଶିଖରେଷୁ ଚ ଆତ୍ମନା ସଂବିଭକ୍ତମ୍ ଇବ ସାନ୍ଧ୍ୟମ୍ ଆତପମ୍ ପଶ୍ୟ।

ପଦ୍ୟାନୁବାଦ -

ଦେଖ ଏ ପାର୍ବତୀ ସିଂହଙ୍କ ଗ୍ରୀବାରେ
ଲାଲ ରଙ୍ଗର କେଶର
ବୃକ୍ଷଙ୍କର ଲାଲ ନବ ପତ୍ର ସହ
ଗେରୁଆ ଗିରି ଶିଖର।
ପ୍ରତେହୁଏ ସୂର୍ଯ୍ୟ ଅସ୍ତ ଯିବାବେଳେ
ନିଜର ସମସ୍ତ ଲାଲି
ଏମାନଙ୍କ ମଧ୍ୟେ ବାଣ୍ଟି ଦେଇକରି
ଯାଇଛନ୍ତି ସିଏ ଚାଲି ॥ ୪୬ ॥

### ଶ୍ଲୋକ- ୪୭

ପାର୍ଷ୍ଣିମୁକ୍ତବସୁଧାସ୍ତପସ୍ୱିନଃ
ପାବନାମ୍ବୁବିହିତାଞ୍ଜଳିକ୍ରିୟାଃ।
ବ୍ରହ୍ମ ଗୂଢଭିସନ୍ଧ୍ୟମାଦୃତାଃ
ଶୁଦ୍ଧୟେ ବିଧିବିଦୋ ଗୃଣନ୍ତ୍ୟମୀ ॥ ୪୭ ॥

ଅନ୍ୱୟ - ବିଧିବିଦଃ ପାର୍ଷ୍ଣିମୁକ୍ତବସୁଧାଃ ତପସ୍ୱିନଃ ଅମୀ ଅଭିସନ୍ଧ୍ୟମ୍ ପାବନାମ୍ବୁବିହିତାଞ୍ଜଳିକ୍ରିୟାଃ ଶୁଦ୍ଧୟେ ଆଦୃତାଃ ଗୂଢମ୍ ବ୍ରହ୍ମ ଗୃଣନ୍ତି।

ପଦ୍ୟାନୁବାଦ -

ଯଜ୍ଞ-ଜ୍ଞାତା ଭୂମି- ମୁକ୍ତ ପଦେ ଠିଆ
ହେଉଥିବା ଯୋଗୀଗଣ
ପବିତ୍ର ଜଳରେ ସାନ୍ଧ୍ୟ ଅର୍ଘ୍ୟ ସୂର୍ଯ୍ୟ-
ଦେବଙ୍କୁ କରି ଅର୍ପଣ।

ନିଜ ଆତ୍ମଶୁଦ୍ଧି ପାଇଁକି ସେମାନେ
ଅତି ଆଦର ସହିତ
ଜପ କରୁଥିଲେ ରହସ୍ୟପୂର୍ଣ୍ଣ ସେ
ବ୍ରହ୍ମାଙ୍କ ଗାୟତ୍ରୀ ମନ୍ତ୍ର ।। ୪୭ ।।

**ଶ୍ଳୋକ- ୪୮**

ତନ୍ମୁହୂର୍ତ୍ତମନୁମନ୍ତୁମର୍ହସି
ପ୍ରସ୍ତୁତାୟ ନିୟମାୟ ମାମପି ।
ତ୍ୱାଂ ବିନୋଦନିପୁଣଃ ସଖୀଜନୋ
ବଲ୍‌ଗୁବାଦିନୀ ବିନୋଦୟିଷ୍ୟତି ।। ୪୮ ।।

ଅନ୍ୱୟ - ବଲ୍‌ଗୁବାଦିନୀ ! ତତ୍ ପ୍ରସ୍ତୁତାୟ ନିୟମାୟ ମାମ୍ ଅପି ମୁହୂର୍ତ୍ତମ୍ ଅନୁମନ୍ତୁମ୍ ଅର୍ହସି (ତଥା) ତ୍ୱାମ୍ ବିନୋଦନିପୁଣଃ ସଖୀଜନଃ ବିନୋଦୟିଷ୍ୟତି ।

ପଦ୍ୟାନୁବାଦ -

ହେ ମୃଦୁଭାଷିଣୀ ଏବେ ମଧ୍ୟ ମୁହିଁ
ସନ୍ଧ୍ୟା ବନ୍ଦନାଦି ପାଇଁ
ଅବକାଶ ତୁମ ଠାରୁ ମୁଁ ଚାହୁଁଛି
ମାତ୍ର କିଛିକ୍ଷଣ ପାଇଁ ।
ବିନୋଦେ ନିପୁଣ ତୁମ ସଖୀଗଣ
ମନ ତୁମ ବହଲାଇ
ରଖିବେ ତୁମକୁ ଫୁସଲେଇ କରି
ଫେରିବା ପର୍ଯ୍ୟନ୍ତ ମୁହିଁ ।। ୪୮ ।।

**ଶ୍ଳୋକ- ୪୯**

ନିର୍ବିଭୁଜ୍ୟ ଦଶନଚ୍ଛଦଂ ତତୋ
ବାଚି ଭର୍ତୃରବଧୀରଣାପରା ।
ଶୈଳରାଜତନୟା ସମୀପଗାମ୍
ଆଲଲାପ ବିଜୟାମହେତୁକମ୍ ।। ୪୯ ।।

ଅନ୍ୱୟ - ତତଃ ଶୈଳରାଜତନୟା ଦଶନଛଦଂ ନିର୍ବିଭୁଜ୍ୟ ଭର୍ତୃଃ ବାଚି ଅବଧୀରଣାପରା ସମୀପଗାମ୍ ବିଜୟାମ୍ (ସଖୀମ୍) ଅହେତୁକମ୍ ଆଳଳାପ ।

ପଦ୍ୟାନୁବାଦ -

ମହାଦେବଙ୍କର କଥାକୁ ସେକାଳେ
ଧ୍ୟାନ ନଦେଇ ପାର୍ବତୀ
ଓଠକୁ ଦାନ୍ତରେ ଚ଼ପି ଦର୍ଶାଇଲେ
ଶୁଣି ବି ଶୁଣି ନାହାନ୍ତି ।
ସେହିଠାରେ ବସି ଏଣୁତେଣୁ କଥା
ହୋଇ ବିଜୟା ସହିତ
ବାହାନା କରିଲେ ସଖୀଙ୍କ ସହିତ
କଥାରେ ଅଛନ୍ତି ବ୍ୟସ୍ତ ॥ ୪୯ ॥

**ଶ୍ଳୋକ- ୫୦**

ଈଶ୍ୱରୋଽପି ଦିବସାତ୍ୟୟୋଚିତଂ
ମନ୍ତ୍ରପୂର୍ବମନୁତସ୍ଥିବାନ୍ୱିଧିମ୍ ।
ପାର୍ବତୀମବଚନାମସୂୟୟା
ପ୍ରତ୍ୟୁପେତ୍ୟ ପୁନରାହ ସସ୍ମିତମ୍ ॥ ୫୦ ॥

ଅନ୍ୱୟ - ଦିବସାତ୍ୟୟୋଚିତଂ ବିଧିମ୍ ମନ୍ତ୍ରପୂର୍ବମ୍ ଅନୁତସ୍ଥିବାନ୍ ଈଶ୍ୱରଃ ଅପି ଅସୂୟୟା ଅବଚନାମ୍ ପାର୍ବତୀମ୍ ପ୍ରତି ଉପେତ୍ୟ ପୁନଃ ସସ୍ମିତମ୍ ଆହ ।

ପଦ୍ୟାନୁବାଦ -

ତତ୍ପରେ ଶଙ୍କର ବିଧି ଅନୁସାର
ପାଠକରି ମନ୍ତ୍ରୋଚିତ
ସାନ୍ଧ୍ୟବନ୍ଦନାଦି ସମସ୍ତ କୃତ୍ୟକୁ
କଲେ ଅଚିରେ ସମାପ୍ତ ।

ଈର୍ଷା କାରଣରୁ ଚୁପ୍ ଚାପ୍ ବସି
ଥିବା ପାର୍ବତୀଙ୍କ ପାଶ
ପୁନର୍ବାର ଯାଇ ହସି ହସି କଥା
ଆରମ୍ଭ କଲେ ମହେଶ ॥ ୫୦ ॥

**ଶ୍ଲୋକ- ୫୧**

ମୁଞ୍ଚ କୋପମନିମିତ୍ତକୋପନେ
ସନ୍ଧ୍ୟୟା ପ୍ରଣମିତୋଽସ୍ମି ନାନ୍ୟଥା ।
କିଂ ନ ବେତ୍ସି ସହଧର୍ମଚାରିଣଂ
ଚକ୍ରବାକସମବୃତ୍ତିମାତ୍ମନଃ ॥ ୫୧ ॥

ଅନ୍ୱୟ - ଅନିମିତ୍ତକୋପନେ କୋପମ୍ ମୁଞ୍ଚ (ଯତଃ) ସନ୍ଧ୍ୟୟା ପ୍ରଣମିତଃ ଅସ୍ମି ନ ଅନ୍ୟଥା ଆତ୍ମନଃ, ସହଧର୍ମଚାରିଣମ୍ ଚକ୍ରବାକସମବୃତ୍ତିମ୍ କିମ୍ ନ ବେତ୍ସି ।

ପଦ୍ୟାନୁବାଦ -

ଅହେତୁକ କୋପୀ ହେ ପ୍ରିୟେ ପାର୍ବତୀ
କ୍ରୋଧ କର ମନୁ ଦୂର
ସନ୍ଧ୍ୟାଙ୍କ ବ୍ୟତୀତ ଆଉ ମୁଁ କାହାକୁ
କରେନାହିଁ ନମସ୍କାର ।
ତୁମ୍ଭ ସହ ସଦା ଧର୍ମ ଆଚରଣ
କରିବାକୁ ଚାହେଁ ମୁହିଁ
ତୁମ୍ଭେ ମତେ କଣ ଚକୋର ସମାନ
ପ୍ରେମୀ ବୋଲି ଭାବନାହିଁ ॥ ୫୧ ॥

**ଶ୍ଲୋକ- ୫୨**

ନିର୍ମିତେଷୁ ପିତୃଷୁ ସ୍ୱୟଂଭୁବା
ଯା ତନୁଃ ସୁତନୁ ପୂର୍ବମୁଜ୍ଝିତା ।
ସେୟମସ୍ତମୁଦୟଂ ଚ ସେବ୍ୟତେ
ତେନ ମାନିନି ମମାତ୍ର ଗୌରବମ୍ ॥ ୫୨ ॥

ଅନ୍ୱୟ - ସୁତନୁ ! ସ୍ୱୟଂଭୁବା ନିର୍ମିତେଷୁ ପିତୃଷୁ ତନୁଃ ଯା ପୂର୍ବମ୍ ଉଜ୍ଝିତା ସା ଇୟମ୍
ଅସ୍ତମ୍ ଚ ସେବ୍ୟତେ ତେନ ମାନିନି ! ମମ ଅତ୍ର ଗୌରବମ୍ (ଅସ୍ତି) ।

ପଦ୍ୟାନୁବାଦ -

ହେ ସୁନ୍ଦରୀ ! ବ୍ରହ୍ମା ସୃଷ୍ଟି କରିଥିଲେ
ପିତୃଗଣଙ୍କୁ ଯେକାଳେ
ନିଜ ମୂର୍ତ୍ତି ଏକ ସୃଷ୍ଟି କରି ଛାଡି
ଯାଇଥିଲେ ସେତେବେଳେ ।
ସେହି ମୂର୍ତ୍ତି ପ୍ରତି ସୂର୍ଯ୍ୟୋଦୟ ତଥା
ସୂର୍ଯ୍ୟଅସ୍ତ ସମୟରେ
ସନ୍ଧ୍ୟା ନାମେ ପୂଜା ପାଇଥାନ୍ତି ତେଣୁ
ଆଦର ମୋ ହୃଦୟରେ ॥ ୫୨ ॥

### ଶ୍ଳୋକ- ୫୩

ତମିମାଂ ତିମିରବୃତ୍ତିପୀଡିତାଂ
ଭୂମିଲଗ୍ନମିବ ସମ୍ପ୍ରତି ସ୍ଥିତାମ୍ ।
ଏକତସ୍ତଟତମାଳମାଳିନୀଂ
ପଶ୍ୟ ଧାତୁରସନିମ୍ନଗାମିବ ॥ ୫୩ ॥

ଅନ୍ୱୟ - ସମ୍ପ୍ରତି ତିମିରବୃତ୍ତିପୀଡିତାଂ, (ଅତଏବ) ଭୂମିଲଗ୍ନମିବ ସ୍ଥିତାମ୍ ତାମ୍
ଇମାମ୍ ସନ୍ଧ୍ୟାମ୍ ଏକତସ୍ତଟତମାଳମାଳିନୀଂ ଧାତୁରସନିମ୍ନଗାମିବ ପଶ୍ୟ ।

ପଦ୍ୟାନୁବାଦ -

କ୍ରମାଗତ ବଢୁ ଥିବା ଅନ୍ଧକାର
ଦ୍ୱାରା ସେ ସନ୍ଧ୍ୟା କିପରି
ଦେଖ ଗୌରୀ ତାଙ୍କୁ ଗୋଟିଏ ପଟରୁ
ଗଲାଣି ସମ୍ପୂର୍ଣ୍ଣ ଘେରି ।

ସତେକି ଗୋଟିଏ ପଟରୁ ତମାଳ
ପାଦପ ମାନଙ୍କ ଦ୍ୱାରା
ଘେରିହୋଇ ବହି ଯାଉଅଛି ଏକ
ଗେରୁଆ ଦ୍ରବ୍ୟର ଧାରା ॥ ୫୩ ॥

### ଶ୍ଳୋକ- ୫୪

ସାନ୍ଧ୍ୟମସ୍ତମିତଶେଷମାତପଂ
ରକ୍ତରେଖମପରା ବିଭର୍ତି ଦିକ୍।
ସାମ୍ପରାୟବସୁଧାସଶୋଣିତଂ
ମଣ୍ଡଳାଗ୍ରମିବ ତିର୍ଯ୍ୟଗୁଚ୍ଛ୍ରିତମ୍ ॥ ୫୪ ॥

ଅନ୍ୱୟ - ଅପରା ଦିକ୍ ଅସ୍ତମିତଶେଷମ୍ ସାନ୍ଧ୍ୟମ୍ ରକ୍ତରେଖମ୍ ସାମ୍ପରାୟବସୁଧାସଶୋଣିତଂ ତିର୍ଯ୍ୟଗ୍ ଉଚ୍ଛ୍ରିତମ୍ ମଣ୍ଡଳାଗ୍ରମ୍ ଇବ ଆତପମ୍ ବିଭର୍ତି।

ପଦ୍ୟାନୁବାଦ -

ସନ୍ଧ୍ୟା ସମୟରେ ପଶ୍ଚିମ ଦିଗରେ
ସୂର୍ଯ୍ୟଙ୍କ କିଛି କିରଣ
ଅସ୍ତରୁ ବଞ୍ଚିତ ହୋଇ ଦିଶେ ଲାଲ
ବକ୍ର ଏକ ରେଖା କ୍ଷୀଣ।
ପ୍ରତେହୁଏ ସତେ ସମର ଭୂଇଁରେ
ଖଡ୍ଗ ଏକ ଭୂମି ପରେ
ବଙ୍କା ତେଡା ହୋଇ ହାତରୁ ଖସି କି
ପଡିଛି ଭିଜି ରକ୍ତରେ ॥ ୫୪ ॥

### ଶ୍ଳୋକ- ୫୫

ଯାମିନୀଦିବସସନ୍ଧିସମ୍ଭବେ
ତେଜସି ବ୍ୟବହିତେ ସୁମେରୁଣା।
ଏତଦନ୍ଧତମସଂ ନିରଙ୍କୁଶଂ
ଦିକ୍ଷୁ ଦୀର୍ଘନୟନେ ବିଜୃମ୍ଭତେ ॥ ୫୫ ॥

ଅନ୍ୱୟ - ଦୀର୍ଘନୟନେ ! ଯାମିନୀଦିବସସନ୍ଧିସମ୍ଭବେ ତେଜସି ସମେରୁଣା ବ୍ୟବହିତେ (ସତି) ନିରଙ୍କୁଶଂ ଏତତ୍ ଅନ୍ଧତମସଂ ଦିକ୍ଷୁ ବିଜୃମ୍ଭତେ ।

ପଦ୍ୟାନୁବାଦ -

ହେ ଦୀର୍ଘନୟନୀ ଦିବସ ରଜନୀ
ମିଳନ କାଳେ ଆଲୋକ
ସୁମେରୁ ପର୍ବତ ପଛପଟେ ଲୁଚି
ରହି ହୋଇଲେ ପୃଥକ ।
ଏଥିପାଇଁ ଘନ ଅନ୍ଧକାର ଯେତେ
ନିଜ ମନ ଅନୁସାରେ
ନିରଙ୍କୁଶ ଭାବେ ବିଚ୍ଛୁରିତ ହୋଇ
ଗଲେ ପ୍ରତ୍ୟେକ ଦିଗରେ ॥ ୫୫ ॥

## ଶ୍ଳୋକ- ୫୬

ନୋର୍ଦ୍ଧ୍ୱମୀକ୍ଷଣଗତିର୍ନ ଚାପ୍ୟଧୋ
ନାଭିତୋ ନ ପୁରତୋ ନ ପୃଷ୍ଠତଃ ।
ଲୋକ ଏଷ ତିମିରୌଧବେଷ୍ଟିତୋ
ଗର୍ଭବାସ ଇବ ବର୍ତ୍ତତେ ନିଶି ॥ ୫୬ ॥

ଅନ୍ୱୟ - ନିଶି ତିମିରୌଧବେଷ୍ଟିତଃ ଏଷଃ ଲୋକଃ ଗର୍ଭବାସ ଇବ ବର୍ତ୍ତତେ ଈକ୍ଷଣଗତିଃ ଊର୍ଦ୍ଧ୍ୱଂ ନ (ତଥା) ଅଧଃ ଚ ଅପି ନ ଅଭିତଃ (ତଥା) ପୁରତଃ ନ ପୃଷ୍ଠତଃ ନ ।

ପଦ୍ୟାନୁବାଦ -

ଦିଶେ ନାହିଁ ଊର୍ଦ୍ଧ୍ୱ ଦିଶେ ନାହିଁ ଅଧ
ଦିଶେ ନାହିଁ ଆସପାଶ
ଦିଶେ ନାହିଁ ଆଗ ଦିଶେ ନାହିଁ ପଛ
ସବୁଠି ଅନ୍ଧାର ବାସ ।

ଘନ ଅନ୍ଧକାର ଦ୍ୱାରା ଘେରି ହୋଇ
ରହିଥିବା ଏ ସଂସାର
ପ୍ରତେହୁଏ ସତେ ରାତ୍ରିର ଗର୍ଭରେ
ରହିଛି କେହି କୁମର ॥ ୫୬ ॥

### ଶ୍ଳୋକ- ୫୭

ଶୁଦ୍ଧମାବିଳମବସ୍ଥିତଂ ଚଳଂ
ବକ୍ରମାର୍ଜବଗୁଣାନ୍ୱିତଂ ଚ ଯତ୍ ।
ସର୍ବମେବ ତମସା ସମୀକୃତଂ
ଧିଙ୍ମହତ୍ୱମସତାଂ ହତାନ୍ତରମ୍ ॥ ୫୭ ॥

ଅନ୍ୱୟ - ଶୁଦ୍ଧମ୍ ଆବିଳମ୍ ଅବସ୍ଥିତଂ ଚଳମ୍ ବକ୍ରମ୍ ଆର୍ଜବଗୁଣାନ୍ୱିତଂ ଚ ଯତ୍ (ତତ୍) ଏବ ତମସା ସମୀକୃତଂ ଅସତାମ୍ ମହତ୍ୱମ୍ ଧିକ୍ (ଯତଃ) ହତାନ୍ତରମ୍ ।

ପଦ୍ୟାନୁବାଦ -

ମଇଳା ଉଜ୍ୱଳ ଚଳ ଓ ଅଚଳ
ବଙ୍କା ସିଧା ଗୁଣ ଯୁକ୍ତ
ସମସ୍ତ ବସ୍ତୁଙ୍କୁ ସମାନ ଦୃଷ୍ଟିରେ
ଦେଖେ ଅନ୍ଧାର ସର୍ବତ୍ର ।
ଭଲ ମନ୍ଦ ଗୁଣ ମଧ୍ୟରେ ଅନ୍ତର
ଯିଏ ସେ ହଟେଇ ଦିଏ
ଏପରି ଦୁଷ୍ଟଙ୍କ ମହାନତାକୁ ହିଁ
ଧିକ୍କାର କରିବା ହୁଏ ॥ ୫୭ ॥

### ଶ୍ଳୋକ- ୫୮

ନୂନମୁନ୍ନମତି ଯଜ୍ୱାନାଂ ପତିଃ
ଶାର୍ବରସ୍ୟ ତମସୋ ନିଶିଦ୍ଧୟେ ।
ପୁଣ୍ଡରିକମୁଖି ପୂର୍ବଦିଙ୍-ମୁଖଂ
କୈତକୈରିବ ରଜୋଭିରାହତମ୍ ॥ ୫୮ ॥

ଅନ୍ୱୟ -  ପୁଣ୍ଡରିକମୁଖୀ ! ନୂନମ୍ ଯଜ୍ୱାନାଂ ପତିଃ ଶାର୍ବରସ୍ୟ ତମସଃ ନିଶିଦ୍ଧୟେ
ଉନ୍ନମତି କେତକୈଃ ଇବ ଆହତମ୍ ପୂର୍ବଦିଙ୍-ମୁଖଂ (ପଶ୍ୟ) ।

ପଦ୍ୟାନୁବାଦ -

ହେ କମଳାନନେ !  ଦେଖ ପୂର୍ବଦିଗେ
କ୍ଷୀଣ ଆଲୋକର ଦୃଶ୍ୟ
ପ୍ରତେହୁଏ ସତେ  କେତକୀ ପରାଗ
ବିଛୁରିତ ପୂର୍ବାକାଶ ।
ଏଥିରୁ ନିଶ୍ଚିତ  ହୁଏ ବର୍ତ୍ତମାନ
ରାତ୍ରିର ଏ ଅନ୍ଧକାର
ଦୂର କରିବାକୁ  ଚନ୍ଦ୍ରଦେବ ଏବେ
ବାହାରିବାକୁ ତତ୍ପର ॥ ୫୮ ॥

**ଶ୍ଳୋକ- ୫୯**

ମନ୍ଦରାନ୍ତରିତମୂର୍ତ୍ତିନା ନିଶା
ଲକ୍ଷ୍ୟତେ ଶଶଭୃତା ସତାରକା ।
ତ୍ୱମ୍ ମୟା ପ୍ରିୟସଖୀସମାଗତା
ଶ୍ରୋଷ୍ୟତେବ ବଚନାନି ପୃଷ୍ଠତଃ ॥ ୫୯ ॥

ଅନ୍ୱୟ -  ସତାରକା ନିଶା ମନ୍ଦରାନ୍ତରିତମୂର୍ତ୍ତିନା ଶଶଭୃତା ପ୍ରିୟସଖୀସମାଗତା
ତ୍ୱମ୍ ପୃଷ୍ଠତଃ ବଚନାନି ଶ୍ରୋଷ୍ୟତା ମୟା ଇବ ଲକ୍ଷ୍ୟତେ ।

ପଦ୍ୟାନୁବାଦ -

ମନ୍ଦରାଚଳର  ପଛପଟେ ଏବେ
ଚନ୍ଦ୍ରଦେବ ଉପସ୍ଥିତ
ତାରାମାନେ ଏବେ  ଆକାଶରେ ହୋଇ
ସାରିଲେଣି ଆବିର୍ଭୂତ ।

ଲୁଚିଥିବା ଚନ୍ଦ୍ର ଆଉ ତାରା ମଧ୍ୟେ
ରାତ୍ରି ଦିଶେ ଯେଉଁପରି
ଲୁଚି ଶୁଣୁଥିବା 'ମୁଁ' ଆଉ ସଖୀଙ୍କ
ମଧ୍ୟେ 'ତୁମେ' ସେହପରି ॥ ୫୯ ॥

### ଶ୍ଳୋକ- ୬୦

ରୁଦ୍ଧନିଗମନମାଦିନକ୍ଷୟାତ୍
ପୂର୍ବଦୃଷ୍ଟତନୁ ଚନ୍ଦ୍ରିକାସ୍ମିତମ୍ ।
ଏତଦୁଦ୍‌ଗିରତି ଚନ୍ଦ୍ରମଣ୍ଡଳଂ
ଦିଗ୍ରହସ୍ୟମିବ ରାତ୍ରିଚୋଦିତା ॥ ୬୦ ॥

ଅନ୍ୱୟ - ଅଦିନକ୍ଷୟାତ୍ ରୁଦ୍ଧନିଗମନମ୍ ପୂର୍ବଦୃଷ୍ଟତନୁ ଏତତ୍ ଚନ୍ଦ୍ରମଣ୍ଡଳଂ ରାତ୍ରିଚୋଦିତା ଚନ୍ଦ୍ରିକାସ୍ମିତମ୍ ଦିଗ୍ରହସ୍ୟମ୍ ଉଦ୍‌ଗିରତି ଇବ ।

ପଦ୍ୟାନୁବାଦ -

ଦିବସେ ଅଦୃଶ୍ୟ ଏ ଚନ୍ଦ୍ର ମଣ୍ଡଳ
ଏବେ ପୂର୍ବ ଆକାଶରେ
ମୂର୍ତ୍ତିମାନ ହୋଇ ସାରା ଆକାଶରେ
ଚନ୍ଦ୍ରିକା ବିସ୍ତାର କରେ ।
ପ୍ରତେହୁଏ ସିଏ ରାତ୍ରି ପଚ୍ଚରନ୍ତେ
ଚନ୍ଦ୍ରିକା ରୂପରେ ହସି
ପୂର୍ବଦିଗ ରୂପୀ ସପତ୍ନୀ ରହସ୍ୟ
ଖୋଲି କହୁଅଛି ବସି ॥ ୬୦ ॥

### ଶ୍ଳୋକ- ୬୧

ପଶ୍ୟ ପକ୍ୱଫଳିନୀଫଳତ୍ୱିଷା
ବିମ୍ବଲାଞ୍ଛିତବିୟୋସରୋମ୍ଭସା ।
ବିପ୍ରକୃଷ୍ଟବିବରଂ ହିମାଂଶୁନା ।
ଚକ୍ରବାକମିଥୁନଂ ବିଡମ୍ବ୍ୟେତେ ॥ ୬୧ ॥

ଅନ୍ୱୟ- ପକ୍ୱଫଳିନୀଫଳଦ୍ୱିଷା ବିମ୍ବଲାଞ୍ଛିତବିୟୋଷରୋମ୍ଭସା ହିମାଂଶୁନା ବିପ୍ରକୃଷ୍ଟବିବରଂ ଚକ୍ରବାକମିଥୁନଂ ବିଡମ୍ୟେତେ ପଶ୍ୟ।

ପଦ୍ୟାନୁବାଦ -

ଏବେ ଚନ୍ଦ୍ରରଙ୍ଗ ଦିଶେ ଲାଲ ପକ୍ୱ
ପ୍ରିୟଙ୍ଗୁ ଫଳ ସମାନ
ସରୋବର ଜଳେ ପ୍ରତିବିମ୍ବ ତା'ର
ହେଉଅଛି ଦୃଶ୍ୟମାନ।
ଆକାଶରେ ସ୍ଥିତ ଜଳବିମ୍ବ ତଥା
ଜଳେ ଦୃଶ୍ୟ ପ୍ରତିବିମ୍ବ
ଲାଗେ ଚକ୍ରବାକ ଚକ୍ରବାକୀ ଯୁଗ
ରାତ୍ରି ହେତୁରୁ ନିଃସଙ୍ଗ ॥ ୬୧ ॥

### ଶ୍ଳୋକ- ୬୨

ଶକ୍ୟମୋଷଧିପତେର୍ନବୋଦୟାଃ
କର୍ଣ୍ଣପୂରରଚନାକୃତେ ତବ।
ଅପ୍ରଗଲ୍ଭୟବସୂଚିକୋମଳାଃ
ଛେତ୍ତୁମଗ୍ରନଖସମ୍ପୁଟୈଃ କରାଃ ॥ ୬୨ ॥

ଅନ୍ୱୟ - ନବୋଦୟାଃ ଅପ୍ରଗଲ୍ଭୟବସୂଚିକୋମଳାଃ ଓଷଧିପତେଃ କରାଃ କର୍ଣ୍ଣପୂରରଚନାକୃତେ ତବ ଅଗ୍ରନଖସମ୍ପୁଟୈଃ ଛେତ୍ତୁମ୍ ଶକ୍ୟମ୍।

ପଦ୍ୟାନୁବାଦ -

ଉଦିତ ଚନ୍ଦ୍ରର ନବୀନ କୋମଳ
କିରଣ ସହ ସମାନ
ନବ କମ୍ର ଏହି ଯବାଙ୍କୁରମାନ
ହୁଅଇ ପ୍ରତୀୟମାନ।

ଯଦି ତୁମ୍ଭେ ଇଚ୍ଛା- କର ଏ ଅଙ୍କୁରେ
କର୍ଣ୍ଣଫୁଲ କରିବାକୁ
ତା ହେଲେ ନିଜର ନଖ ସାହାଯ୍ୟରେ
ତୋଳିପାର ସେଗୁଡିକୁ ।। ୬୨ ।।

### ଶ୍ଲୋକ -୬୩

ଅଙ୍ଗୁଳୀଭିରିବ କେଶସଞ୍ଚୟଂ
ସନ୍ନିଗୃହ୍ୟ ତିମରଂ ମରୀଚିଭିଃ ।
କୁଡ୍ମଳୀକୃତସରୋଜଲୋଚନଂ
ଚୁମ୍ବତୀବ ରଜନୀମୁଖଂ ଶଶୀ ।। ୬୩

ଅନ୍ୱୟ - ଶଶୀ କୁଡ୍ମଳୀକୃତସରୋଜଲୋଚନଂ ରଜନୀମୁଖଂ ଅଙ୍ଗୁଳୀଭିଃ ଇବ ମରୀଚିଭିଃ କେଶସଞ୍ଚୟଂ ଇବ ତିମରଂ ସନ୍ନିଗୃହ୍ୟ ଚୁମ୍ବତି ଇବ ।

ପଦ୍ୟାନୁବାଦ -

ଚନ୍ଦ୍ରଙ୍କ କିରଣ ହୁଅନ୍ତେ ବିସ୍ତୃତ
ଅନ୍ଧକାର ଦୂରୀଭୂତ
ସରୋବର ଜଳେ ଏବେ ପଦ୍ମସବୁ
ହୋଇଗଲେଣି ମୁଦ୍ରିତ ।
ଜ୍ୟୋସ୍ନା ଅଙ୍ଗୁଳିରେ ଚନ୍ଦ୍ରମା ରାତ୍ରିରେ
ତିମିର-ରୂପୀ କେଶକୁ
ଏକତ୍ରିତ କରି ଆଉଯାଇ ଆଣି
ମୁଖର ଏକ ପାଶକୁ ।
ରହିଅଛି ମଗ୍ନ ଦେବାରେ ଚୁମ୍ବନ
ରାତ୍ରି ହୋଇ ଆନନ୍ଦିତ
ଲୋଟି ଯାଇଛି କି କମଳ-ରୂପୀ ତା
ନୟନ କରି ମୁଦ୍ରିତ ।। ୬୩ ।।

### ଶ୍ଳୋକ -୬୪

ପଶ୍ୟ ପାର୍ବତୀ ନବେନ୍ଦୁରଶ୍ମିଭିଃ
ଭିନ୍ନସାନ୍ଦ୍ରତିମିରଂ ନଭସ୍ତଳମ୍ ।
ଲକ୍ଷ୍ୟତେ ଦ୍ୱିରଦଭୋଗଦୂଷିତଂ
ସପ୍ରସାଦମିବ ମାନସଂ ସରଃ ॥ ୬୪ ॥

ଅନ୍ୱୟ - ପାର୍ବତି ! ନବେନ୍ଦୁରଶ୍ମିଭିଃ ଭିନ୍ନସାନ୍ଦ୍ରତିମିରଂ ନଭସ୍ତଳମ୍ ଦ୍ୱିରଦଭୋଗଦୂଷିତଂ ସପ୍ରସାଦମ୍ ମାନସଂ ସରଃ ଇବ ଲକ୍ଷ୍ୟତେ ପଶ୍ୟ ।

ପଦ୍ୟାନୁବାଦ -

ନବୋଦିତ ଚନ୍ଦ୍ର କିରଣରେ ସାନ୍ଧ୍ୟ
ତିମିର ଆକାଶୁ ଦୂର
ଗଜକ୍ରୀଡା ଅନ୍ତେ ଯେପରି ନିର୍ମଳ
ହୁଏ ଧୀରେ ସର ନୀର ॥ ୬୪ ॥

### ଶ୍ଳୋକ- ୬୫

ରକ୍ତଭାବମପହାୟ ଚନ୍ଦ୍ରମା
ଜାତ ଏଷ ପରିଶୁଦ୍ଧମଣ୍ଡଳ ।
ବିକ୍ରିୟା ନ ଖଲୁ କାଳଦୋଷଜା
ନିର୍ମଳପ୍ରକୃତିଷୁ ସ୍ଥିରୋଦୟା ॥ ୬୫ ॥

ଅନ୍ୱୟ - ଏଷଃ ଚନ୍ଦ୍ରମାଃ ରକ୍ତଭାବମ୍ ଅପହାୟ ପରିଶୁଦ୍ଧମଣ୍ଡଳ ଜାତଃ ନିର୍ମଳପ୍ରକୃତିଷୁ କାଳଦୋଷଜା ବିକ୍ରିୟା ସ୍ଥିରୋଦୟା ନ (ଭବତି) ଖଲୁ ।

ପଦ୍ୟାନୁବାଦ -

କରି ପରତ୍ୟାଗ ଚନ୍ଦ୍ର ଲାଲ ରଙ୍ଗ
ହେଲେଣି ଶୁଦ୍ଧ ଉଜ୍ଜ୍ୱଳ
ଉଜ୍ଜ୍ୱଳ ସ୍ୱଭାବ ବ୍ୟକ୍ତି ବେଳେ ବେଳେ
ହୋଇ ଥାଆନ୍ତି ଆବିଳ ।

ସେଇ ଆବିଳତା　　　ସେ ବ୍ୟକ୍ତି ପାଖରେ
ରହେନାହିଁ ସ୍ଥାୟୀ ହୋଇ
ସମୟ ଚକ୍ରରେ　　　ସେ ବିକାର ଭାବ
ଯାଏ ତା'ଠାରୁ ଦୂରେଇ ॥ ୬୫ ॥

**ଶ୍ଳୋକ -୬୬**

ଉନ୍ନତେଷୁ ଶଶିନଃ ପ୍ରଭା ସ୍ଥିତା
ନିମ୍ନସଂଶ୍ରୟପରଂ ନିଶାତମଃ ।
ନୂନମାତ୍ମସଦୃଶୀ ପ୍ରକଳ୍ପିତା
ବେଧସା ହି ଗୁଣଦୋଷୟୋର୍ଗତିଃ ॥ ୬୬ ॥

ଅନ୍ୱୟ - ଶଶିନଃ ପ୍ରଭା ଉନ୍ନତେଷୁ ସ୍ଥିତା (ବର୍ତ୍ତତେ) ନିଶାତମଃ ନିମ୍ନସଂଶ୍ରୟପରଂ (ତଥା ହି) ଗୁଣଦୋଷୟୋଃ ଗତିଃ ବେଧସା ଆତ୍ମସଦୃଶୀ ପ୍ରକଳ୍ପିତା ହି ନୂନମ୍ ।

ପଦ୍ୟାନୁବାଦ -

ଦେଖ ଉଚ୍ଚା ସ୍ଥାନ-　　　ମାନ ଚନ୍ଦ୍ରଙ୍କର
କିରଣରେ ଭରପୁର
କିନ୍ତୁ ନିମ୍ନ ସ୍ଥାନ-　　　ମାନଙ୍କରୁ ଏବେ
ଅନ୍ଧାର ହୋଇନି ଦୂର ।
ଦୋଷ ଆଉ ଗୁଣ　　　ସ୍ଥିତିର ନିର୍ମାଣ
କରିଛନ୍ତି ବେଦପତି
ଦୋଷକୁ ସେ ନୀଚ　　　ଗୁଣପାଇଁ ଉଚ୍ଚ
ସ୍ଥାନମାନ ଦେଇଛନ୍ତି ॥ ୬୬ ॥

**ଶ୍ଳୋକ -୬୭**

ଚନ୍ଦ୍ରପାଦଜନିତପ୍ରବୃତ୍ତିଭିଃ
ଚନ୍ଦ୍ରକାନ୍ତଜଳବିନ୍ଦୁଭିର୍ଗିରଃ ।
ମେଖଳାତରୁଷୁନିଦ୍ରିତାନମୂନ୍
ବୋଧୟତ୍ୟସମୟେ ଶିଖଣ୍ଡିନଃ ॥ ୬୭ ॥

ଅନ୍ୱୟ - ଗିରିଃ ମେଖଳାତରୁଷୁ ନିଦ୍ରିତାନ୍ ଅମୂନ୍ ଶିଖଣ୍ଡିନଃ ଚନ୍ଦ୍ରପାଦଜନିତପ୍ରବୃତ୍ତିଭିଃ ଚନ୍ଦ୍ରକାନ୍ତଜଳବିନ୍ଦୁଭିଃ ଅସମୟେ ବୋଧୟତି ।

ପଦ୍ୟାନୁବାଦ -

ଚନ୍ଦ୍ରକାନ୍ତମଣି ମାନଙ୍କର ସ୍ପର୍ଶ
ଚନ୍ଦିନୀ ସହ ହେବାରୁ
ଜଳବିନ୍ଦୁମାନ ଝରୁଛନ୍ତି ଚନ୍ଦ୍ର-
କାନ୍ତ ମଣିମାନଙ୍କରୁ ।
ପର୍ବତର ଢାଲୁ ଦେଶରେ ବୃକ୍ଷରେ
ସୁପ୍ତ ମୟୂର ସକଳ
ତକ୍ଷଣ ଜାଗ୍ରତ ହୋଇଲେ ଭାବିଣ
ଆସିଗଲା ବର୍ଷାକାଳ ॥ ୬୭ ॥

ଶ୍ଳୋକ -୬୮

କଳ୍ପବୃକ୍ଷଶିଖରେଷୁ ସମ୍ପ୍ରତି
ପ୍ରସ୍ଫୁରଦ୍ଭିରିବ ପଶ୍ୟ ସୁନ୍ଦରି ।
ହାରଯଷ୍ଟିରଚନାମିବାଂଶୁଭିଃ
କର୍ତ୍ତୁମୁଦ୍ୟତକୁତୁହଳଃ ଶଶୀ ॥ ୬୮ ॥

ଅନ୍ୱୟ - ସୁନ୍ଦରି ! ସମ୍ପ୍ରତି ଶଶୀ ପ୍ରସ୍ଫୁରଦ୍ଭିଃ ଅଂଶୁଭିଃ ହାରଯଷ୍ଟିରଚନାମ୍ କର୍ତ୍ତୁମ୍ ଇବ ଉଦ୍ୟତକୁତୁହଳଃ କଳ୍ପବୃକ୍ଷଶିଖରେଷୁ (ବର୍ତ୍ତତେ) ଇବ (କିମ୍) ପଶ୍ୟ ।

ପଦ୍ୟାନୁବାଦ -

ଦେଖ ହେ ସୁନ୍ଦରୀ କଳ୍ପବୃକ୍ଷୋପରି
ପଡିଛି ଚନ୍ଦ୍ର କିରଣ
କଳ୍ପବୃକ୍ଷମାନେ ସୁନ୍ଦର ପୁଷ୍ପରେ
ହୋଇଛନ୍ତି ପରିପୂର୍ଣ୍ଣ ।

ପ୍ରତେହୁଏ ସତେ ଚନ୍ଦ୍ରମା ନିଜର
କିରଣମାନଙ୍କୁ ନେଇ
ଇଚ୍ଛା କରୁଅଛି ସେ ଫୁଲଙ୍କୁ ଗୁନ୍ଥି
ହାରଟେ କରିବା ପାଇଁ ॥ ୬୮ ॥

**ଶ୍ଳୋକ- ୬୯**

ଉନ୍ନତାବନତଭାଗବତ୍ତୟା
ଚନ୍ଦ୍ରିକା ସତିମିରା ଗିରେରିୟମ୍ ।
ଭକ୍ତିଭିର୍ବହୁବିଧାଭିରର୍ପିତା
ଭାତି ଭୂତିରିବ ମତ୍ତଦନ୍ତିନଃ ॥ ୬୯ ॥

ଅନ୍ୱୟ - ଗିରେଃ ଉନ୍ନତାବନତଭାଗବତ୍ତୟା ସତିମିରା ଇୟମ୍ ଚନ୍ଦ୍ରିକା ବହୁବିଧାଭିଃ ଭକ୍ତିଭିଃ ଅର୍ପିତାଃ ମତ୍ତଦନ୍ତିନଃ ଭୂତିଃ ଇବ ଭାତି ।

ପଦ୍ୟାନୁବାଦ -

ଉଚ୍ଚ ଆଉ ନୀଚ ସ୍ଥାନମାନ ଧରି
ଥିବାରୁ ଏହି ଭୂଧର
କେଉଁଠାରେ ଚନ୍ଦ୍ର କିରଣ ବିରାଜେ
କେଉଁଠାରେ ଅନ୍ଧକାର ।
ପ୍ରତେହୁଏ ସତେ କେଉଁ ଏକ ମତ୍ତ
ହସ୍ତୀ ଶରୀର ଉପରେ
ଚିତ୍ରକର କେହି ଚିତ୍ରକାରୀ କରି
ଦେଇଅଛି ଯତନରେ ॥ ୬୯ ॥

**ଶ୍ଳୋକ- ୭୦**

ଏତଦୁଚ୍ଛ୍ୱସିତପୀତମୈନ୍ଦବଂ
ସୋଢୁମକ୍ଷମମିବ ପ୍ରଭାରସମ୍ ।
ମୁକ୍ତଷଟ୍‌ପଦବିରାବମଞ୍ଜସା
ଭିଦ୍ୟତେ କୁମୁଦମାନିବନ୍ଧନାତ୍ ॥ ୭୦ ॥

ଅନ୍ୱୟ - ଉଚ୍ଛ୍ୱସିତପୀତମ୍ ଐନ୍ଦବମ୍ ପ୍ରଭାରସମ୍ ସୋଢୁମ୍ ଅକ୍ଷମମ୍ ଇବ ଏତତ୍ କୁମୁଦମ୍ ମୁକ୍ତଷଟ୍‌ପଦବିରାବମ୍ ଅଞ୍ଜସା ଆ ନିବନ୍ଧନାତ୍ ଭିଦ୍ୟତେ ।

ପଦ୍ୟାନୁବାଦ -

ଏହି କୁମୁଦିନୀ ଚନ୍ଦ୍ରର ଚାନ୍ଦିନୀ
ପିଇଥିଲା ପେଟଭରି
ଏବେ ପେଟ ଖୋଲି ଫୁଟିଅଛି ସରେ
ହଜମ ନକରି ପାରି
ଉଦରେ ତାହାର ବନ୍ଦୀ ହୋଇଥିବା
ଷଟ୍‌ପଦ ତୋଳି ଗୁଞ୍ଜନ
ବନ୍ଧନରୁ ମୁକ୍ତ ହୋଇ ଏବେ କରେ
ବାହାରକୁ ଆଗମନ ॥ ୭୦ ॥

## ଶ୍ଳୋକ- ୭୧

ପଶ୍ୟ କଳ୍ପତରୁଲମ୍ବି ଶୁଦ୍ଧୟା
ଜ୍ୟୋତ୍ସ୍ନୟା ଜନିତରୂପସଂଶୟମ୍ ।
ମାରୁତେ ଚଳତି ଚଣ୍ଡି କେବଳଂ
ବ୍ୟଜ୍ୟତେ ବିପରିବୃତ୍ତମଂଶୁକମ୍ ॥ ୭୧ ॥

ଅନ୍ୱୟ - ଚଣ୍ଡି ! କଳ୍ପତରୁଲମ୍ବି ଶୁଦ୍ଧୟା ଜ୍ୟୋତ୍ସ୍ନୟା ଜନିତରୂପସଂଶୟମ୍ ଅଂଶୁକମ୍ ମାରୁତେ ଚଳତି (ସତି) ବିପରିବୃତ୍ତମ୍ କେବଳଂବ୍ୟଜ୍ୟତେ (ତ୍ୱମ୍) ପଶ୍ୟ ।

ପଦ୍ୟାନୁବାଦ -

ଦେଖ ହେ ଚଣ୍ଡିକେ କଳ୍ପବୃକ୍ଷ ପରେ
ଓହଳି ଥିବା ବସନ
ତା ସହିତ ଦେଖ ତା ଉପରେ ପଡି-
ଅଛି ଚନ୍ଦ୍ରଙ୍କ କିରଣ ।

ଏକାପରି ହୋଇ ଥିବା କାରଣରୁ
ଚିହ୍ନିବା ସହଜ ନୁହେଁ
ବାତେ ଆନ୍ଦୋଳିତ ହୁଅନ୍ତେ ବସନ
ଜ୍ୟୋସ୍ନା ନୁହେଁ ଜଣାଯାଏ ॥ ୭୧ ॥

### ଶ୍ଲୋକ- ୭୨

ଶକ୍ୟମଙ୍ଗୁଳିଭିରୁହ୍ଥିତୈରଧଃ
ଶାଖିନାଂ ପତିତପୁଷ୍ପପେଶଳୈଃ ।
ପତ୍ରଜର୍ଜ୍ଜରଶଶିପ୍ରଭାଲବୈଃ
ଏଭିରୁତ୍କ୍ରଚୟିତୁଂ ତବାଳକାନ୍ ॥ ୭୨ ॥

ଅନ୍ୱୟ - ଅଧଃ ପତିତପୁଷ୍ପପେଶଳୈଃ ଅଙ୍ଗୁଳିଭିଃ ଉହ୍ଥିତୈଃ ଏଭିଃ ଶାଖିନାମ୍ ପତ୍ରଜର୍ଜ୍ଜରଶଶିପ୍ରଭାଲବୈଃ ତବ ଅଳକାନ୍ ଉତ୍କ୍ରଚୟିତୁଂ ଶକ୍ୟମ୍ ।

ପଦ୍ୟାନୁବାଦ -

ପତ୍ର ଭେଦ କରି ବୃକ୍ଷ ତଳେ ପଡି
ଥିବା ଚନ୍ଦ୍ରମା କିରଣ
ପ୍ରତେହୁଏ ସତେ ବୃକ୍ଷମାନଙ୍କରୁ
ଝଡିଛନ୍ତି ଫୁଲମାନ ।
ଚହଁ ଯଦି ତୁମ୍ଭେ ସେ ସବୁ ଫୁଲକୁ
ଅଙ୍ଗୁଳି ଦ୍ୱାରା ଉଠାଇ
ଗଭାରେ ତୁମର ସୁନ୍ଦର ଭାବରେ
ଦେଇ ପାରିବ ସଜେଇ ॥ ୭୨ ॥

### ଶ୍ଲୋକ- ୭୩

ଏଷ ଚରୁମୁଖୀ ଯୋଗତାରୟା
ଯୁଜ୍ୟତେ ତରଳବିମ୍ବୟା ଶଶୀ ।
ସାଧ୍ୱସାଦୁପଗତପ୍ରକମ୍ପୟା
କନ୍ୟୟେବ ନବଦୀକ୍ଷୟା ବରଃ ॥ ୭୩ ॥

ଅନ୍ୱୟ - ଋରୁମୁଖି ! ଏଷଃ ଶଶୀ ବରଃ ନବଦୀକ୍ଷୟା (ଅତଏବ) ସାଧ୍ୱସାଦ୍ ଉପଗତପ୍ରକମ୍ପୟା କନ୍ୟୟା ଇବ ତରଳବିମ୍ବୟା ଯୋଗତାରୟା ଯୁଜ୍ୟତେ (ତ୍ୱଂ ପଶ୍ୟ) ।

ପଦ୍ୟାନୁବାଦ -

ଦେଖ ହେ ସୁନ୍ଦରୀ ଚନ୍ଦ୍ର ପାର୍ଶ୍ୱ-ଋରି
ଜକ ଜକ ତାରାମାନେ
ଲାଗେ ନବବଧୂ ଯାଏ ପତିପାଶେ
ଭୟକରି ମନେ ମନେ ॥ ୭୩ ॥

### ଶ୍ଳୋକ- ୭୪

ପାକଭିନ୍ନଶରକାଣ୍ଡଗୌରୟୋଃ
ଉଲ୍ଲସତ୍ପ୍ରତିକୃତିପ୍ରଦୀପ୍ତୟୋଃ ।
ରୋହତୀବ ତବ ଗଣ୍ଡଲେଖୟୋଃ
ଚନ୍ଦ୍ରବିମ୍ବନିହିତାକ୍ଷି ଚନ୍ଦ୍ରିକା ॥ ୭୪ ॥

ଅନ୍ୱୟ - ଚନ୍ଦ୍ରବିମ୍ବନିହିତାକ୍ଷି ଚନ୍ଦ୍ରିକା ତବ ପାକଭିନ୍ନଶରକାଣ୍ଡଗୌରୟୋଃ ଉଲ୍ଲସତ୍ପ୍ରତିକୃତିପ୍ରଦୀପ୍ତୟୋଃ ଗଣ୍ଡଲେଖୟୋଃ ରୋହତି ଇବ ।

ପଦ୍ୟାନୁବାଦ -

ତୁମ୍ଭେ ହେ ପାର୍ବତୀ ଚନ୍ଦ୍ରବିମ୍ବ ପ୍ରତି
ନିର୍ନିମେଷ ନୟନରେ
ଦେଖୁଥିଲାବେଳେ ଚନ୍ଦ୍ରଙ୍କ କିରଣ
ପଡୁଥିଲା ଗଣ୍ଡପରେ ।
ସହଜେ ତୁମ୍ଭର ଗଣ୍ଡ ରଙ୍ଗ ଶୁଭ୍ର
ପକ୍ୱ ସର୍କନ୍ଦ ସମାନ
ଚନ୍ଦ୍ରଙ୍କ କିରଣ ପଡନ୍ତେ ତା'ପରେ
ଦିଶେ ବେଶୀ ତେଜୀୟାନ୍ ॥ ୭୪ ॥

## ଶ୍ଲୋକ- ୭୫

ଲୋହିତାର୍କମଣିଭାଜନାର୍ପିତଂ
କଳ୍ପବୃକ୍ଷମଧୁ ବିଭ୍ରତୀ ସ୍ୱୟମ୍ ।
ତ୍ୱାମିୟଂ ସ୍ଥିତିମତୀମୁପାଗତା
ଗନ୍ଧମାଦନବନାଧିଦେବତା ॥ ୭୫ ॥

ଅନ୍ୱୟ - ଲୋହିତାର୍କମଣିଭାଜନାର୍ପିତଂ କଳ୍ପବୃକ୍ଷମଧୁ ବିଭ୍ରତୀ ଇୟମ୍ ଗନ୍ଧମାଦନବନାଧିଦେବତା ସ୍ଥିତିମତୀମ୍ ତ୍ୱାମ୍ ସ୍ୱୟମ୍ ଉପାଗତା (ତ୍ୱମ୍ ପଶ୍ୟ) ।

ପଦ୍ୟାନୁବାଦ -

ଗନ୍ଧମାଦନର ବନଦେବୀ ତୁମ୍ଭ
ବସିବା ଏଠାରେ ଦେଖି
ସୂର୍ଯ୍ୟକାନ୍ତ ମଣି ପିଆଲାରେ କଳ୍ପ-
ବୃକ୍ଷର ମଦିରା ରଖି ।
ସ୍ୱୟଂ ବନଦେବୀ ଗନ୍ଧମାଦନରେ
ତୁମ୍ଭର ସ୍ୱାଗତ ପାଇଁ
ଦେଖ ହେ ପାର୍ବତୀ ଆସିଛନ୍ତି ଧାଇଁ
ସେ ପିଆଲା ହସ୍ତେ ନେଇ ॥ ୭୫ ॥

## ଶ୍ଲୋକ -୭୬

ଆର୍ଦ୍ରକେସରସୁଗନ୍ଧି ତେ ମୁଖଂ
ମତ୍ତରକ୍ତନୟନଂ ସ୍ୱଭାବତଃ ।
ଅତ୍ର ଲବ୍ଧବସତିର୍ଗୁଣାନ୍ତରଂ
କିଂ ବିଳାସିନୀ ମଧୁଃ କରିଷ୍ୟତି ॥ ୭୬ ॥

ଅନ୍ୱୟ - ବିଳାସିନି ! ଅତ୍ର ଲବ୍ଧବସତିଃ ମଧୁଃ କିମ୍ ଗୁଣାନ୍ତରଂ କରିଷ୍ୟତି ତେ ମୁଖଂ ସ୍ୱଭାବତଃ ଆର୍ଦ୍ରକେସରସୁଗନ୍ଧି ମତ୍ତରକ୍ତନୟନଂ (ଅସ୍ତି) ।

ପଦ୍ୟାନୁବାଦ -

ଆର୍ଦ୍ର କେଶରର ଗନ୍ଧ ପରି ତୁମ୍ଭ
ମୁଖ ସୁଗନ୍ଧରେ ପୂର୍ଣ୍ଣ
ଆହେ ବିଳାସିନୀ ନୟନ ତୁମ୍ଭର
ସ୍ୱଭାବତଃ ରକ୍ତ ବର୍ଣ୍ଣ ।
ଏଣୁ ଏହି ଗୁଣ ରଖିଥିବା ଏହି
ମଦିରା କରିଲେ ପାନ
କିଛି ବି ପ୍ରଭାବ ହେବନାହିଁ ତୁମ୍ଭ
ଉପରେ ମୋ ଅନୁମାନ ॥ ୭୬ ॥

## ଶ୍ଳୋକ- ୭୭

ମାନ୍ୟଭକ୍ତିରଥବା ସଖୀଜନଃ
ସେବ୍ୟତାମିଦମନଙ୍ଗଦୀପକମ୍ ।
ଇତ୍ୟୁଦାରମଭିଧାୟ ଶଙ୍କରଃ
ତାମପାୟୟତ ପାନମମ୍ବିକାମ୍ ॥ ୭୭ ॥

ଅନ୍ୱୟ - ଅଥବା ମାନ୍ୟଭକ୍ତି ସଖୀଜନଃ ଅନଙ୍ଗଦୀପକମ୍ ଇଦମ୍ ସେବ୍ୟତାମ୍ ଇତି ଉଦାରମ୍ ଅଭିଧାୟ ଶଙ୍କରଃ ତାମ୍ ଅମ୍ବିକାମ୍ ପାନମ୍ ଅପାୟୟତ୍ ।

ପଦ୍ୟାନୁବାଦ -

ତଥାପି ସଖୀଙ୍କ ପ୍ରେମ ଆଗ୍ରହକୁ
କରନାହିଁ ନିରାଦର
କାମ ଉଦ୍ଦୀପନା ସୃଷ୍ଟିକାରୀ ଏହି
ମଦିରାକୁ ପାନ କର ।
ଏପରି ମଧୁର କଥା କହି କହି
ମହେଶ୍ୱର ପାର୍ବତୀଙ୍କୁ
ପିଆଇ ଦେଲେ ସେ କାମ ଉଦ୍ଦୀପନା
ସୃଷ୍ଟିକାରୀ ମଦିରାକୁ ॥ ୭୭ ॥

## ଶ୍ଲୋକ- ୭୮

ପାର୍ବତୀ ତଦୁପଯୋଗସମ୍ଭବାଂ
ବିକ୍ରିୟାମପି ସତାଂ ମନୋହରାମ୍।
ଅପ୍ରତର୍କ୍ୟବିଧିଯୋଗନିର୍ମିତାମ୍
ଆମ୍ରତେବ ସହକାରତାଂ ଯଯୌ ॥ ୭୮ ॥

ଅନ୍ୱୟ - ପାର୍ବତୀ ତଦୁପଯୋଗସମ୍ଭବାଂ ବିକ୍ରିୟାମ୍ ଅପି ସତୀମ୍ ମନୋହରାମ୍ ଆମ୍ରତା ଅପ୍ରତର୍କ୍ୟବିଧିଯୋଗନିର୍ମିତାମ୍ ସହକାରତାଂ ଇବ ଯଯୌ।

ପଦ୍ୟାନୁବାଦ -

ବ୍ରହ୍ମାଙ୍କ ବିଚିତ୍ର ବିଧାନରେ ଆମ୍ର
ବୃକ୍ଷ ବସନ୍ତ ଋତୁରେ
ଛାଡି ପୂର୍ବରୂପ ହୋଇ କୁସୁମିତ
ସମସ୍ତଙ୍କ ମନ ହରେ।
ସେପରି ଗୌରୀଙ୍କ ସ୍ୱାଭାବିକ ଶୋଭା
ମଦ୍ୟପାନ କରିସାରି
ଯେପରି ଦିଶିଲା ସେଥିରେ ସେ ଥିଲେ
ଅତ୍ୟଧିକ ମନୋହାରୀ ॥ ୭୮ ॥

## ଶ୍ଲୋକ- ୭୯

ତତ୍କ୍ଷଣଂ ବିପରିବର୍ତିତହ୍ରିୟୋଃ
ନେଷ୍ୟତୋଃ ଶୟନମିଦ୍ଧରାଗୟୋଃ।
ସା ବଭୂବ ବଶବର୍ତ୍ତିନୀ ଦ୍ୱୟୋଃ
ଶୂଳିନଃ ସୁବଦନା ମଦସ୍ୟ ଚ ॥ ୭୯ ॥

ଅନ୍ୱୟ - ତତ୍କ୍ଷଣମ୍ ସା ସୁବଦନା (ପାର୍ବତୀ) ବିପରବର୍ତିତହ୍ରିୟୋଃ ଇଦ୍ଧରାଗୟୋଃ ଶୟନମ୍ ନେଷ୍ୟତୋଃ ଶୂଳିନଃ ମଦସ୍ୟ ଚ (ଇତି) ଦ୍ୱୟୋଃ ବଶବର୍ତ୍ତିନୀ ବଭୂବ।

ପଦ୍ୟାନୁବାଦ -

ମଦିରା ପିଇବା ପରେ ସୁବଦନା
ଲଜ୍ୟାକୁ କଲେ ବର୍ଜନ
କାମଭାବ ଜାଗି ଉଠିଲା ସେ ଶିବ
ଅଙ୍କେ କରିଲେ ଶୟନ ।
ଏ ପରିସ୍ଥିତିରେ ତାଙ୍କୁ ନେଇ ଶିବ
ଶୟନ କକ୍ଷକୁ ଗଲେ
ଏକାବେଳେ ଉମା ଶିବ ଓ ମଦିରା
ଉଭୟର ବଶ ହେଲେ ॥ ୭୯ ॥

## ଶ୍ଳୋକ- ୮୦

ଘୂର୍ଣ୍ଣମାନନୟନଂ ସ୍ଖଳତ୍କଥଂ
ସ୍ୱେଦବିନ୍ଦୁମକାରଣସ୍ମିତମ୍ ।
ଆନନେନ ନ ତୁ ତାବଦୀଶ୍ୱରଃ
ଚକ୍ଷୁଷା ଚିରମୁମାମୁଖଂ ପପୌ ॥ ୮୦ ॥

ଅନ୍ୱୟ - ଘୂର୍ଣ୍ଣମାନନୟନଂ ସ୍ଖଳତ୍କଥଂ ସ୍ୱେଦବିନ୍ଦୁମକାରଣସ୍ମିତମ୍ ଉମାମୁଖଂ ଈଶ୍ୱରଃ ତାବତ୍ ଚିରମ୍ ଚକ୍ଷୁଷା ପପୌ ଆନନେନ ତୁ ନ ।

ପଦ୍ୟାନୁବାଦ -

ଉମାଙ୍କ ନୟନ ଥିଲା ଘୂର୍ଣ୍ଣମାନ
ବାଣୀରେ ଥିଲା ସ୍ପନ୍ଦନ
ସ୍ୱେଦ ବିନ୍ଦୁମାନ ମୁଖେ ବିଚ୍ଛୁରିତ
ହସୁଥିଲେ ଅକାରଣ ।
ପାର୍ବତୀଙ୍କ ମୁଖ ସୌନ୍ଦର୍ଯ୍ୟ-ରସକୁ
କରିବାକୁ ଶିବ ପାନ
ନଦେଇ ଚୁମ୍ବନ ନୟନ ଯୁଗଳେ
କଲେ ରସ ଆସ୍ୱାଦନ ॥ ୮୦ ॥

## ଶ୍ଳୋକ- ୮୧

ତାଂ ବିଲମ୍ବିତପନୀୟମେଖଳାମ୍
ଉଦ୍ୱହଞ୍ଜଘନଭାରଦୁର୍ବହାମ୍ ।
ଧ୍ୟାନସମ୍ଭବବିଭୂତିସମ୍ଭୂତଂ
ପ୍ରାବିଶନ୍ମଣିଶିଳାଗୃହଂ ହରଃ ।। ୮୧ ।।

ଅନ୍ୱୟ - ବିଲମ୍ବିତପନୀୟମେଖଳାମ୍ ଜଘନଭାରଦୁର୍ବହାମ୍ ତାମ୍ (ପାର୍ବତୀମ୍) ଉଦ୍ୱହନ୍ ହରଃ ଧ୍ୟାନସମ୍ଭବବିଭୂତିସମ୍ଭୂତଂ ମଣିଶିଳାଗୃହଂ ପ୍ରାବିଶତ୍ ।

ପଦ୍ୟାନୁବାଦ -

ପାର୍ବତୀଙ୍କ କଟି ଦେଶେ ଥିଲା ଲମ୍ବି
ମେଖଳା ସ୍ୱର୍ଣ୍ଣ ନିର୍ମିତ
ସ୍ଥୂଳ ନିତମ୍ବିନୀ ହେତୁ ତାଙ୍କ ଭାର
ଥିଲା ଅଧିକ ଅତ୍ୟନ୍ତ ।
ପାର୍ବତୀଙ୍କୁ ଟୋକି ନେଇ ଧ୍ୟାନ ମାତ୍ରେ
ସର୍ବ ସାଧନ ସଂଯୁକ୍ତ
ମଣିମାଳା ଗୃହ ଶୟନ କକ୍ଷରେ
ଶିବ ହେଲେ ଉପସ୍ଥିତ ।। ୮୧ ।।

## ଶ୍ଳୋକ- ୮୨

ତତ୍ର ହଂସଧବଳୋତ୍ତରଚ୍ଛଦଂ
ଜାହ୍ନବୀପୁଳିନଚାରୁଦର୍ଶନମ୍ ।
ଅଧ୍ୟଶେତ ଶୟନଂ ପ୍ରିୟାଶଖଃ
ଶାରଦାଭ୍ରମିବ ରୋହିଣୀପତିଃ ।। ୮୨ ।।

ଅନ୍ୱୟ - ତତ୍ର ହଂସଧବଳୋତ୍ତରଚ୍ଛଦଂ ଜାହ୍ନବୀପୁଳିନଚାରୁଦର୍ଶନମ୍ ଶୟନଂ ରୋହିଣୀପତିଃ ଶାରଦାଭ୍ରମ୍ ଇବ ପ୍ରିୟାଶଖଃ (ସନ୍) ଅଧ୍ୟଶେତ ।

ପଦ୍ୟାନୁବାଦ -

ଶାରଦୀୟ ଶୁଭ୍ର ଅଭ୍ରେ ଆଚ୍ଛାଦିତ
ଗଗନ-ଶଯ୍ୟା ଉପରେ
ଚନ୍ଦ୍ରମା ଯେପରି ଶୟନ କରନ୍ତି
ରୋହିଣୀଙ୍କ ସହିତରେ।
ସେହିପରି ହଂସ ସମାନ ଧବଳ
ଚଦରରେ ଆଚ୍ଛାଦିତ
ଗଙ୍ଗାର ବାଲୁକା- ମୟ ତଟ ସମ
ହେଉଥିବା ପ୍ରତିଭାତ
ପଲଙ୍ଗ ଉପରେ ନିଜ ପ୍ରିୟତମା
ପାର୍ବତୀଙ୍କ ସହିତରେ
ମଣିମାଳା ଗୃହ ଶୟନ କକ୍ଷରେ
ନିଦ୍ରାଗଲେ ଏକାନ୍ତରେ ॥ ୮୨ ॥

## ଶ୍ଲୋକ- ୮୩

କ୍ଲିଷ୍ଟଚନ୍ଦ୍ରମଦୟୈଃ କଚଗ୍ରହୈଃ
ଉତ୍ପୃଥାର୍ପିତନଖଂ ସମସ୍ମରମ୍।
ତସ୍ୟ ଚଚ୍ଛିଦୁରମେଖଳାଗୁଣଂ
ପାର୍ବତୀରତମଭୂନ୍ନ ତୃପ୍ତୟେ ॥ ୮୩ ॥

ଅନ୍ୱୟ- ଅଦୟୈଃ କଚଗ୍ରହୈଃ କ୍ଲିଷ୍ଟଚନ୍ଦ୍ରମ୍ ଉତ୍ପୃଥାର୍ପିତନଖଂ ସମସ୍ମରମ୍ ଛିଦୁରମେଖଳାଗୁଣଂ ତତ୍ ପାର୍ବତୀରତମ୍ ତସ୍ୟ ତୃପ୍ତୟେ ନ ଅଭୂତ୍।

ପଦ୍ୟାନୁବାଦ -

ସମ୍ଭୋଗ କ୍ରିୟାରେ ନିର୍ଦ୍ଦୟ ଭାବରେ
ପାର୍ବତୀ ଶିବଙ୍କ କେଶ
ଟାଣିବା ହେତୁରୁ ତାଙ୍କ ଶିର ସ୍ଥିତ
ଚନ୍ଦ୍ରମା ପାଇଲେ କ୍ଲେଶ।

ସେ ପାଇଁ ସମ୍ଭୋଗ ସମୟେ ଶିବଙ୍କ
ନଖମାନଙ୍କର ଚିହ୍ନ
ଅଙ୍ଗାଗାରେ ଲାଗି- ଥିଲା ନ ଲାଗିଣ
ଲାଗିବାର ଯଥାସ୍ଥାନ।
ଏକ ଆରେକକୁ ଜିତିବା ବ୍ୟଗ୍ରତା
ହେତୁ କଟିର ମେଖଳା
ଛିଣ୍ଡିଲା ତଥାପି ସମ୍ଭୋଗ କ୍ରିୟାରେ
ସନ୍ତୁଷ୍ଟ ହେଲେନି ଭୋଳା ॥ ୮୩ ॥

### ଶ୍ଳୋକ- ୮୪

କୈବଲଂ ପ୍ରିୟତମାଦୟାଳୁନା
ଜ୍ୟୋତିଷାମବନତାସୁ ପଙ୍କ୍ତିଷୁ।
ତେନ ତତ୍ପ୍ରତିଗୃହିତବକ୍ଷସା
ନେତ୍ରମିଳନକୁତୁହଳଂ କୃତମ୍ ॥ ୮୪ ॥

ଅନ୍ୱୟ - ଜ୍ୟୋତିଷାମ୍ ପଂକ୍ତିଷୁ ଅବନତାସୁ କେବଳଂ ପ୍ରିୟତମାଦୟାଳୁନା ତେନ ତତ୍ପ୍ରତିଗୃହିତବକ୍ଷସା ନେତ୍ରମିଳନକୁତୁହଳଂ କୃତମ୍।

ପଦ୍ୟାନୁବାଦ -

ସମ୍ଭୋଗରେ ରତ ରହିକରି ରାତ୍ର
ହୋଇଲା ଶେଷ ପ୍ରହର
ଆକାଶରୁ ଅତି ଧୀରେ ତାରା ପଂକ୍ତି
ମାନେ ହୋଇଗଲେ ଦୂର।
ଶଙ୍କର ସ୍ୱ ପ୍ରିୟା ପ୍ରତି କରି ଦୟା
ବକ୍ଷରେ ଜାବୁଡି ଧରି
କୌତୁହଳ ବଶ ନେତ୍ର କଲେ ବନ୍ଦ
ଶୋଇବା ବାହାନା କରି ॥ ୮୪ ॥

### ଶ୍ଲୋକ -୮୫

ସ ବ୍ୟବୁଧ୍ୟତେ ବୁଧସ୍ତବୋଚିତଃ
ଶାତକୁମ୍ଭକମଳାକରୈଃ ସମମ୍ ।
ମୂର୍ଚ୍ଛନାପରିଗୃହୀତକୈଶିକୈଃ
କିନ୍ନରୈରୁଷସି ଗୀତମଙ୍ଗଳଃ ॥ ୮୫ ॥

ଅନ୍ୱୟ - ବୁଧସ୍ତବୋଚିତଃ ସଃ ଉଷସି ମୂର୍ଚ୍ଛନାପରିଗୃହୀତକୈଶିକୈଃ କୀନ୍ନରୈଃ ଗୀତମଙ୍ଗଳଃ ଶାତକୁମ୍ଭକମଳାକରୈଃ ସମମ୍ ବ୍ୟବୁଧ୍ୟତେ ।

ପଦ୍ୟାନୁବାଦ -

ହୁଅନ୍ତେ ପ୍ରଭାତ ଗନ୍ଧର୍ବ ସମସ୍ତ
ବୀଣା କରିଣ ଧାରଣ
ଶିବଙ୍କୁ ଜାଗ୍ରତ କରିବା ନିମିତ୍ତ
କରିଲେ ମଙ୍ଗଳଗାନ ।
ସ୍ୱର୍ଣ୍ଣିମ କମଳ ସହ ଦେବପୂଜ୍ୟ
ଭଗବାନ ଶିବଙ୍କର
ମଙ୍ଗଳଗାନରେ ଭଗ୍ନହେଲା ନିଦ୍ରା
ହୋଇଲେ ସେ ଉଜାଗର ॥ ୮୫ ॥

### ଶ୍ଲୋକ- ୮୬

ତୌ କ୍ଷଣମ୍ ଶିଥିଳିତୋପଗୂହନୌ
ଦମ୍ପତୀ ଚଳିତମାନସୋର୍ମୟଃ ।
ପଦ୍ମବୋଧନିପୁଣାଃ ସିଷେବିରେ
ଗନ୍ଧମାଦନବନାନ୍ତମାରୁତାଃ ॥ ୮୬ ॥

ଅନ୍ୱୟ - କ୍ଷଣମ୍ ଶିଥିଳିତୋପଗୂହନୌ ତୌ ଦମ୍ପତୀ ଚଳିତମାନସୋର୍ମୟଃ ପଦ୍ମବୋଧନିପୁଣାଃ ଗନ୍ଧମାଦନବନାନ୍ତମାରୁତାଃ ସିଷେବିରେ ।

ପଦ୍ୟାନୁବାଦ -

ପରସ୍ପର ଆଲି- ଙ୍ଗନରୁ ଶିବ ଓ
ପାର୍ବତୀ ହୋଇଣ ମୁକ୍ତ
କିଛିକ୍ଷଣ ପାଇଁ ଉପଭୋଗ କଲେ
ଗନ୍ଧମାଦନ ମରୁତ।
ସେ ମରୁତ ମାନ- ସରୋବରେ ସୃଷ୍ଟି
କରୁଥିଲା ଲହରୀଙ୍କୁ
ଥିଲା ସୁଗନ୍ଧିତ କରି ଆନ୍ଦୋଳିତ
ସରୋବରେ କମଳଙ୍କୁ ॥ ୮୬ ॥

### ଶ୍ଳୋକ- ୮୭

ଉରୁମୂଳନନଖମାର୍ଗରାଜିଭିଃ
ତତ୍କ୍ଷଣଂ ହୃତବିଲୋଚନୋ ହରଃ।
ବାସସଃ ପ୍ରଶିଥିଳସ୍ୟ ସଂଯମଂ
କୁର୍ବତୀଂ ପ୍ରିୟତମାମବାରୟତ୍ ॥ ୮୭ ॥

ଅନ୍ୱୟ - ଉରୁମୂଳନନଖମାର୍ଗରାଜିଭିଃ ହୃତବିଲୋଚନଃ ହରଃ ତତ୍କ୍ଷଣଂ ପ୍ରଶିଥିଳସ୍ୟ ବାସସଃ ସଂଯମମ୍ କୁର୍ବତୀମ୍ ପ୍ରିୟତମାମ୍ ଅବାରୟତ।

ପଦ୍ୟାନୁବାଦ -

ଗୌରୀଙ୍କ ଜଘନ ଦେଶରୁ ପବନ
ଦ୍ୱାରା ବସ୍ତ୍ର ହୋଇ ଦୂର
ଶଙ୍କରଙ୍କ ନଖ ଚିହ୍ନମାନ ସବୁ
ହୋଇଲା ଦୃଷ୍ଟିଗୋଚର।
ସେ ଚିହ୍ନ ପଂକ୍ତିକୁ ପ୍ରଲୁବ୍ଧ ନୟନେ
ଶଙ୍କର ରହିଲେ ଚାହିଁ
ତତ୍କ୍ଷଣ ଗଉରୀ ବସ୍ତ୍ର ସଜାଡନ୍ତେ
ଶିବ ଦେଲେନି କରେଇ ॥ ୮୭ ॥

## ଶ୍ଲୋକ- ୮୮

ସ ପ୍ରଜାଗରକଷାୟଲୋଚନଂ
ଗାଢଦନ୍ତପଦତାଡିତାଧରମ୍ ।
ଆକୁଳାଳକମରଂସ୍ତ ରାଗବାନ୍
ପ୍ରେକ୍ଷ୍ୟ ଭିନ୍ନତିଳକଂ ପ୍ରିୟାମୁଖମ୍ ॥ ୮୮ ॥

ଅନ୍ୱୟ - ରାଗବାନ୍ ସଃ ପ୍ରଜାଗରକଷାୟଲୋଚନଂ ଗାଢଦନ୍ତପଦତାଡିତାଧରମ୍ ଆକୁଳାଳକମ୍ ଭିନ୍ନତିଳକଂ ପ୍ରିୟାମୁଖମ୍ ପ୍ରେକ୍ଷ୍ୟ ଅରଂସ୍ତ ।

ପଦ୍ୟାନୁବାଦ -

ରାତ୍ର ଉଜାଗର ହେତୁ ଉମାଙ୍କର
ଲୋହିତ ଥିଲା ନୟନ
ଅଧରରେ ଦନ୍ତ କ୍ଷତ-ଚିହ୍ନମାନ
ହେଉଥିଲା ଦୃଶ୍ୟମାନ ।
ବିକ୍ଷସ୍ତ ଅଳକ ଲଲାଟେ ତିଳକ
ହୋଇ ଯାଇଥିଲା ଲୁପ୍ତ
ତଥାପି ଗୌରୀଙ୍କ ଦେଖି ସେହି ମୁଖ
ଶିବ ଥିଲେ ଆନନ୍ଦିତ ॥ ୮୮ ॥

## ଶ୍ଲୋକ- ୮୯

ତେନ ଭିନ୍ନବିଷମୋତ୍ତରଚ୍ଛଦଂ
ମଧ୍ୟପିଣ୍ଡିତବିସୂତ୍ରମେଖଳମ୍ ।
ନିର୍ମଳେଽପି ଶୟନଂ ନିଶାତ୍ୟୟେ
ନୋଜ୍ଝିତଂ ଚରଣାରାଗଲାଞ୍ଛିତମ୍ ॥

ଅନ୍ୱୟ - ନିଶାତ୍ୟୟେ ନିର୍ମଳେ ଅପି ତେନ ଭିନ୍ନବିଷମୋତ୍ତରଚ୍ଛଦଂ ମଧ୍ୟପିଣ୍ଡିତବିସୂତ୍ରମେଖଳମ୍ ଚରଣାରାଗଲାଞ୍ଛିତମ୍ ଶୟନଂ ନ ଉଜ୍ଝିତମ୍ ।

ପଦ୍ୟାନୁବାଦ -

ଯେଉଁ ଶଯ୍ୟାପରେ ଶଙ୍କର ଗଉରୀ
ଶୋଇଥିଲେ ରାତ୍ରିଭର
ଲୋଟକୋଟ ହୋଇ ପଡିଥିଲା ସେଇ
ଶଯ୍ୟା ବିଛଣା ଚଦର।
କଟିର ମେଖଳା- ସୂତ୍ର ହୋଇ ଛିନ୍ନ
ପଡିଥିଲା ଏକ ସ୍ଥାନେ
ଗୌରୀଙ୍କର ପଦ ଲାକ୍ଷାରସ ଚିହ୍ନ
ଲାଗିଥିଲା ଏଣେ ତେଣେ।
ଏତେ ଅସ୍ତବ୍ୟସ୍ତ ଶଯ୍ୟା ଶିବଙ୍କର
ଥିଲା ଏତେ ବେଶୀ ପ୍ରିୟ
ରାତି ପାହି ଦିନ ହୋଇଥିଲେ ମଧ୍ୟ
ଛାଡିନଥିଲା ତା ମୋହ ॥ ୮୯ ॥

### ଶ୍ଲୋକ -୯୦

ସ ପ୍ରିୟାମୁଖରସଂ ଦିବାନିଶଂ
ହର୍ଷବୃଦ୍ଧିଜନନଂ ସିସେବିଷୁଃ।
ଦର୍ଶନପ୍ରଣୟିନାମଦୃଶ୍ୟତାମ୍
ଆଯଗାମ ବିଜୟାନିବେଦିତଃ ॥ ୯୦ ॥

ଅନ୍ୱୟ - ହର୍ଷବୃଦ୍ଧିଜନନଂ ପ୍ରିୟାମୁଖରସଂ ଦିବାନିଶଂ ସିସେବିଷୁଃ ସଃ ବିଜୟାନିବେଦିତଃ ଦର୍ଶନପ୍ରଣୟିନାମ୍ ଅଦୃଶ୍ୟତାମ୍ ଆଯଗାମ।

ପଦ୍ୟାନୁବାଦ -

ରଜନୀ ଦିବସ ପ୍ରିୟା ମୁଖରସ
ଆନନ୍ଦ ବର୍ଦ୍ଧନକାରୀ
କରିବାକୁ ପାନ ଶିବ କରି ମନ
ଦଶା ହୋଇଲା ଏପରି।

ସ୍ୱ ପ୍ରିୟଜନଙ୍କ ଦର୍ଶନ ନିମିତ୍ତ
ବିଜୟାଠାରୁ ଖବର
ପାଇ ମଧ୍ୟ ଗୃହେ ରହିଲେ ସେ ବସି
ହେଲେନି ଘରୁ ବାହାର ॥ ୯୦ ॥

**ଶ୍ଲୋକ- ୯୧**

ସମଦିବସନିଶୀଥଂ ସଙ୍ଗୀନସ୍ତତ୍ର ଶମ୍ଭୋଃ
ଶତମଗମଦୃତୂନାଂ ସାର୍ଧମେକା ନିଶେବ ।
ନ ତୁ ସୁରତସୁଖେଭ୍ୟଶ୍ଛିନ୍ନତୃଷ୍ଣୋ ବଭୂବ
ଜ୍ୱଳନ ଇବ ସମୁଦ୍ରାନ୍ତର୍ଗତସ୍ତଜ୍ଜଳୌଘୈଃ ॥ ୯୧ ॥

ଅନ୍ୱୟ - ତତ୍ର ସମଦିବସନିଶୀଥଂ ସଙ୍ଗୀନଃ ନ ତୁ ଶମ୍ଭୋଃ ସାର୍ଧମ୍ ଋତୂନାମ୍ ଶତମ୍ ଏକା ନିଶା ଇବ ଅଗମତ୍ ସୁରତସୁଖେଭ୍ୟଃ, ତୁ ସମୁଦ୍ରାନ୍ତର୍ଗତଃ ଜ୍ୱଳନଃ ଇବ ତତ୍ ଜଳୌଘୈଃ ଛିନ୍ନତୃଷ୍ଣଃ ନ ବଭୂବ ।

ପଦ୍ୟାନୁବାଦ -

ଏପରି ଶଙ୍କର ପାର୍ବତୀଙ୍କ ସହ
ଦିନ ରାତି ସମ୍ଭୋଗରେ
ଶହ ଶହ ଋତୁ ଏକ ରାତ୍ରି ପରି
ବିତାଇଲେ ଅକ୍ଲେଶରେ ।
ତଥାପି ସମ୍ଭୋଗ ଲାଳସା ତାଙ୍କର
ହୋଇପାରିଲାନି ଦୂର
ଯେପରି ମେଣ୍ଟେନି ବଡବାଗ୍ନି ତୃଷ୍ଣା
ପାଶେ ଥାଇ ସିନ୍ଧୁ ନୀର ॥ ୯୧ ॥

***

**(ଅଷ୍ଟମ ସର୍ଗଃ ସମାପ୍ତ)**



ଓଡ଼ିଶାର ଜଣେ ବିଶିଷ୍ଟ ଲେଖକ ଭାବରେ ବାଉରିବନ୍ଧୁ ଲେଙ୍କାଙ୍କର ସ୍ୱତନ୍ତ୍ର ପରିଚୟ ରହିଛି। ୧୯୫୩ ମସିହା ଫେବୃଆରୀ ୧୨ ତାରିଖରେ ତାଙ୍କର ଜନ୍ମ। ଜନ୍ମସ୍ଥାନ କଟକ ଜିଲ୍ଲାର ଏକ ଅଖ୍ୟାତ ଗ୍ରାମ ତରଡାପଡା। ପାଠପଢା ସମୟରେ କବିତା ପ୍ରତି ଯଦିଓ ଆଗ୍ରହ ଥିଲା ନିଜ ଭିତରେ ତାଙ୍କ ପ୍ରତିଭାକୁ ଲୁଚାଇ ରଖିଥିବାରୁ ତାହା ଲୋକଲୋଚନକୁ ଆସିପାରି ନଥିଲା। କଲେଜ ପଢିବା ସମୟରେ ରଚିତ ତାଙ୍କର କିଛି କବିତା ପ୍ରଥମ କବିତା ସଂକଳନ 'ଖୋଲି କହିଦେଲି କଥା ମନର'ରେ ସ୍ଥାନ ପାଇଛି।

ଶ୍ରୀ ଲେଙ୍କା ପାଠପଢା ପରେ ବ୍ୟାଙ୍କ ସେବାରେ ସେବାରତ ରହି ସାହିତ୍ୟ ସାଧନାକୁ ସମ୍ପୂର୍ଣ୍ଣ ରୂପେ ଛାଡି ଦେଇଥିଲେ। ଅବସର ନେବା ପରେ ପୁନଶ୍ଚ ତାଙ୍କର ମନରେ ସାହିତ୍ୟ ପ୍ରତି ଅନୁରାଗ ସୃଷ୍ଟି ହୋଇଥିଲା ଓ ସେ କବିତା ଲେଖିବାରେ ନିଜକୁ ହଜାଇ ଦେଇଛନ୍ତି। ଶ୍ରୀ ଲେଙ୍କାଙ୍କର ଅନେକ କବିତା ବିଭିନ୍ନ ପତ୍ରିକାର ପୃଷ୍ଠା ମଣ୍ଡନ କରିଛି। ତାଙ୍କର ପ୍ରକାଶିତ ପୁସ୍ତକ ଗୁଡିକ ହେଉଛି - ଖୋଲି କହିଦେଲି କଥା ମନର (କବିତା ସଂକଳନ), ମୋ ଗାଆଁ ମୋ କବିତା (କବିତା ସଂକଳନ), ପ୍ରିୟା (କବିତା ସଂକଳନ), ଶୁଣ ଗୁହାରି ହେ ବିଶ୍ୱ ବିହାରୀ (ଭକ୍ତି କବିତା ସଂକଳନ), ମେଘଦୂତ (ଅନୁବାଦ କାବ୍ୟ), ଋତୁସଂହାରମ୍ (ଅନୁବାଦ କାବ୍ୟ), ଅନାବନା (କବିତା ସଂକଳନ) ଇତ୍ୟାଦି। ତାଙ୍କ ରଚିତ ଏହି ବୃହତ୍ ଆଧ୍ୟାତ୍ମିକ ଗ୍ରନ୍ଥ ଓଡ଼ିଶାର ଘରେ ଘରେ ପ୍ରଶଂସା ସାଉଁଟିବ ଓ ତାଙ୍କୁ ପରିଚିତି ଆଣିଦେବ ଏହି ବିଶ୍ୱାସ ଆମର ରହିଛି।

- ପ୍ରକାଶକ




ବନଫୁଲ

